# ଭିନ୍ନ ମାଟିର ବାସ୍ନା

ବାସୁଦେବ ସାହୁ




କଟକ - ୨

ଭିନ୍ନ ମାଟିର ବାସ୍ନା ।। ଲେଖକ : **ବାସୁଦେବ ସାହୁ** ।। ପ୍ରକାଶକ : **ଅଗ୍ରଦୂତ,** ବାଙ୍କାବଜାର କଟକ-୨ ।। ପ୍ରଥମ ସଂସ୍କରଣ : **୨୦୦୯** ।। ପ୍ରଚ୍ଛଦ : **ଶ୍ରୀଯୁକ୍ତ** ଦିନାନାଥ ପାଠୀ ।। କମ୍ପ୍ୟୁଟର ସହାୟତା : ଏମ୍. **ପ୍ରିଣ୍ଟର୍ସ,** କଟକ ।। ମୁଦ୍ରଣ : ତାରିଣୀ ଅଫସେଟ୍, କଟକ ।।

ମୂଲ୍ୟ : **ଟ.୭୫/-**

**VINNA MATIRA BASHNA** II Written by : **Basudev Sahoo** II Published by : **Agraduta**, Banka Bazar, Cuttack-2 II 1st.Edition : **2009** II Cover : Sj. Dinanath Pathi II D.T.P. : **M. Printers**, Cuttack II Printed by : Tareni Offset, Cuttack II

Price : **Rs.75/-**

ମୋ ପ୍ରାଣର ସ୍ପନ୍ଦନ

ବାବୁଲା, କାବୁଲା,

ରୋଜି, ଜଲି, ମାମା, ମାନ୍ଟୁ,

ଗୁଡୁଲ, ଗୋକୁଲ, ମୁକୁଲ, ଶୁଭମ୍,

ରୋଶ୍‌ନି ଓ ପୁନମ୍‌କୁ ........

# ପଦେ ଅଧେ

ପ୍ରାୟ ତିରିଶ ବର୍ଷ ତଳେ ୧୯୭୯ ମସିହା ବସନ୍ତର ଶେଷ ପର୍ଯ୍ୟାୟରେ ମୁଁ ପ୍ରଥମ ପାଇଁ ଯାଇଥିଲି ବିଦେଶ ଭ୍ରମଣରେ, ଆଫ୍ରିକା ମହାଦେଶର କେନିଆ, ଜାମ୍ବିଆ, ଜିମ୍ବାବ୍ୱେ ସାତ ବର୍ଷ ତଳେ, ଯାଇଥିଲି ବିଶ୍ୱର ଶ୍ରେଷ୍ଠ ବିତ୍ତଶାଳୀ ଶକ୍ତିଶାଳୀ ଦେଶ ଯୁକ୍ତରାଷ୍ଟ୍ର ଆମେରିକା, ଚଳିତବର୍ଷ ଜୁଲାଇରେ ଗଲି ବିଂଶ ଶତାବ୍ଦୀରେ ଜ୍ଞାନ ବିଜ୍ଞାନ ଓ ସଂସ୍କୃତିରେ ଅଭୂତପୂର୍ବ ପରିବର୍ତ୍ତନ ଆଣିଥିବା ଦେଶ, ଇଂଲାଣ୍ଡ, ଜର୍ମାନ, ଫ୍ରାନ୍ସ ଓ ହଲାଣ୍ଡ । ଦେଶ ଗୁଡ଼ିକ ସହିତ ଭାରତର ଐତିହାସିକ,ସାଂସ୍କୃତିକ ଓ ରାଜନୈତିକ ସଂପର୍କ ଭାରତ ଜନଜୀବନକୁ କେତେ ଯେ ପ୍ରଭାବିତ କରିଛି ତା ବର୍ଣ୍ଣନା କରିହେବନି । ଅଜଣାକୁ ଜାଣିବା, ଅଦେଖାକୁ ଦେଖିବା, ପରକୁ ଆପଣା ଓ ଆପଣାକୁ ପର କରି ରୋମାଞ୍ଚିତ ଜୀବନଯାପନ କରିବାରେ ସମ୍ଭବତଃ ଇୟୁରୋପୀୟମାନେ ଧୂରନ୍ଧର । ଅଚିନ୍ତ୍ୟ ବିଶ୍ୱର ଏକ ଗ୍ରହ ଏହି ପୃଥିବୀ, ତାର ବର୍ଣ୍ଣାଢ଼୍ୟ ରହସ୍ୟମୟ ପ୍ରକୃତିର ବୈଚିତ୍ର୍ୟମୟ ରୂପ ଦେଖିବା ପାଇଁ ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତି ମନରେ ପ୍ରବଳ ଆଗ୍ରହ ଥାଏ । ମୋର ଏହି ଅଭିଳାଷପୂର୍ଣ୍ଣ କରିବାରେ ସହାୟତା ପାଇଛି ଝିଅ ଜୋଇଁ ପୁଅ ଓ ବୋହୂଙ୍କ ଠାରୁ ।

ଅବବୋଧକୁ ଶାଣିତ ଓ ଭାବନାକୁ ସଂପ୍ରସାରିତ କରିବା କ୍ଷେତ୍ରରେ ପରିଭ୍ରମଣର ଅବଦାନ ଅନସ୍ୱୀକାର୍ଯ୍ୟ । ବିଶେଷତଃ ଜଣେ ସମାଜବିଜ୍ଞାନର ଛାତ୍ର, କଳ୍ପନାପ୍ରବଣ କବି ଓ ଲେଖକ ପକ୍ଷେ ବିଦେଶ ଭ୍ରମଣ ସୃଜନର ଏକ ଶକ୍ତିଶାଳୀ ପ୍ରେରଣା । ଅନ୍ୟଦେଶର ପ୍ରକୃତି, ମାନବ ଚରିତ୍ର, ସାମାଜିକ ପ୍ରଥା ରାଜନୈତିକ, ପ୍ରଶାସନିକ ବ୍ୟବସ୍ଥା, ସ୍ୱଚକ୍ଷୁରେ ଦେଖି ନିଜେ ଗଭୀର ଭାବେ ଉପଲବ୍ଧ କରି, ସେ ସମ୍ବନ୍ଧରେ ଗପ, କବିତା, ପ୍ରବନ୍ଧ ଲେଖିଲେ ତାହାଯେ ଅଧିକ ବିଶ୍ୱସନୀୟ ମର୍ମସ୍ପର୍ଶୀ ହେବ,ଏଥିରେ ତିଳେ ମାତ୍ର ସଂନ୍ଦେହ ନାହିଁ । ସଂସ୍କୃତି ସହ ସଂସ୍କୃତିର ମିଳନ ଓ ସଂଘର୍ଷ, ନାନା ଭୂଖଣ୍ଡରେ ବାସ କରୁଥିବା ଲୋକଙ୍କ ଚିନ୍ତାଧାରାର ଆଦାନ ପ୍ରଦାନ ମାନବ ସଭ୍ୟତାକୁ ଆଗେଇ ନିଏ ବିକାଶ ପଥରେ । ଏକଥା କହିଲାବେଳେ ମୋ କାନରେ ଗୁଞ୍ଜରିତ ହୋଇ ଉଠେ, ଆଲବାର୍ଟ କାମ୍ୟୁଙ୍କ (Albert Camus) ଅଭିବ୍ୟକ୍ତି "ଭ୍ରମଣରୁ ଆମେ ଯେଉଁ ଅଭିଜ୍ଞତା ଅର୍ଜନ କରୁ ତାହା ସର୍ବତ୍ର ସମାନ, ମଣିଷ ତା ଜୀବନରେ ଗଭୀରତମ ପ୍ରଦେଶରେ ଯେଉଁ ଅଭିଜ୍ଞତା ଅର୍ଜନ କରିବାକୁ ଚେଷ୍ଟା କରେ ତାହା ମିଳିଥାଏ ଭ୍ରମଣରୁ । ସେ ଅଭିଜ୍ଞତା ଅନ୍ୟଠାରୁ ଶିଖି ହେବ ନାହିଁ କି ସଂଗ୍ରହ କରି ହେବ ନାହିଁ, ଏହି ଅଭିଜ୍ଞତା ଆମ ନିଜର ଏବଂ ଏଗୁଡ଼ିକ ଆମର

ନିଜସ୍ୱ ହେଲା ପରେ ଆମ ଜୀବନକୁ ଉନ୍ନତ କରେ।" ଜୀବନକୁ ଉନ୍ନତ କରିବା ସହ ମହାମାନବିକତାବୋଧରେ ପ୍ରାଣକୁ ଉଦ୍‌ବୁଦ୍ଧ କରେ ଅନ୍ୟ ଦେଶ ଓ ଜାତିର ଲୋକଙ୍କ ସହ ସାକ୍ଷାତ୍‌କାର ଆନ୍ତରିକ ଭାବ ବିନିମୟ। ସେଇଥିପାଇଁ ବୋଧହୁଏ ୱାରେନ୍ ହେଷ୍ଟିଙ୍ଗ୍‌ସ ଉଇଲକିନ୍‌ସ ଓ ଜୋନ୍‌ସ (Wilkins and Jones)ଙ୍କୁ ଭାରତକୁ ଡକାଇ ଭାରତୀୟଙ୍କ ସଂଗେ ମିଶି, ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରି ଭାରତୀୟ ଗ୍ରନ୍ଥକୁ ଅନୁବାଦ କରାଇଥିଲେ। ତାଙ୍କର ହୃଦ୍‌ବୋଧ ହୋଇଥିଲା ଯେ ଭାରତର ଐତିହ୍ୟ ଓ ଭାରତୀୟଙ୍କ ମନସ୍ତତ୍ତ୍ୱ ଠିକ୍ ଭାବେ ବୁଝିପାରିଲେ ଭାରତ ଶାସନ ସହଜ ସୁଗମ ହେବ। ଏକବିଂଶ ଶତାବ୍ଦୀରେ ଯେତେବେଳେ ଜ୍ଞାନବିଜ୍ଞାନର ଦ୍ରୁତ ବିକାଶ ସମଗ୍ର ବିଶ୍ୱକୁ ଗୋଟିଏ ଗ୍ରାମରେ ପରିଣତ କରିବାକୁ ଯାଉଛି, ସେତେବେଳେ ଭ୍ରମଣ ମାଧ୍ୟମରେ ଭିନ୍ନ ଦେଶ ଓ ଜାତିର ଲୋକଙ୍କ ମଧ୍ୟରେ ଏକାତ୍ମବୋଧ ସୃଷ୍ଟି ଏକାନ୍ତ ଆବଶ୍ୟକ।

ଛାତ୍ରାବସ୍ଥାରେ ବିଭିନ୍ନ ଦେଶ ସଂବନ୍ଧରେ ଆମେ ଜ୍ଞାନ ଅର୍ଜନ କରୁଥିଲୁ ଇତିହାସ, ଭୂଗୋଳ ବହି ପଢ଼ି, ବିଭିନ୍ନ ଦେଶର ଲୋକଙ୍କ ଚରିତ୍ର ଓ ମନୋଭାବ ସଂବନ୍ଧରେ ଆମର ଏକ ସ୍ଥୂଳ ଧାରଣା ଜାତ ହେଉଥିଲା ସେମାନଙ୍କ ସାହିତ୍ୟ ଅଧ୍ୟୟନ ଦ୍ୱାରା। କିନ୍ତୁ ମନେ ରଖିବାକୁ ହେବ ଯେ ଗୋଟିଏ ଜାତିର ଚଳିଚଳଣ ଭାବଧାରା ଜାଣିବାକୁ ହେଲେ ସେ ଜାତିର ଲୋକଙ୍କ ଦୈନ୍ୟନ୍ଦିନ ଜୀବନଯାପନର ପର୍ଯ୍ୟବେକ୍ଷଣ ଓ ସେମାନଙ୍କ ସହ ଅନ୍ତରଂଗ ଆଳାପ ଦରକାର। ଜଣେ ଭାରତୀୟକୁ ଠିକ୍ ଭାବେ ଜାଣିବାକୁ ହେଲେ ତା'ର ଜୀବନଦର୍ଶନ ଜାଣିବା ଆବଶ୍ୟକ। କିତୁ ରେଡ଼ି (Kittu Reddy) ତାଙ୍କର ପୁସ୍ତକ History of India - A new approch ରେ ଲେଖିଛନ୍ତି Indian people are subjective in their approach to life - they stress on inside man, not outside. Indian history demands subjective understanding and appreciation. Inwardness is striking feature of Indian culture" ମୋର ମନେହୁଏ ପ୍ରତ୍ୟେକ ଦେଶର ଇତିହାସ ଓ ସାଂପ୍ରତିକ ସ୍ଥିତିକୁ ହୃଦୟଙ୍ଗମ କରିବାକୁ ହେଲେ ସେମାନଙ୍କ ମନସ୍ତତ୍ତ୍ୱ ଓ ଜୀବନଧାରା ଜାଣିବା ପ୍ରୟୋଜନ। ବିଦେଶ ଭ୍ରମଣ ଏହା ଜାଣିବାର ସୁଯୋଗ ଦେଇଥାଏ।

ଗୋଟିଏ ଦେଶର ସାମଗ୍ରିକ ରୂପ କେବଳ ତାର ନଦୀ ନାଳ,ରାସ୍ତାଘାଟ, ଘରଦ୍ୱାର, ଗଛବୃକ୍ଷରୁ ଜଣାଯାଏ ନା, ତା'ର ଅନ୍ତର୍ନିହିତ ଭାବ ଓ Spirit, ବା ସାଂସ୍କୃତିକ ଆଭିମୁଖ୍ୟ ସେ ଦେଶର ସ୍ୱତନ୍ତ୍ର ସତ୍ତାର ପରିଚୟ ଦିଏ। ବାଂଗଲାଦେଶର ଯୁଗ ଯୁଗ ବ୍ୟାପୀ ଆଦର୍ଶ ଆବେଗର ବିଲୋପରେ କ୍ଷୁବ୍ଧ ତସଲିମା ନସରିନ୍ Jail house କବିତାରେ ଯାହା ଲେଖିଛନ୍ତି ତା ସତ ନୁହେଁ କି? ସେ ଲେଖିଛନ୍ତି :

"Now the land is not a country any more
only some fixed rivers some villages and cities
once men used to recite poetry,
Now they donot think twice before banishing a poet.

ଜୀବନର ସୂକ୍ଷ୍ମଭାବ, ପ୍ରାଣର ସ୍ପନ୍ଦନ, ପ୍ରତ୍ୟେକ ଜାତିର ଅସ୍ମିତାର ପରିଚୟକ। ଭ୍ରମଣ ମାଧ୍ୟମରେ ଏହା ଉତ୍ତମ ରୂପେ ଉପଲବ୍ଧି କରିହୁଏ।

ଯୁଗ ବଦଳିଯାଉଛି। ପରିବର୍ତ୍ତନର ଆହ୍ୱାନର ମୁକାବିଲା କରି ମାନବ ସଭ୍ୟତା ପୁଷ୍କଳ ହେଉଛି। ଏହି ପରିବର୍ତ୍ତନ କିପରି କେଉଁ ରୂପରେ କେଉଁଠି ଘଟୁଛି, ସେ ଦେଶର ଲୋକେ କିପରି ପରିବର୍ତ୍ତନକୁ ଆପଣେଇ ନେଉଛନ୍ତି ଜାଣିଲେ ସେ ଦେଶକୁ ସଠିକ୍ ରୂପେ ଚିହ୍ନି ହେବ। ଜବାହାରଲାଲ୍ ନେହେରୁ ତାଙ୍କର ପ୍ରଖ୍ୟାତ ପୁସ୍ତକ Discovery of India ରେ ଲେଖିଛନ୍ତି:"Tradition has to be accepted to a larger extent and adapted and transformed to meet new condition and way of thought and at the sametime traditoins have to be built up" ପୃଥିବୀର ବିଭିନ୍ନ ଦେଶ ବିଶେଷତଃ ସମୃଦ୍ଧ ଦେଶ ଗୁଡ଼ିକର ଅତୀତ କ'ଣ ଥିଲା, ଏବେ କିପରି ଅଛନ୍ତି, ପୁରାତନ ପ୍ରଥାକୁ କେତେଦୂର ରଖି ନୂତନ ପ୍ରଥା ଗଢ଼ି ଚାଲିଛନ୍ତି ଏସବୁର ବର୍ଣ୍ଣିଳ ଚିତ୍ର ସଂଗ୍ରହ କରି ହେବ ଦେଶ ପର୍ଯ୍ୟଟନ ମାଧ୍ୟମରେ।

ଭ୍ରମଣ କାହାଣୀ ବିଶ୍ୱର ଗୋଟିଏ ଅଞ୍ଚଳର ବିଶେଷତ୍ୱ ସମସ୍ୟା ଓ ସମ୍ଭାବନା ଅନ୍ୟ ଅଞ୍ଚଳର ଲୋକଲୋଚନକୁ ଆଣିଥାଏ। ସିଲାଗୁଜ୍‌ରାଲ୍‌ଙ୍କ ମନମୁଗ୍ଧକାରୀ ଭ୍ରମଣ ପୁସ୍ତକ Somany Journeys ରୁ ଆମେ ଜାଣିବାକୁ ପାଉଁ Paaye paa ବିଷୟରେ। ଏହା ନାଇରୋବିର ଏକ କଳା, ସଂସ୍କୃତି ସାହିତ୍ୟର କେନ୍ଦ୍ର ଯାହା ବିଶ୍ୱର ସମସ୍ତ କଳାକାର ଓ କଳାପ୍ରେମୀଙ୍କର ଏକ ତୀର୍ଥକ୍ଷେତ୍ର ଭବିଷ୍ୟତରେ ହେବ ବୋଲି ଶ୍ରୀମତୀ ଗୁଜରାଲ ଆଶା ପୋଷଣ କରନ୍ତି। ଏହି ଭ୍ରମଣ ବୃତ୍ତାନ୍ତରୁ ଜାଣିବାକୁ ପାଉଁ ଆଫ୍ରିକାର ମାସାଇମାରା (Maasai Mara) ସଂସ୍କୃତି ଯେଉଁଥିରେ ଝିଅମାନେ ବିବାହ ପାଇଁ ପଶୁ ଭଳି ବିକ୍ରି ହୁଅନ୍ତି। ସିରିଆର ସୌନ୍ଦର୍ଯ୍ୟରେ ମୁଗ୍ଧ କବି ଲେଖନ୍ତି The pageant of pagan glory / Dazzled my minds eyes"। ଜୋଆନସବର୍ଗର ଗାନ୍ଧିଜୀଙ୍କ ବନ୍ଦୀଶାଳା ଟଲଷ୍ଟୟ ଫାର୍ମ, ଫୋଏନିକ୍ସ ଆଶ୍ରମ ଦେଖି ସେ ଭାବବିହ୍ୱଳ ହୁଅନ୍ତି। ଭାବବିଭୋର ଭ୍ରମଣ ବୃତ୍ତାନ୍ତ ଯେ ସୁନ୍ଦର ମର୍ମସ୍ପର୍ଶୀ ସାହିତ୍ୟ ସୃଷ୍ଟି କରେ ଶିଲାଙ୍କ ଭ୍ରମଣକାହାଣୀ ତା'ର ଅକାଟ୍ୟ ପ୍ରମାଣ।

ନିଜ ଆଖିରେ ଦେଖିଥିବା କଥା, ଅନ୍ୟ ଦେଶର ମାଟିରେ ପାଦ ଥୋଇ, ତାର ପାଣିପବନରେ କିଛିଦିନ କଟାଇବା ବେଳେ ମନ ପ୍ରାଣରେ ଆସିଥିବା ଆବେଗ ଆବେଶ, ନିଜ ପର ଦୂର ନିକଟ, ବର୍ତ୍ତମାନ-ଭବିଷ୍ୟତର ବିଚିତ୍ର ବିରଳ ଭାବନାକୁ ଅକ୍ଷରରେ ରୂପାୟିତ କରିବାର ସ୍ପୃହା ସମ୍ବରଣ କରି ହୁଏନି। ଏ ବିଶ୍ୱ ବ୍ରହ୍ମାଣ୍ଡରେ ଯେ ଏକ ଅଦ୍ୱିତୀୟ ମହାନ ଶକ୍ତି ସବୁ ଜୀବଜନ୍ତୁ ଓ ଉଦ୍‌ଭିଦ୍ ଜଗତ ଉପରେ ତା'ର ପ୍ରଭାବ ବିସ୍ତାର କରି ଚାଲିଛି, ଏବଂ ସେହି ସର୍ବବ୍ୟାପୀ ସର୍ବଶକ୍ତିମାନ ଈଶ୍ୱର ସେ ସମସ୍ତଙ୍କୁ ଏକ ସୂକ୍ଷ୍ମ ରଜ୍ଜୁରେ ବାନ୍ଧି ରଖି କ୍ରୀଡ଼ନକ ରୂପେ ଖେଳାଉଛି, ଏହି ଉପଲବ୍ଧି ପର୍ଯ୍ୟଟକର ମନକୁ ସ୍ୱତଃ ଆସିଥାଏ। ପ୍ରଖ୍ୟାତ କବି ଡବ୍ଲୁ.ବି. ୟେଟସ୍‌ଙ୍କ କବିତା ପଂକ୍ତି:

"Though leaves are many
the root is one"

H.K. Kaulଙ୍କ ଭାବଉଦ୍ରେକାରୀ ପଦ

'In a map of unchosen roads
I hold to the key
To infinity within, infinty without."

ସବୁରେ ଏହି ନିଗୂଢ଼ ସତ୍ୟ ମୁଁ ମର୍ମେ ମର୍ମେ ଉପଲବ୍ଧି କରିଛି। ସବୁ ମାଟିର ଆକର୍ଷଣ ସବୁ ପ୍ରକୃତିର ମଧୁ-ମଦିର ସ୍ପର୍ଶ ମୁଁ ଅନୁଭବ କରିଛି, ଜାତି, ଧର୍ମ, ଭାଷା, ବର୍ଣ୍ଣ, କେଉଁଠି ପ୍ରତିବଂଧକ ସୃଷ୍ଟି କରିନି। କାଶ୍ମୀରର ଅତୀତର କାଠ, ପାଦୁକା ବା କଠଉ ଏବେ ସେଠାକାର ଲୋକେ ବ୍ୟବହାର କରୁନାହାନ୍ତି। ମାତ୍ର ତାର ବ୍ୟବହାର ଦେଖିବାକୁ ମିଳୁଛି ଜାପାନର ସାଧୁଙ୍କ ଠାରେ। ମଣିଷର ଜୀବନ ରୀତି ବିଚିତ୍ର ଓ ଗତିଶୀଳ, ଭାବର ରାଜ୍ୟ ବ୍ୟାପକ, ବର୍ଣ୍ଣିଳ। ଏସବୁର ଚିତ୍ରଣ ପାଇଁ ଲୋଡ଼ା ପରିଭ୍ରମଣ ପରିଚୟ ଓ ପର୍ଯ୍ୟାଲୋଚନା।

ମୋ ଦେଶର ଲକ୍ଷ୍ମୀ, ସରସ୍ୱତୀ, ଗଣେଷ, ବୁଦ୍ଧ, ଗାନ୍ଧିଙ୍କ ମୂର୍ତ୍ତି ବିଦେଶରେ ଦେଖି ମୁଁ ଗର୍ବ ଅନୁଭବ କରିଛି। ସେକ୍‌ସିପିଅର, ଆବ୍ରାହମ୍ ଲିଙ୍କନ କାର୍ଲମାର୍କ୍ସ, ଲେନିନ୍ ନେଲ୍‌ସନ୍ ମାଣ୍ଡେଲାଙ୍କ ପ୍ରତିମୂର୍ତ୍ତି ସେମାନଙ୍କର ଜନ୍ମଭୂମିର ବାହାରେ ଦେଖି ଉଲ୍ଲସିତ ହୋଇଛି, ବିଶ୍ୱ ପ୍ରେମରେ ସ୍ପନ୍ଦିତ ହୋଇଛି। ଗୋଟିଏ ଦେଶରେ କିଛିଦିନ ରହିଲା ପରେ ମନେ ହୋଇଛି, ସେ ଦେଶଟି ଯେମିତି ମୋର ମୋ ସ୍ନେହମୟୀ ମାଆ। ଭୌଗୋଳିକ ସୀମାରେଖାରେ ଅଙ୍କିତ ପ୍ରଭେଦ କେବେ କ'ଣ ଭାବର ଐକ୍ୟକୁ ଖଣ୍ଡନ କରିପାରେ !

ଜୀବନରେ ଏପରି ମହାନୁଭବ ଓ ବିଚିତ୍ର ଅନୁପମ ସୌନ୍ଦର୍ଯ୍ୟଜାତ ଆନନ୍ଦ ପାଇବାର ସୁଯୋଗ ମୋର ଆତ୍ମଜମାନେ, ପୁଅ ବୋହୂ ଝିଅ ଜୋଇଁ, ଦେଇଥିବାରୁ ସେମାନଙ୍କୁ ମୋର ଅନ୍ତର ନିଗିଡ଼ା ସ୍ନେହାଶୀଷ ଦେଉଛି। ଭ୍ରମଣର ଅନୁଭୂତି ଲିପିବଦ୍ଧ କରି ପୁସ୍ତକ ରୂପେ ପ୍ରକାଶ କରିବାକୁ ପ୍ରୋତ୍ସାହନ ଦେଇଛନ୍ତି, ଗୁରୁପ୍ରତିମ ହିତୈଷୀ ପ୍ରଫେସର ଯତୀନ୍ଦ୍ର ମୋହନ ମହାନ୍ତି, ଶ୍ରଦ୍ଧେୟ ବଂଧୁ ଶ୍ରୀଯୁକ୍ତ ପ୍ରଶାନ୍ତ ଚନ୍ଦ୍ର ପଟ୍ଟନାୟକ, କବି ସୈରୀନ୍ଦ୍ର ବାରିକ, ଡ଼ଃ ଦିନନାଥ ପାଠୀ, ଡ଼. ବିଜୟ କୁମାର ମହାନ୍ତି, ଶ୍ରୀ ରମାକାନ୍ତ ରାଉତ। ସେମାନଙ୍କୁ ମୁଁ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି। ଡି.ଟି.ପି. ସଂଶୋଧନରେ ସାହାଯ୍ୟ କରିଛନ୍ତି ଶ୍ରଦ୍ଧେୟ ରମାକାନ୍ତ ରାଉତ ବହିର ନାମକରଣ କରିଛନ୍ତି ଡ଼. ବିଜୟ କୁମାର ମହାନ୍ତି, ପ୍ରଚ୍ଛଦପଟ ଚିତ୍ର ଆଙ୍କିଛନ୍ତି ପ୍ରଖ୍ୟାତ ଶିଳ୍ପୀ ଓ ଲେଖକ ଡଃ. ଦିନନାଥ ପାଠୀ। ସେମାନଙ୍କ ନିକଟରେ ମୁଁ ଚିର ଋଣୀ। ସ୍ୱଳ୍ପ ଦିନ ଭିତରେ ଅଗ୍ରଦୂତର ସ୍ୱତ୍ୱାଧିକାରୀ ଓ ପରିଚାଳକ ବହିଟିକୁ ସୁନ୍ଦର ସୁଦୃଶ୍ୟ କରି ପ୍ରକାଶ କରିଥିବାରୁ ସେମାନେ ଧନ୍ୟବାଦାର୍ହ।

ମୋର ଏ ଭ୍ରମଣ କାହାଣୀଟି ପାଠକ ପାଠିକା ମାନଙ୍କୁ ଆନନ୍ଦାଲୋକ ଦେଇପାରିଲେ ମୁଁ ଖୁସି ହେବି।

**ବାସୁଦେବ ସାହୁ**

# ସୂଚୀ

# ଲେଖକଙ୍କ ପ୍ରକାଶିତ ଅନ୍ୟାନ୍ୟ ପୁସ୍ତକ

**କବିତା**

ଦୃଶ୍ୟାନ୍ତର
ପୂର୍ବାପର
ପ୍ରଣୟପାରିଧି
ଦୂରଗାଆଁ ନଈ
ଅନନ୍ୟ
ଶେଷବସନ୍ତର ଗୀତ
ବର୍ଣ୍ଣିଳ ପୃଥିବୀ

**ଗଳ୍ପ**

ସୂର୍ଯ୍ୟାବର୍ତ୍ତ
ବିବସ୍ତ୍ର ବିଶ୍ୱକର୍ମା
ପ୍ରତିମୂର୍ତ୍ତି
ଅସ୍ତସୂର୍ଯ୍ୟ
କେତୋଟି ପ୍ରେମ କଥା
ଛିନ୍ନରାଗ

**ପ୍ରବନ୍ଧ**

ସମାଜ
ଜିଜ୍ଞାସା
ସମାଜ ଓ ସଂହତି
ଶାସନ ପ୍ରଶାସନ ଓ ପ୍ରଗତି
ସାହିତ୍ୟ ଓ ସମାଜବାଦ
ସାହିତ୍ୟ ସମାଜ ଓ ଅର୍ଥନୀତି
ନାନାରୂପେ ନାରୀ

**ଉପନ୍ୟାସ**

ଭିନ୍ନ ଏକ ସୂର୍ଯ୍ୟୋଦୟ
ଭୂମିପୁତ୍ର
ସିଂହାସନ
ଅନୁରାଗ

**ଜୀବନୀ**

କ୍ରାନ୍ତିପଥର ଯାତ୍ରୀ

**ଭ୍ରମଣ କାହାଣୀ**

ବମ୍ବେରୁ ନାଇରୋବି
ଆମେରିକାରେ କିଛିଦିନ

**ଅନୁବାଦ**

ମହାନ ପ୍ରାଚୀରର ଶୀତଳଶିଳା
ନିକ୍ଷେପିତର କଥା
ନିକ୍ଷେପିତର କାବ୍ୟ

# ଯନ୍ତ୍ରଣା ଭିତରେ ଆନନ୍ଦର ଅନ୍ୱେଷା

କିଏ ଜଣେ କବି କହିଥିଲେ ପରା 'Sweetest songs are those that tell of the saddest thoughts' ଦୁଃଖ ମିଶା ସୁଖର ଅନୁଭୂତି ଦିଏ ଅନନ୍ୟ ଆନନ୍ଦ । କଷ୍ଟଲବ୍ଧ ଧନର ମୂଲ୍ୟ ପ୍ରଚୁର । ଦୂର ଆକାଶକୁ ଯଦି ମଣିଷ ସହଜରେ ପକ୍ଷୀ ପରି ଉଡ଼ିଯାଉଥାନ୍ତା, ସେ କ'ଣ ଶିହରିତ ହୁଅନ୍ତା, ଦୂର ଦେଶକୁ ଯଦି ଅବାଧରେ ଯାଇ ହେଉଥାନ୍ତା, ପରିଭ୍ରମଣ କଣ ଉଦ୍ଦୀପନାମୟ ହୁଅନ୍ତା ।

ଝିଅ ଜୋଇଁଙ୍କ ନିମନ୍ତ୍ରଣରେ ଯାଇଥିଲି ଆମେରିକା, ସେ ବେଳର ଉଲ୍ଲାସ ଉତ୍ତେଜନା ଏବେ ମଧୁର ସ୍ମୃତି । ଏବେ ପୁଅ ବୋହୂଙ୍କ ନିମନ୍ତ୍ରଣରେ ଯିବି ଇୟୁରୋପ। ଆଗର ଆବେଗ ଅସ୍ଥିରତା ନାହିଁ, ତଥାପି ରହିଛି ଅପାର କୌତୁହଳ। ପ୍ରାୟ ୫୦୦/୬୦୦ ବର୍ଷ ତଳେ ଇୟୁରୋପୀୟ ଦେଶଗୁଡ଼ିକ, ଇଂଲାଣ୍ଡ, ହଲାଣ୍ଡ, ଫ୍ରାନ୍ସ ନୌଯାତ୍ରାରେ ଏସିଆ ଆଫ୍ରିକା, ଆମେରିକା ଭୂଖଣ୍ଡରେ ବ୍ୟବସାୟ କରିବା ସହ ବସତି ସ୍ଥାପନ କରିଥିଲେ। ସେ ସବୁ ଦେଶରେ ରାଜନୈତିକ ଶକ୍ତି ବଳରେ ଶାସନ ଅକ୍ତିଆର କଲେ। ନିଜର ଉପନିବେଶ ସ୍ଥାପନ କରିବା ସଂଗେ ସଂଗେ ସାମ୍ରାଜ୍ୟ ବିସ୍ତାର କଲେ। ବିଶ୍ୱ ଇତିହାସ ହେଉଛି ଇୟୁରୋପୀୟ ସାମ୍ରାଜ୍ୟ ବିସ୍ତାର, ଶାସିତ ରାଜ୍ୟମାନଙ୍କ ଉପରେ ଅତ୍ୟାଚାର, ସ୍ୱଦେଶର ସମୃଦ୍ଧି ବୃଦ୍ଧି ସହ ଉପନିବେଶର ବିପର୍ଯ୍ୟୟ, ଶାସିତ ଦେଶବାସୀଙ୍କ ମଧ୍ୟରେ ଶାସକ ଦେଶର, ଶିକ୍ଷା ପ୍ରବର୍ତ୍ତନ। ପରାଧୀନତାର ଗ୍ଳାନିରେ ମ୍ରିୟମାଣ ଦେଶଗୁଡ଼ିକର ସ୍ୱାଧୀନତା ସଂଗ୍ରାମର ରୋମାଞ୍ଚକର କାହାଣୀ ବିଶ୍ୱ ଇତିହାସକୁ ବର୍ଣ୍ଣିଳ ଉଦ୍ଦୀପ୍ତ କରିଛି ସତ, ତେବେ ଇୟୁରୋପୀୟ ଦେଶଗୁଡ଼ିକର ଆବିଷ୍କାର, ଶାସନ ଅଧିକାର ପାଇଁ ପରସ୍ପର ମଧ୍ୟରେ ଯୁଦ୍ଧବୃତ୍ତାନ୍ତ ବୈଚିତ୍ର୍ୟମୟ କରି ଦେଇଛି। ତୃତୀୟ ବିଶ୍ୱର ଘୃଣା, ଅବିଶ୍ୱାସ, ବିସ୍ମୟ ବିରଳ ଶ୍ରଦ୍ଧା ଉପଲବ୍ଧି କରୁଥିବା ଇୟୁରୋପୀୟ ଦେଶର ପ୍ରତ୍ୟକ୍ଷ ସ୍ପର୍ଶରେ ଆସିବାର ଆକାଂକ୍ଷା ଯେ ନୂତନସ୍ୱାଦର ଆବେଗ ଅନୁଭବ ଆଣିଦେବ ଏହା ଭାବିବା ମୋ ପକ୍ଷେ ଅସ୍ୱାଭାବିକ ନଥିଲା। ସଂଗରେ ଯିବେ ଧର୍ମପତ୍ନୀ ଓ ସମୁଦୁଣୀ। ପୁଅ ବୋହୂ ବାପା ମାଆଙ୍କୁ ବିଦେଶ ଭ୍ରମଣର ସୁଯୋଗ ଦେଇ ହିନ୍ଦୁ ସଂତାନର ବାପା ମାଆଙ୍କ ତୀର୍ଥଯାତ୍ରା କରାଇ ଦେବାର ସାମାଜିକ ଗୌରବ ଓ ଧର୍ମୀୟ ଦାୟିତ୍ୱ ସଂପାଦନର ଆତ୍ମତୃପ୍ତି ଲାଭ କରିବେ ନିଶ୍ଚୟ। ତେବେ ଆମେରିକାସ୍ଥ ଝିଅ ଜୋଇଁଙ୍କ ଭଳି ହଲାଣ୍ଡସ୍ଥ ଅର୍ଥନୀତି ଗବେଷକ ପୁଅ

ଖୁବ୍ ବେଶି ରୋଜଗାର କରେ ନି। ଯାତାୟତର ଖର୍ଚ୍ଚ କିଛି ମୋତେ ବହନ କରିବାକୁ ପଡ଼ିବ। ଅବସରପ୍ରାପ୍ତ ଅଧ୍ୟାପକ ପକ୍ଷେ ଏଥିପାଇଁ ସମ୍ବଳ ଯୋଗାଡ଼ କରିବା ଚିନ୍ତାର ବିଷୟ। ଏହାଠାରୁ ଅଧିକ କଷ୍ଟକର ହେଉଛି ଇୟୁରୋପୀୟ ଭିସା ସଂଗ୍ରହ କରିବା ଭୁବନେଶ୍ୱରୁ ଦିଲ୍ଲୀ ନେଦରାଲ୍ୟାଣ୍ଡ ଦୂତାବାସକୁ କାଗଜ ପଠାଇ ସେଠାରେ ବ୍ୟକ୍ତିଗତ ଭାବେ ହାଜର ହୋଇ ସାକ୍ଷାତ୍କାର ଦେବ। ଉଭର ସତୁରି ବୟସରେ ଯେ କିଛିଟା ଯନ୍ତ୍ରଣାଦାୟକ ତା ବୟସ୍କ ଲୋକେ ଅନୁଭବ କରିପାରିବେ। ୧୯୭୯ ମସିହାରେ ତତ୍କାଳୀନ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ମୋର ପୂଜ୍ୟଗୁରୁଦେବ ଡ.ବିଦ୍ୟାଧର ମିଶ୍ରଙ୍କ ସୁଦୟାରୁ କମନଓ୍ୱେଲଥ୍ ସାଂସ୍କୃତିକ ବିନିମୟ ବୃତ୍ତି ପାଇ ଆଫ୍ରିକା ପରିଭ୍ରମଣରେ ଯାଇଥିଲି। ସେ ପରିଭ୍ରମଣର ପ୍ରଥମ ତାରୁଣ୍ୟମୟ ଅନୁଭୂତି 'ବମ୍ବେରୁ ନାଇରୋବି' ପୁସ୍ତିକାରେ ଲିପିବଦ୍ଧ ହୋଇଛି। ଆମେରିକା ଯାତ୍ରାର ଗବେଷଣାଭିତ୍ତିକ, ମନସ୍ତାତ୍ତ୍ୱିକ ଚିନ୍ତା 'ଆମେରିକାରେ କିଛିଦିନ' ପୁସ୍ତକରେ ପ୍ରକାଶିତ ହୋଇ ପ୍ରଶଂସିତ ହୋଇଛି, ଏ ପୁସ୍ତକଟି ମୋତେ ଓଡ଼ିଶା ସାହିତ୍ୟ ଏକାଡ଼େମି ପୁରସ୍କାର ଆଣି ଦେଇଛି। ତେଣୁ ବଂଧୁମାନେ ପରିହାସରେ ହେଉବା ଗୁରୁତ୍ୱ ସହ ହେଉ କହୁଥିଲେ "ଇୟୁରୋପ ଯାତ୍ରା ତୁମକୁ ଅଧିକ ଉଚ୍ଚତର ସମ୍ମାନ ଦେବାରେ ସହାୟକ ହେବ।" ସେମାନଙ୍କର ଶୁଭେଚ୍ଛାର ବାସ୍ତବ ରୂପାୟନ ହେଉ ବା ନ ହେଉ, ଜଣେ ଲେଖକର ସ୍ୱାଭାବିକ ପ୍ରବୃତ୍ତି ହେବ, ନୂତନ ଦୃଶ୍ୟ ଓ ଚରିତ୍ରର ଚିତ୍ରଣ କରିବାକୁ। ଚିନ୍ତନ ମନନ ଲିଖନ ଜଣେ ଭାବୁକ ବ୍ୟକ୍ତିର ଚାରିତ୍ରିକ ଲକ୍ଷଣ / ପୁନଶ୍ଚ ଭ୍ରମଣରେ କ୍ଲାନ୍ତ ହୋଇ ବିଶ୍ରାମ ନେବା ବେଳେ ବିଦେଶରେ ବଂଧୁ ଅଭାବ ବେଳେ ମଧୁର ସଂଳାପ କରି ହେଉନଥିବାସ୍ଥଳେ, ନିଜ ସହ ନିଜେ କଲମ କାଗଜ ସହ କଥାବାର୍ତ୍ତା, ଆଂଚୁଡ଼ା ଆଂଚୁଡ଼ି ହେବାକୁ ମନ ବ୍ୟଗ୍ର ହୋଇଉଠେ। ଚିତ୍ରକର ହୋଇଥିଲେ ଏ ଦେଶର ପ୍ରକୃତିର ରମଣୀୟ ଦୃଶ୍ୟ, ନରନାରୀମାନଙ୍କର ବେଶ ଭୂଷା, ଚାଲି ଚଳଣ ମୁକ୍ତପ୍ରେମ ଚଞ୍ଚଳ ପ୍ରକୃତିକୁ ଚିତ୍ରଣ କରନ୍ତି। ଚିତ୍ରର ଗୋଟିଏ ସ୍ୱତନ୍ତ୍ର ଭାଷା ଅଛି, ଏବଂ ଏହା ମଧ ଏକ ଉଚ୍ଚ ସାହିତ୍ୟର ପର୍ଯ୍ୟାୟ ଭୁକ୍ତ ବୋଲି ବଂଧୁ ଦିନନାଥ ପାଠୀ କହନ୍ତି, ଜୀବନ୍ତ ଫଟୋଗ୍ରାଫ୍ ମଧ ଭାବ ଓ ସ୍ଥିତିର ସୁବୋଧ ସୁରମ୍ୟ ଅଭିଭାଷଣ ବୋଲି ବଂଧୁ ଧୀର କହନ୍ତି, ମୁଁ ରଂଗର ଆଲୋକର ଖେଳାଳୀ ନୁହେଁ, ଅକ୍ଷରର କର୍ମଚାରୀ, ନୀଳ ଗୋଲାପୀ ଫିତାରେ ଦୃଶ୍ୟ ଓ ଭାବନାକୁ ବାଂଧି ଦେଉଛି। ଆପଣା ସହୃଦୟ ପାଠକମାନେ ନାଲିଫିତା ଖୋଲିବାର ସଂଶୟ ଅନୁଭବ ନ କରି ସୁନ୍ଦରୀ ରମଣୀର ଫିତା ଖୋଲିବାର ଶିହରଣ ପାଇବେ।

'ସୁନ୍ଦରେ ତୃପ୍ତିରେ' ଅବସାଦ ନାହିଁ
ଯେତେ ଦେଖୁଥିଲେ ନୂଆ ଦିଶୁଥାଇ ।'

ଚିଲିକାର ମନମୁଗ୍ଧକର ଦୃଶ୍ୟ ଦେଖି ଭାବପ୍ରବଣ କବି ରାଧାନାଥ ଯାହା ଲେଖିଗଲେ ତା କ'ଣ ସବୁକ୍ଷେତ୍ରରେ ସମାନ ଭାବେ ସତ୍ୟ ? ଅନୁଭବୀର ଅନୁଭବରେ ଏହାର ସତ୍ୟତା ନିହିତ। ୨୦୦୯ ମସିହା ଜୁଲାଇ ତିନି ତାରିଖ ରାତିରେ ଦ୍ୱିତୀୟବାର ଯେତେବେଳେ ମୁଁ କେ.ଏଲ.ଏମ. ଉଡାଜାହାଜ ଆରୋହଣ କଲି ୨୦୦୨ ମସିହାରେ ପ୍ରଥମ ଆରୋହଣର ସେ ଉଲ୍ଲାସ ପାଇ ନ ଥିଲି। ନିରାନନ୍ଦ କି ଅଶ୍ୱସ୍ତି ଆବଶ୍ୟ ନଥିଲା। ବରଂ ଥିଲା ଆଶ୍ୱସ୍ତି, ଦିଲ୍ଲୀ ଇଣ୍ଟରନ୍ୟାସନାଲ୍ ଏୟାର୍‌ପୋର୍ଟରେ ୨ ନମ୍ବର ଗେଟ୍ ସାମ୍ନାରେ ଦୁଇଘଣ୍ଟା ଅପେକ୍ଷା କରିବାର କ୍ଳାନ୍ତି ଦୂର ହେବାର ଆଶ୍ୱସ୍ତି ମିଳିଥିଲା, ଏୟାର୍‌ପୋର୍ଟ୍‌କୁ ବହୁତ ଆଗରୁ ଆସିଥିବାରୁ ନିୟମ ଅନୁଯାୟୀ ଏୟାରପୋର୍ଟର ଅପେକ୍ଷା ଗୃହ ଭିତରକୁ ଆମକୁ ଯିବାକୁ ଦିଆଯାଇ ନଥିଲା। ବାହାରେ ବସିବା ପାଇଁ ଚେୟାର ନଥିଲା, ଜିନିଷ ବୋହିନେବା ହାତଟଣା ଠେଲା ଗାଡ଼ି ଉପରେ, ବା ସ୍ତମ୍ଭମୂଳରେ ଥିବା ସଂକୀର୍ଣ୍ଣ ଜାଗାରେ ସ୍ତମ୍ଭକୁ ଆଉଜି ବସି ରହିବାକୁ ହୋଇଥିଲା। ଉଡାଜାହାଜ ଆରୋହଣ କରିବା ପୂର୍ବରୁ ଯାଞ୍ଚ କାମଗୁଡ଼ିକ ମାନସିକ ଯନ୍ତ୍ରଣା ମଧ ଦେଉଥାଏ। ମୋର ବୟସ ଓ ମୋ ସଂଗରେ ଯାଉଥିବା ବୟସ୍କାରମଣୀ ଏ ଯନ୍ତ୍ରଣାକୁ କିପରି ଭାବେ ଲାଘବ କରିବେ ? ପ୍ରଥମ ଥର ଯାତ୍ରା ବେଳେ, କେ.ଏଲ.ଏମ. ଉଡାଜାହାଜରେ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ସ୍ପର୍ଶର ଚମକ ଅନୁଭବ କରିଥିଲି। ପଢ଼ିଥିଲି, କେ.ଏଲ୍.ଏମ. ଯେତେବେଳେ ପ୍ରଥମେ ନୀଳ ଆକାଶରେ ତାର ଡେଣା ମେଲି ଥିଲା ସେତେବେଳେ ସଂଗରେ ନେଇଥିଲା ବିଶ୍ୱକବିଙ୍କୁ କଲିକତାରୁ କାବୁଲ୍ ଏବଂ ଏହା ସେ ସମୟରେ ଏକ ଆନ୍ତର୍ଜାତୀୟ ଘଟଣା ହୋଇ କେ.ଏଲ୍.ଏମ.ର ଜନପ୍ରିୟତା ବଢ଼ାଇ ଥିଲା। ଉଡାଜାହାଜଟି ପୂର୍ବର ଔଜଲ୍ୟ ହରାଇ ଥିବା ପରି ମନେ ହେଲା । ୨୦୦୨ ଏୟାର ହଷ୍ଟେସ୍‌ଙ୍କ ସୌନ୍ଦର୍ଯ୍ୟ ୨୦୦୯ର ଏୟାର ହଷ୍ଟେସ୍‌ଙ୍କ ସୌନ୍ଦର୍ଯ୍ୟ ଠାରୁ ଅଧିକ ଆକର୍ଷଣୀୟ ଥିଲା । ମୁଁ ଜାଣେ ନା ଏହା ମୋ କ୍ରମବର୍ଦ୍ଧମାନ ବ୍ୟସ୍ତ ମନର ବିଭ୍ରାନ୍ତି କି ନୁହେଁ ।

ଭାରତୀୟ ସମୟ ରାତି ଏକଟାରେ ଉଡାଜାହାଜ ଇନ୍ଦିରାଗାନ୍ଧୀ ଇଣ୍ଟରନେସନାଲ୍ ଏୟାର୍‌ପୋର୍ଟ୍ ଛାଡ଼ିଲା। ରାତ୍ରିଭୋଜନରେ ପେଟିସ୍, ଫଳ ସାଲାଡ୍ ଜୁସ୍ ଦିଆଯାଇଥାଏ। ଚା, କଫି ମଧ। ଭୋଜନ ପରେ ନିଦ୍ରା ଦେବୀଙ୍କ କଅଁଳ ସ୍ପର୍ଶ ନୀରବ ଶାନ୍ତ କରିଦେଲା, ନିଦଭାଙ୍ଗିଲାବେଳକୁ ମୋ ଘଣ୍ଟାରେ ୭ଟା ୩୦ ମିନିଟ୍ ନେଦରଲାଣ୍ଡ ଟାଇମ୍ ପ୍ରାୟ ୪ଟା ହେବ। ଆକାଶରେ ସୂର୍ଯ୍ୟ କିରଣର ଶୁଭ୍ର ରକ୍ତାଭ ଛବି। ଏତେ ଶୀଘ୍ର କ'ଣ ସୂର୍ଯ୍ୟୋଦୟ ହୁଏ ଏଠାରେ। ଏୟାରହଷ୍ଟେସ୍‌କୁ ପଚାରିଲି। ଉଡାଜାହାଜ ନେଦରଲ୍ୟାଣ୍ଡ ଆକାଶବକ୍ଷରେ ଚାଲିଛିକି ?' ଉତ୍ତର ମିଳିଲା 'ହଁ'

# ହଲାଣ୍ଡ ମାଟିରେ ପଦାର୍ପଣ

ମନରେ ମୋର ଥିଲା ଦୁଃଖ ଅବଶୋଷ, ନିଜ ଢଂଗରେ ପ୍ରଥମ ସଂତାନକୁ ଗଢ଼ିବାର ଲକ୍ଷ୍ୟ ଅପୂର୍ଣ୍ଣ ରହିଗଲା ୨୦୦୨ ମସିହା ପର୍ଯ୍ୟନ୍ତ। ପୁତ୍ରକୁ ଅର୍ଥନୀତି ଅଧ୍ୟାପକ-ଗବେଷକ କରିବାର ଇଚ୍ଛାପୂର୍ଣ୍ଣ ହେବା ସମ୍ଭାବନାର ଆଭାସ ମିଳିଥିଲା ଯେତେବେଳେ ସେ ଟିଲବର୍ଗ ବିଶ୍ୱବିଦ୍ୟାଳୟର ବୃତ୍ତି ପାଇ ଆସିଲା ହଲାଣ୍ଡ। ଏବେ ପିଏଚ.ଡ଼ି ଲାଭ କରି ଆୟାରଲ୍ୟାଣ୍ଡରେ ପରିବେଶ ଅର୍ଥନୀତିର ଗବେଷକ। ପରିବାର ଟିଲ୍‌ବର୍ଗରେ। ଡଚ୍ ଭାଷାରେ ପାଠ ପଢୁଛନ୍ତି ଦୁଇ ନାତି। ସପ୍ତିକ ହଲାଣ୍ଡ ଯାତ୍ରା ଥିଲା, ସ୍ନେହ, ପ୍ରେମ, ଆଶା ଓ ଆକାଙ୍‌କ୍ଷା ପରିପୂର୍ଣ୍ଣର ଆଭାସ।

ନୂଆଦିଲ୍ଲୀ ଇନ୍ଦିରା ଇଣ୍ଟରନ୍ୟାସ୍‌ନାଲ୍ ଏୟାର୍‌ପୋର୍ଟରୁ ଜୁଲାଇ ତିନି ତାରିଖ ମଧ୍ୟରାତ୍ରିରୁ କେ.ଏଲ.ଏମ. ଉଡାଜାହାଜ ଆରୋହଣ କରି ଆମଷ୍ଟରଡାମ୍ ଏୟାରପୋର୍ଟରେ ଅବତରଣ କଲୁଁ ଆଠଘଣ୍ଟା ପରେ ୪ ତାରିଖ ଠିକ୍ ସମୟ ୫ଟା ୪୦ ମିନିଟ୍‌ରେ।

ଦିଲ୍ଲୀ ତୁଳନାରେ ଏଠାକାର ଏୟାରପୋର୍ଟରେ ବେଶୀ ଯାତ୍ରୀ ନଥିଲେ। ଇଲେକ୍ଟ୍ରୋନିକ୍ ପରିଚାଳିତ ରାସ୍ତାରେ ଏୟାରପୋର୍ଟର ଶେଷ ଟ୍ରାନ୍‌ଜିଟ୍ ପର୍ଯ୍ୟନ୍ତ ଆସି ନିଜର ଜିନିଷପତ୍ର ଧରି ବାହାରକୁ ଆସିଲୁଁ। ପୁଅ ଅମର ଆମକୁ ସଂଗରେ ନେଇଯିବାକୁ ଆସିଥାଏ। ମନେ ହେଲା ହଲାଣ୍ଡରେ ଜନବସତି ବିଶେଷ ନାହିଁ, ମାତ୍ର ହଲାଣ୍ଡ ଭୂଗୋଳ କହେ ଇଉରୋପିଅନ୍ ୟୁନିୟନ୍ ଭିତରେ ଏହାର ଜନସଂଖ୍ୟାର ଘନତା ମାଲଟାକୁବାଦ ଦେଲେ ସର୍ବାଧିକ, ସମଗ୍ର ବିଶ୍ୱରେ ତୃତୀୟ ସ୍ଥାନର ଅଧିକାରୀ, ପ୍ରତିବର୍ଗ କିଲୋମିଟର ଜାଗାରେ ୪୮୦ ଲୋକ ବାସ କରନ୍ତି। ଜନସଂଖ୍ୟାର ଘନତା ଦୃଷ୍ଟିରୁ ପ୍ରଥମ ବଂଗଳାଦେଶ, ଦ୍ୱିତୀୟ ଦକ୍ଷିଣ କୋରିଆ, ହଲାଣ୍ଡର ୬ ଭାଗ ଭୂମି ସମୁଦ୍ର ମଧ୍ୟରୁ ଉଦ୍ଧାର କରାଯାଇଛି ଯାହା ଡଚବାସୀଙ୍କ ଜ୍ଞାନ ଓ ସାମର୍ଥ୍ୟର ସଂକେତ। ଟାକ୍ସିରେ ଆସୁଥିଲାବେଳେ ଦୃଷ୍ଟି ଆକର୍ଷଣ କଲା ସବୁଜ ବନାନୀ ଏବଂ ଉଇଣ୍ଡ ମିଲ୍‌ସ୍।

ଆମଷ୍ଟାରଡାମ୍ ଏୟାର୍‌ପୋର୍ଟରେ ସ୍ଥାନୀୟ ସମୟ ୫.୫୦ରେ ଉଡାଜାହାଜ ପହଞ୍ଚିଲା। ବ୍ୟାରେଜ୍ ଟ୍ରାନ୍ସଫର ସ୍ଥାନକୁ ଆସିଲୁ, ଯାତ୍ରୀ ଗହଳି ନଥାଏ। ସହଜରେ ନିଜର ଜିନିଷ ଧରି ଟ୍ରଲିରେ ଏୟାରପୋର୍ଟ୍ ବାହାରକୁ ଆସିଲୁଁ। ......... ପୁତ୍ର ଅମରେନ୍ଦ୍ର ଅପେକ୍ଷା କରିଥାଏ। ଟାକ୍ସିରେ ଫେରିବୁ। ଟାକ୍ସି ଆସିବା ବିଳମ୍ବ ଥାଏ। ସେଠାକାର ରେଷ୍ଟୁରାଣ୍ଟରେ ବସି ରହିଲୁଁ। ସୁନ୍ଦର ଭେନ୍‌ଟିଏ ଆସି ଠିକ୍ ସାଢ଼େ ଆଠଟାରେ ପହଞ୍ଚିଲା। ଏଠାକାର ଲୋକଙ୍କର ସମୟାନୁବର୍ତ୍ତିତା ଅତ୍ୟନ୍ତ ପ୍ରଶଂସନୀୟ। ମଧ୍ୟମ ଗତିରେ ଚାଲିଛି ଟାକ୍ସି। ସୁନ୍ଦର ମସୃଣ ରାସ୍ତା, ରାସ୍ତାର ଦୁଇ ପାଖରେ ସବୁଜ ଉଚ୍ଚ ବୃକ୍ଷ, କିସମ କିସମର

ଗଛ, କେଉଁଠି ଘନବୃକ୍ଷରାଜି ତ କେଉଁଠି ଟିକିଏ ଛଡ଼ା ଛଡ଼ା। ପୂଅ କହି ଚାଲିଥାଏ" ହଲାଣ୍ଡରେ ପାହାଡ଼ ପର୍ବତ ନାହିଁ। ସମସ୍ତ ଭୂମି ସମତଳ- ଅଧିକାଂଶ ଜାଗାରେ ପ୍ରାକୃତିକ ଜଙ୍ଗଲ। ଯେଉଁଠି ଜଂଗଲ ନାହିଁ କୃତ୍ରିମ ଉପାୟରେ ବନୀକରଣ ପ୍ରକ୍ରିୟାରେ ଘଞ୍ଚବନାନୀ ସୃଷ୍ଟି କରାଯାଏ। ବିସ୍ତୀର୍ଣ୍ଣ ସମତଳ ଅଞ୍ଚଳରେ ଚାଷ ଜମି, ଖାଦ୍ୟଶସ୍ୟ ଚାଷକ୍ଷେତ୍ରରେ ମକ୍କା ପ୍ରଧାନ, ତୈଳବୀଜ ମଧ୍ୟରେ ସନଫ୍ଲାୱାର୍ ମୁଖ୍ୟ। ପନିପରିବା ଚାଷ ଏବଂ ପଶୁଖାଦ୍ୟ ବିଶେଷତଃ ଗୋ-ଖାଦ୍ୟ ପାଇଁ ବିସ୍ତୃତ ଚାରଣ ଭୂମି। ସ୍ଥାନେ ସ୍ଥାନେ ଜଳଭଣ୍ଡାର, ହ୍ରଦ, କୁହାଯାଏ ସମୁଦ୍ରପତନର ନିମ୍ନରେ ବହୁ ଅଂଚଳ ଥିବାରୁ ସମୁଦ୍ର ଜଳର ପ୍ଲାବନ ଅବରୁଦ୍ଧ କରାଯାଇ ଘରବାଡ଼ି ନିର୍ମାଣ କରାଯାଇଛି। ଶୀତପ୍ରଧାନ ଦେଶ, ଜୁଲାଇ, ଅଗଷ୍ଟ, ସେପ୍ଟେମ୍ବର ଗ୍ରୀଷ୍ମଋତୁ। ତଥାପି ଏଠାକାର ଉତ୍ତାପ ୧୪ / ୧୫ ସେଲ୍‌ସିୟସ୍ ତଥାକଥିତ ଗ୍ରୀଷ୍ମଋତୁରେ। ଗ୍ରୀଷ୍ମ ପ୍ରଧାନ ଦେଶର ଲୋକେ, ଏହି ଋତୁରେ ଇୟୋରୋପ, ଆମେରିକା ଭ୍ରମଣ କରିବାକୁ ପସନ୍ଦ କରିଥାନ୍ତି, ପ୍ରକୃତି ସହ ମିଶି ରହି ଆଧୁନିକତାକୁ ଆଦରି ନେବା ଡଚ୍‌ମାନଙ୍କର ବୈଶିଷ୍ଟ୍ୟ।

ଛୋଟ ସୁନ୍ଦର ସୁସଜ୍ଜିତ ଘରଟି ପୁଅ ବୋହୂଙ୍କ ପରି ସ୍ୱଚ୍ଛ ପରିଷ୍କାର ପରିଚ୍ଛନ୍ନ। ବାସଗୃହ ଗୁଡ଼ିକ ଅଧିକାଂଶ କାଠରେ ତିଆରି ଦୁଇତାଲା, ଆମ ଦେଶ ଭଳି, ପଥର ଇଟାରେ ଛୋଟ ଦୁଇ ତିନି ତାଲାଘର ତିଆରି ହୁଏ ନାହିଁ, ବଡ଼ ବଡ଼ ଅଫିସ୍ ହୋଟେଲ୍ ଶିକ୍ଷାଗୃହ ଗୁଡ଼ିକରେ ଇଟା ଲୁହା ବ୍ୟବହୃତ ହୋଇଥାଏ ଆବଶ୍ୟକ ପରିମାଣରେ। ଛୋଟ ବାସଗୃହରେ ଝରକା ଗୁଡ଼ିକ କାଚରେ ଆଲୋକ ପବନର ଅନାବଶ୍ୟକ ପଥରୋଧ କରାଯାଇନଥାଏ।

ସେଦିନ ସଂଧ୍ୟାରେ ପୁଅ ବୋହୂଙ୍କ ଏକ ହିତୈଷୀ ଦଂପତି ଆମକୁ ଦେଖା କରିବାକୁ ଆସିଲେ। ସେମାନେ ସୁମାରିଆନ। ସେମାନଙ୍କର ପୂର୍ବପୁରୁଷ ଥିଲେ ଦକ୍ଷିଣ ଆମେରିକାର ସୋମାରିନ୍‌ରେ ସୋମାରିନ୍ ଡଚ୍‌ମାନଙ୍କର ଏକ ଉପନିବେଶ ଥିଲା ସ୍ୱଚ୍ଚ। ଜନବସତି ଥିବା ବିସ୍ତୃତ ଅଂଚଳ ଚାଷ ଓ ଅନ୍ୟାନ୍ୟ ଉନ୍ନୟନ କାମ – ରାସ୍ତାଘାଟ ନିର୍ମାଣ ପାଇଁ ଭାରତର ୟୁପି ବିହାରରୁ ହିନ୍ଦୁଭାଷୀ କେତେକ ଶ୍ରମିକଙ୍କୁ ନେଇଯାଇଥିଲେ ସୋମାରିନକୁ, ଉତ୍ତରଭାରତର ଏହି ଲୋକମାନେ ସେଠାରେ ସ୍ଥାୟୀ ବାସିନ୍ଦା ହୋଇଗଲେ, ସେମାନଙ୍କର ଜାତୀୟତା ଥିଲା, ଡଚ୍, ପାଠ ପଢ଼ିଲେ ଡଚଭାଷାରେ, ଘରେ କିନ୍ତୁ ହିନ୍ଦି ଭାଷାରେ କଥାବାର୍ତ୍ତା। ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ କ୍ରମେ କ୍ରମେ ଦକ୍ଷିଣ ଆମେରିକା, ଆଫ୍ରିକା ଓ ଏସିଆର ଦେଶଗୁଡ଼ିକ ସ୍ୱାଧୀନ ହେଲେ, ଏହି ପ୍ରକ୍ରିୟାରେ ସୋମାରିନ୍ ସ୍ୱାଧୀନ ହେଲା, ସୋମାରିନ୍ ଏକ ଛୋଟ ରାଜ୍ୟ, ଏହାର ଜନସଂଖ୍ୟା ମାତ୍ର ପାଞ୍ଚଲକ୍ଷ। ଆଗନ୍ତୁକ ସୋମାରିନ୍‌ରୁ ଆସି ହଲାଣ୍ଡରେ ଚାକିରି କରି ସ୍ଥାୟୀ ବାସିନ୍ଦା ହୋଇଛନ୍ତି। ୭, ୮ଟି ପୁଅ

ଝିଅ। ଅଲଗା ଅଲଗା ରହିଛନ୍ତି, ସ୍ତ୍ରୀ ତାଙ୍କର ସ୍କୁଲରେ ପିଲାଙ୍କ ଯତ୍ନ ନେବା କାର୍ଯ୍ୟ ଓ ସ୍ୱାମୀ କାରଖାନାରେ କାମ କରନ୍ତି। ହିନ୍ଦିରେ ମୋ ସହ କଥାବାର୍ତ୍ତା କଲେ। ସୁଦୂର ସୋମାରିନ୍ ଓ ନେଦରଲ୍ୟାଣ୍ଡରେ ଭାରତୀୟ ମାନେ ବସବାସ କରି ନିଜ ଭାଷାକୁ ଯେ ଭୁଲି ନାହାନ୍ତି ଏହା ମୋ ମନରେ ଗର୍ବ ଆନନ୍ଦ ଆଣିଦେଲା, ସେମାନେ ଘର ତିଆରି ବରା ଆଣି ଦେଇଥିଲେ, ଭାରତୀୟ ଅତିଥିପରାୟଣତା ଓ ଆତ୍ମୀୟତାର ସ୍ମାରକୀ ସ୍ୱରୂପ। ସେମାନଙ୍କ ଆନ୍ତରିକତାପୂର୍ଣ୍ଣ ସଂଳାପ ଓ ହାତ ତିଆରି ଖାଦ୍ୟରେ ହଲାଣ୍ଡ ରହଣିର ମଧୁର ଶୁଭାରମ୍ଭ ହୋଇଥିଲା।

## ଜାଣି ହୁଏନି ଏ ସହର କି ଗ୍ରାମ

ଟିଲ୍‌ବର୍ଗ ସହରରୁ ବ୍ରେଡ଼ା ଦେଢଘଣ୍ଟାର ବସ୍‌ଯାତ୍ରା। କେତେଗୁଡ଼ିଏ ଛୋଟ ସହର ଭିତର ଦେଇ ବସ୍ ଉଲିଛି ନାତି ଦ୍ରୁତ ଗତିରେ। ସବୁ ସହରର ରାସ୍ତାଗୁଡ଼ିକ ସୁନ୍ଦର ମସୃଣ, ବାସଗୃହ ଗୁଡ଼ିକ ରାସ୍ତାର ଦୁଇପାର୍ଶ୍ୱରେ ଧାଡ଼ି ହୋଇରହିଛି। ପ୍ରତ୍ୟେକ ଘର ସାମ୍ନେ ବିଭିନ୍ନ ପ୍ରକାର ଫୁଲ ଓ ରଂଗିନପତ୍ରର ଗଛ। କାଁ ଭାଁ ଅଫିସ୍, କଲେଜ ଓ ବଡ଼ ଏପାଟମେଣ୍ଟ। ବାସଗୃହ ଓ ବଜାର ଯୋଜନାବଦ୍ଧ ଭାବେ ଶୃଙ୍ଖଳାର ସହ ସ୍ଥାପିତ। ଗୋଟିଏ ସହରର ସୀମା ଅତିକ୍ରମ କରି ଅନ୍ୟ ଗୋଟିଏ ସହର ଭିତରେ ପ୍ରବେଶ କରିବା ଦୂରତା ବ୍ୟବଧାନ ଖୁବ୍ ବେଶି ନୁହେଁ, ଏହି ବ୍ୟବଧାନ ରାସ୍ତାର ଦୁଇପାର୍ଶ୍ୱରେ ବିସ୍ତୀର୍ଣ୍ଣ କ୍ଷେତ ଭୂମି। ନିଶ୍ଚିତ ରୂପେ ଏଠାକାର କ୍ଷେତ୍ର ବିରାଟ ଏବଂ ଯନ୍ତ୍ର ପରିଚାଳିତ, ରାସ୍ତାକୁ ଲାଗି ଫାର୍ମହାଉସ୍, ଫାର୍ମ ହାଉସ୍‌ରେ ଥିବା ଲୋକଙ୍କୁ ଯଦି ଗ୍ରାମବାସୀ କହିପାର ତେବେ କ୍ଷେତଟି ହି ଗ୍ରାମ। ମାତ୍ର ଆମ ଦେଶର ଗ୍ରାମ ଭଳି, ଲଗାଲଗି ଘର ଅସମାନ ବିଶୃଙ୍ଖଳିତ ନୁହେଁ, ଘରରୁ ଧନୀ ଦରିଦ୍ର ଭିତରେ ତାରତମ୍ୟ ଏଠାରେ ଜାଣି ହେବନି। ବାସ୍ତବିକ୍ ଏଠାରେ ଅର୍ଥନୈତିକ ତାରତମ୍ୟ ଲଜ୍ଜାଜନକ ନୁହେଁ, ପ୍ରତ୍ୟେକ ସହରରେ ଚର୍ଚ୍ଚ, ପାର୍କ ସୁନ୍ଦର ବିପଣୀ। ରବିବାର ଦିନ ଦୋକାନ ବଜାର, ଅଫିସ୍ ପ୍ରାୟତଃ ବନ୍ଦ। ମାତ୍ର ବ୍ରେଡ଼ା ସହରର ଏକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଅବସର ବିନୋଦନ ନିମିତ୍ତ ଆସିଥିବା ଭ୍ରମଣକାରୀଙ୍କ ପାଇଁ ଦୋକାନ ବଜାର ଖୋଲାଥାଏ।

ଆମେ ଗୋଟିଏ ସୁନ୍ଦର ପାର୍କ ଭିତର ଦେଇ ବଜାର ଭିତରକୁ ଗଲୁଁ ମଧ୍ୟାହ୍ନ ଭୋଜନ ପାଇଁ ସଂଗରେ ସ୍ତ୍ରୀ, ସମ୍ଭୁଦୁଣୀ, ବୋହୂ ଏବଂ ତାର ସାଂଗ ଏକ ଗବେଷିକା ପାକିସ୍ଥାନୀ ତରୁଣୀ ମଇନା। ଝିଅଟି ବେଶ୍ ମେଳାପୀ, ବୁଦ୍ଧିମତୀ ଏବଂ ମଧୁର ଭାଷିଣୀ। ହୋଟେଲ୍‌ରେ ସୁନ୍ଦର କେକ୍ ଖାଇ ଜୁସ୍ ପିଇଲୁଁ। କେକ୍‌ର ସ୍ୱାଦ ଅସାଧାରଣ, ବିଭିନ୍ନ

ଫଳମିଶ୍ରିତ କେକ୍। ମଧ୍ୟାହ୍ନ ଭୋଜନ ସାରି କିଛି ସମୟ ପାର୍କରେ ବିଶ୍ରାମ ନେଲୁ। ଶାନ୍ତ ସୁନ୍ଦର ପରିବେଶ ତରୁଣ ତରୁଣୀ, ବୃଦ୍ଧବୃଦ୍ଧା ପାର୍କର କୋମଳ ତୃଣଶଯ୍ୟାରେ ଶୟନ କରି ଗ୍ରୀଷ୍ମଋତୁର ଅଭାବନୀୟ ରୌଦ୍ରତାପ ଉପଭୋଗ କରୁଥାନ୍ତି। ପାର୍କ ମଝିରେ ହ୍ରଦଟିଏ, ହ୍ରଦ ଭିତରେ ଏକ କୃତ୍ରିମ ଜଳପ୍ରପାତ ସୃଷ୍ଟି ହୋଇଥାଏ, ଏକ ହସ୍ତ ନିର୍ମିତ ଉଚ୍ଚସ୍ତମ୍ଭର ଶୀର୍ଷରୁ ଆସୁଥାଏ ଜଳପ୍ରବାହ। ଦୃଶ୍ୟ ଓ ଶବ୍ଦ ଥିଲା ଆକର୍ଷଣୀୟ, ପାର୍କକୁ ଆସିବା ପୂର୍ବରୁ ଗୋଟିଏ ବିରାଟ ଚର୍ଚ୍ଚ ଦର୍ଶନ କରିଥିଲୁଁ। କ୍ରେଡ଼ା ସହରର ଏହା ଏକ ଆକର୍ଷଣୀୟ ସ୍ଥଳ। ଏହି ଚର୍ଚ୍ଚର ନାମ ହେଉଛି BIGORDUR LADYS CHURCH OF BREDA, ଏହାର ଇତିହାସ ଅତି ପ୍ରାଚୀନ, ଏଲିଜାବେଥ୍ ଭାନ୍ ବ୍ରେଡ଼ାଙ୍କ ଋର୍ଟର ୧୧୬୯ ମସିହାରେ ଏହା ଏକ ପଥର ନିର୍ମିତ ଚର୍ଚ୍ଚ ରୂପେ ଉଲ୍ଲେଖ କରାଯାଇଥିଲା। ୧୯୬୩ରେ ବ୍ରେଡାରଲର୍ଡ଼ ଏହାକୁ ସାମୁହିକ ଚର୍ଚ୍ଚ ରୂପେ ଘୋଷଣା କରିଥିଲେ। ୧୪୫୯-୧୪୬୮ ଭିତରେ ଚର୍ଚ୍ଚର ନୂଆ ଘର ନିର୍ମିତ ହୋଇଥିଲା। ୧୫୮୧ ଜାନୁୟାରୀରେ ଚର୍ଚ୍ଚଟି ପ୍ରୋଟେଷ୍ଟାଣ୍ଟମାନଙ୍କ ଅଧିକାରକୁ ଯାଇଥିଲା। ଜୁନ୍ ମାସରେ ଏହା ପୁଣି ରୋମାନ କେଥୋଲିକ୍‌ଙ୍କ ହସ୍ତଗତ ହେଲା। ୧୬୩୭ରେ ପ୍ରୋଟେଷ୍ଟାଟଙ୍କ ଅଧୀନକୁ ଆସି ଏହା ଏ ପର୍ଯ୍ୟନ୍ତ ପ୍ରୋଟେଷ୍ଟାଣ୍ଟ ଚର୍ଚ୍ଚ ହୋଇରହିଛି, ୧୮୪୩-୫୩ରେ ଏହାର ସଂପ୍ରସାରଣ, ୧୯୦୬ରେ ଚର୍ଚ୍ଚ କାନ୍ଥରେ ଚିତ୍ରଣ ଏହାର ସୌନ୍ଦର୍ଯ୍ୟ ବୃଦ୍ଧି କରିଛି। ଚର୍ଚ୍ଚଟି ୧୯୭୮ ଠାରୁ Our Lady Church Foundation ପରିଚାଳନାରେ ଅଛି।

ନେଦରଲାଣ୍ଡର କେତୋଟି ବଡ଼ ସହର ମଧ୍ୟରେ ଟିଲ୍‌ବର୍ଗ ଅନ୍ୟତମ। ଏଠାରେ ଅଛି ବିଶ୍ୱବିଦ୍ୟାଳୟ, କଲେଜ, ବଡ଼ ବଡ଼ ମଲ୍, ଅନେକଗୁଡ଼ିଏ, old age home ବିରାଟ ପାଠାଗାର, ପାଠାଗାରରେ ଟଙ୍କା ଜମା ରଖି ନିଜର ନାଗରିକ କାର୍ଡ଼ ଓ ପାଶ୍‌ପୋର୍ଟ ଦେଖାଇ ଘରକୁ ପଢ଼ିବା ପାଇଁ ବହି ଆଣିହେବ, ଥରକେ ୧୦ଟି ପର୍ଯ୍ୟନ୍ତ ବହି ଆଣି ହେବ। ପାଠାଗାରର ବହି ସାଜସଜ୍ଜା, ବେଶ୍ ଶୃଙ୍ଖଳିତ ଏବଂ ମନୋରମ। ବିଭିନ୍ନ କିସମର ବହି ଥାକରେ ଅଛି, ପାଠକ ନିଜେ ବୁଲି ବୁଲି ପସନ୍ଦ ମୁତାବକ ବହି ଆଣି ପାଠାଗାର ଭିତରେ ଥିବା ଚେୟାର୍‌ରେ ବସି ପଢ଼ି ପାରନ୍ତି। ମୁଁ କେତୋଟି ବହି ଆଣି ପଢ଼ିଥିଲି, ଅଧିକାଂଶ ବହି ଡଚ ଭାଷାରେ ଲେଖା, ଇଂରାଜୀ ବହି ମଧ୍ୟ ଅଛି, ଟିଲ୍‌ବର୍ଗର ପ୍ରଧାନ ପାଠାଗାର Central Library ସୁସଜ୍ଜିତ, ଆକର୍ଷଣୀୟ। ପାଠାଗାରର ଗ୍ରନ୍ଥାଗାରିକ ବେଶ୍ ସାହାଯ୍ୟକାରୀ, କର୍ତ୍ତବ୍ୟପରାୟଣ।

ଟିଲ୍‌ବର୍ଗର ପ୍ରଧାନ ବ୍ୟବସାୟ କେନ୍ଦ୍ରରେ ସୁଦୃଶ୍ୟ ପ୍ରାସାଦମାଳା, ବିଭିନ୍ନ ପ୍ରକାର ଦ୍ରବ୍ୟ ଭରା ମଲ୍ ରେଷ୍ଟୁରାଣ୍ଟରେ ନାନାପ୍ରକାର ଖାଦ୍ୟ ଦେଖିଲେ ମୁଗ୍ଧ ହୋଇ ଯିବ। ରେଷ୍ଟୁରାଣ୍ଟ ସାମୁନେ ଖୋଲା ଜାଗାରେ ଅନେକ ଚେୟାର୍ ପଡ଼ିଥାଏ। ଭିତରୁ ଖାଦ୍ୟ

ଯାନାୟ ଆଣି ବାହାରର ସୂର୍ଯ୍ୟକିରଣରେ ବସି ଉପଭୋଗ କରିପାର। ଏପରି ସୁନ୍ଦର ଦୂରମ୍ୟ ବ୍ୟବସ୍ଥା କେବଳ ଧନୀ ଦେଶମାନଙ୍କରେ ସମ୍ଭବ। ରାସ୍ତାଘାଟ ପରିଷ୍କାର ପରିଚ୍ଛନ୍ନ। ବିଳାସବ୍ୟସନର ଚେଉ ସହରରେ ପ୍ରତିକୋଣରେ। ସହରର କେନ୍ଦ୍ରସ୍ଥଳରେ ଉଇଲିୟମ୍ ଦ୍ୱିତୀୟଙ୍କର ପ୍ରତିମୂର୍ତ୍ତି। ପ୍ରାୟ ୨୦୦ ବର୍ଷ ତଳେ ଉଇଲିୟମ୍ ଦ୍ୱିତୀୟ ଏହି ସହରଟି ସ୍ଥାପନ କରି ଏଠାରେ ବାସ କରିଥିଲେ।

Old age home (Bejaardenhis) ବା ବୃଦ୍ଧନିବାସ ଗୁଡ଼ିକ ୧୨/୧୩ ତାଲା ବିଶିଷ୍ଟ। ସରକାର ବା କଂପାନୀଙ୍କ ଦ୍ୱାରା ନିର୍ମିତ ଏହି ପ୍ରାସାଦରେ ବୃଦ୍ଧମାନେ ଶେଷ ଜୀବନ କଟାନ୍ତି। ସେମାନଙ୍କର ସେବାଶୁଶ୍ରୁଷା, ଖାଇବା ପିଇବା ଓ ଚିତ୍ତବିନୋଦନର ସମସ୍ତ ସୁବିଧା ଏଠାରେ ଅଛି। ସେମାନଙ୍କ ପ୍ରାପ୍ୟ ପେନ୍‌ସନରୁ ସମସ୍ତ ଖର୍ଚ୍ଚ ବ୍ୟବସ୍ଥା କରାଯାଏ। ବୃଦ୍ଧମାନେ ବହୁ ସଂଖ୍ୟାରେ ଏକ ସ୍ଥାନରେ ରହିଥିବାରୁ ନିଜ ନିଜର ପସନ୍ଦ ଅନୁଯାୟୀ ସାଂଗ ସୁଖ ଲାଭ କରନ୍ତି, ଅନ୍ୟତ୍ର ରହୁଥିବା ପୁଅ ଝିଅ ନାତିନାତୁଣୀ ମଝିରେ ମଝିରେ ଆସି ଦେଖା କରିଯାଆନ୍ତି, ଭଲମନ୍ଦ ବୁଝିଥାନ୍ତି। ସରକାରଙ୍କ ବ୍ୟବସ୍ଥା ଏତେ ସୁନ୍ଦର ଓ ତ୍ରୁଟିଶୂନ୍ୟ ଯେ, ଅନେକ ଏହି ବୃଦ୍ଧାଶ୍ରମରେ ରହିବାକୁ ଚାହାନ୍ତି, ରୋଗ ଚିକିତ୍ସାର ନିଖୁଣ ବ୍ୟବସ୍ଥା ଓ ଯତ୍ନ ନେବାର ବିଧି ଏହାକୁ ଏକ ଉପାଦେୟ ସାମାଜିକ ଅନୁଷ୍ଠାନରେ ପରିଣତ କରିଛି। ବୃଦ୍ଧାଶ୍ରମର ଦୀର୍ଘ ପ୍ରସ୍ଥ ଉଚ୍ଚତା ଆକର୍ଷଣୀୟ ରୂପ ଓ ସାମ୍ନାରେ ରହିଥିବା ଅସଂଖ୍ୟ ଗାଡ଼ି ମୋ ମନରେ ଭ୍ରମ ସୃଷ୍ଟି କରିଥିଲା। ଏହା ଅସହାୟଙ୍କ ପ୍ରତି ଅନୁକଂପାର ଅନୁଷ୍ଠାନ ନୁହେଁ, ବରିଷ୍ଠ ନାଗରିକଙ୍କ ସେବା ଯତ୍ନ ଅଧିକାରର ସମ୍ମାନଜନକ ସରକାରୀ ସଂସ୍ଥା। ସାମାଜିକ ନିରାପତ୍ତାର ଏକ ଆଦର୍ଶ ସ୍ତମ୍ଭ।

## ହଲାଣ୍ଡ (ନେଦରଲାଣ୍ଡ)ର ପରିଚୟ: ପ୍ରାଚୀନରୁ ବର୍ତ୍ତମାନ

ପଶ୍ଚିମ ଇୟୁରୋପର ଉତ୍ତର ସାଗର ବେଲଜିୟମ୍ ଓ ଜର୍ମାନୀକୁ ଲାଗି ନେଦରଲାଣ୍ଡ। ଏହାର ସଂକ୍ଷିପ୍ତ କୋମଳ ନାମ ହଲାଣ୍ଡ। ବଣଜଙ୍ଗଲ ଘେରା ଭୂଖଣ୍ଡର ଡଚ ନାମ Holt Land or Wood Land। ୧୨ଟି ଜିଲ୍ଲାରେ ବିଭକ୍ତ ଏହି ରାଜ୍ୟର ସରକାରୀ ଭାଷା ଡଚ୍ ରାଜଧାନୀ ଆମଷ୍ଟାରଡାମ୍, ସରକାରୀ କାର୍ଯ୍ୟାଳୟ ହେଗ୍‌ରେ।

ଏହି ଭୂଖଣ୍ଡଟିରେ ପ୍ରଥମେ Celfs and Frisians ମାନେ ବାସ କରୁଥିଲେ। ଖ୍ରୀଷ୍ଟ ଜନ୍ମର ୧୦୦ ବର୍ଷ ପୂର୍ବରୁ ଖ୍ରୀଷ୍ଟ ଜନ୍ମର ଚତୁର୍ଥ ଶତାବ୍ଦୀ ପର୍ଯ୍ୟନ୍ତ ଏହା ରୋମ ସାମ୍ରାଜ୍ୟ ଅଧୀନରେ ଥିଲା। ପରବର୍ତ୍ତୀ କାଳରେ ଜର୍ମାନୀର ଆଦିବାସୀ ଫ୍ରାଙ୍କ୍‌ଙ୍କ କର୍ତ୍ତୃତ୍ୱରେ

ଅଷ୍ଟମ ଶତାବ୍ଦୀ ପର୍ଯ୍ୟନ୍ତ ରହିଥିଲା । ମଧ୍ୟ ଯୁଗରେ ଦେଶଟି ବିଖଣ୍ଡିତ ଥିଲା, ଷୋଡ଼ଶ ଶତାବ୍ଦୀରୁ ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ ଉତ୍ତର ହଲାଣ୍ଡର ଅଧିବାସୀ ମାନେ ସ୍ପେନୀୟମାନଙ୍କ ବିରୁଦ୍ଧରେ ଆନ୍ଦୋଳନ କରି ସେମାନଙ୍କ ପ୍ରୋଟେଷ୍ଟାଣ୍ଟ ବିଶ୍ୱାସକୁ ରକ୍ଷା କରିଥିଲେ ଏବଂ ସ୍ପେନିସ୍ ହାବସବର୍ଗକୁ ନିଜ ରାଜ୍ୟରେ ମିଶାଇ ଦେଇଥିଲେ । ୧୭୧୩ ରେ ଅଷ୍ଟ୍ରିୟାନ୍ ହାବସବ୍ରର୍ଗ ଏଥିରେ ଅନ୍ତର୍ଭୁକ୍ତ ହୋଇଥିଲା ଇଂଲାଣ୍ଡ ଓ ଫ୍ରାନ୍ସ ସହ ଯୁଦ୍ଧ ପୂର୍ବରୁ ନେଦରଲାଣ୍ଡ କଳା ଜ୍ଞାନ ଓ ତୈଳ ବାଣିଜ୍ୟରେ ଉଚ୍ଚ ସ୍ଥାନ ଲାଭ କରିଥିଲେ । East Indies, South Africa and Brazil ରେ ଏହାର ବାଣିଜ୍ୟିକ ସାମ୍ରାଜ୍ୟ ବିସ୍ତାର କରିଥିଲା । ୧୮୧୪ରେ ଉତ୍ତର ଦକ୍ଷିଣ ହଲାଣ୍ଡ ଏକତ୍ରିତ ହେଲା, ମାତ୍ର ୧୮୪୦ବେଳକୁ ଦକ୍ଷିଣ ପୂର୍ବ ଭାଗ ଯଥାକ୍ରମେ ସ୍ୱାଧୀନ ବେଲଜିୟମ୍ ଓ ଲକଜରମ୍ବର୍ଗ ରାଜ୍ୟରେ ପରିଣତ ହୋଇଥିଲା ।

ନେଦରଲ୍ୟାଣ୍ଡର ଇତିହାସ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ବେଲଜିଅମ୍ ଓ ଲକଜରମ୍ବର୍ଗ ସହିତ ଜଡ଼ିତ ଥିଲା । ଏ ତିନିଟାକୁ ଲୋକଣ୍ଟ୍ରିସ ବୋଲି କୁହାଯାଉଥିଲା । ନେଦରଲାଣ୍ଡର ସ୍ୱର୍ଣ୍ଣ ଯୁଗ ଥିଲା ୧୫୮୦ ରୁ ୧୭୪୦ ପର୍ଯ୍ୟନ୍ତ । ଡଚ୍ ଇଷ୍ଟ ଇଣ୍ଡିଆ କଂପାନୀ ଉପାର୍ଜିତ ଧନ ଏହାକୁ ଏକ ବିତ୍ତଶାଳୀ ଦେଶରେ ପରିଣତ କରିଥିଲା, ଏହା Cape of Good House ଓ ଇଣ୍ଡୋନେସିଆରେ ଉପନିବେଶ ସ୍ଥାପନ କରିଥିଲା, ଏବଂ ସମଗ୍ର ଏସିଆ ମହାଦେଶରେ ବାଣିଜ୍ୟ କେନ୍ଦ୍ର ସ୍ଥାପନ କରିଥିଲା ।

୧୭୮୫ରେ ଫରାସୀମାନେ ଏହାକୁ ଆକ୍ରମଣ କଲେ ଏବଂ ଏମାନଙ୍କ ଅଧୀନରେ ନେଦରଲାଣ୍ଡ ରହିଲା, ୧୮୧୫ ପର୍ଯ୍ୟନ୍ତ । ୧୮୧୫ ପରେ ବେଲଜିଅମ୍ ନେଦରଲାଣ୍ଡ ଓ ଲକ୍‌ଜରମ୍ବର୍ଗ ଇଂଲାଣ୍ଡର ଅଧୀନସ୍ଥ ହେଲା । ଏହା ପୂର୍ବରୁ ନେପୋଲିୟନ୍ ବେଶ୍ୟାବୃତ୍ତିକୁ ଆଇନାନୁମୋଦିତ କରିଥିଲେ । ୧୮୩୦ରେ ବେଲଜିଆନ୍‌ମାନେ ବିଦ୍ରୋହ କରି ସ୍ୱାଧୀନ ହେଲେ ଓ ତାର ୯ ବର୍ଷ ପରେ ଯେ ଲକଜରମ୍ବର୍ଗ ସ୍ୱାଧୀନ ହେଲା । ନେଦରଲାଣ୍ଡ ପ୍ରଥମ ବିଶ୍ୱଯୁଦ୍ଧରେ ନିରପେକ୍ଷ ରହିଥିଲା । ଦ୍ୱିତୀୟ ମହାଯୁଦ୍ଧ ବେଳେ ତାର ଏହି ପ୍ରୟାସ ପଣ୍ଡ ହୋଇଥିଲା ଏବଂ ଏହା ଜର୍ମାନଙ୍କ ଆକ୍ରମଣରେ ହୋଇ ଧ୍ୱସ୍ତବିଧ୍ୱସ୍ତ ହେଲା ।

୧୯୫୩ରେ ଉଚ୍ଚ ସାମୁଦ୍ରିକ ଢେଉରେ ଡାଇକ୍‌ରେ ଫାଟ୍ ସୃଷ୍ଟି ହେବାରୁ ୧୮୩୫ ଲୋକମୃତ୍ୟ ମୃତ୍ୟୁବରଣ କରିଥିଲେ । ଏପରି ଦୁର୍ବିପାକ ପ୍ରତିହତ କରିବାକୁ ଗୋଟିଏ ବିରାଟ ଇଞ୍ଜିନିୟରିଂ ଯୋଜନା କାର୍ଯ୍ୟକାରୀ କରାଯାଇଛି ।

୧୯୬୦ ଦଶକରେ ଆମଷ୍ଟାରଡ଼ାମ୍ ଇୟୁରୋପର ଉଗ୍ରବାଦୀଙ୍କ ହୃତ୍‌ପିଣ୍ଡ ହୋଇଥିଲା । ଏଠାରେ ଜନ୍ମ ନେଇଥିଲା, ସ୍କାଟରସ୍ (ଜବରଦସ୍ତ ଜମି ଓ ଗୃହ ଦଖଲ) ଆନ୍ଦୋଳନ ଓ ଯୌନତାର ମୁକ୍ତ ପ୍ରବାହ । ୧୯୭୬ରେ cannabis ଡ୍ରଗ୍ ସେବନକୁ ନିରପରାଧ ଘୋଷଣା କରାଗଲା, ୨୦୦୩ରେ ସାରା ବିଶ୍ୱରେ ନେଦରଲାଣ୍ଡ ପ୍ରଥମ

ଦେଶ ହେଲା। ଯିଏ ଭେଷଜ ଭିତ୍ତିକ କାନବିସକୁ ଆଇନ୍‌ସିଦ୍ଧ କଲା, ୧୯୯୨ରେ ମାଷ୍ଟ୍ରିଚରେ ଇୟୁରୋପର ରାଷ୍ଟ୍ରଗୁଡ଼ିକ ସମବେତ ହୋଇ ଇୟୁରୋପିଆନ୍ ୟୁନିୟନ୍ ଗଢ଼ିଲେ, (EU) ୨୦୦୦ ମସିହାରେ ନେଦରଲାଣ୍ଡ, Euthenasia ସ୍ୱେଚ୍ଛାମୃତ୍ୟୁକୁ ଆଇନନୁମୋଦିତ କଲା, ଏହି ବର୍ଷ ସମଲିଙ୍ଗୀ ବିବାହକୁ ମଧ୍ୟ ବୈଧାନିକ କରାଗଲା।

ନେଦରଲାଣ୍ଡରେ ୧୬.୪ ନିୟୁତ ଲୋକ ୪୧, ୫୨୬ ଜାଗାରେ ବାସ କରନ୍ତି। ସେମାନଙ୍କ ମଧ୍ୟରୁ ୯୦ ଶତାଂଶ ଡଚ, ୬ ପ୍ରତିଶତ ପୂର୍ବ ଉପନିବେଶ, ଇଣ୍ଡୋନେସିଆ, ସୁରିନାମ ଓ ନେଦରଲାଣ୍ଡ ଆଣ୍ଟିଲିସ୍‌ର ଲୋକ। ପ୍ରାୟ ୪ ଲକ୍ଷ ଉତ୍ତର ଫ୍ରିସ୍‌ଲାନଡ୍ ଲୋକ ନିଜର ଭାଷା କହନ୍ତି।

## ନେଦରଲ୍ୟାଣ୍ଡର ଧର୍ମ, ଶାସନ ଓ ଅର୍ଥନୀତି

ଇୟୁରୋପର ଅନ୍ୟାନ୍ୟ ରାଜ୍ୟ ଭଳି, ନେଦରଲ୍ୟାଣ୍ଡର ଧାରାବାହିକ ସୁଲିଖିତ ଇତିହାସ ଷୋଡ଼ଶ ଶତାବ୍ଦୀର ମଧ୍ୟ ଭାଗରୁ ହିଁ ମିଳିଥାଏ। ଜଣାଯାଏ ୧୬ଶ ଶତାବ୍ଦୀର ମଧ୍ୟଭାଗରେ ସ୍ପେନର ରାଜା ନେଦରଲ୍ୟାଣ୍ଡ ଅଧିକାର କରିଥିଲେ। ଏହା ପୂର୍ବରୁ ନେଦରଲ୍ୟାଣ୍ଡରେ କେତୋଟି ଜିଲ୍ଲା (countship & duchies) ଥିଲା। ସ୍ପେନର ରାଜା ନେଦରଲାଣ୍ଡ ଉପରେ କର୍ତ୍ତୃତ୍ୱ ବଜାୟ ରଖିଥିଲେ ହେଁ ଆଞ୍ଚଳିକ ଶାସନକର୍ତ୍ତାଙ୍କୁ ସ୍ୱାୟତ୍ତଶାସନର ସୁଯୋଗ ଦେଇଥିଲେ। ପରବର୍ତ୍ତୀ କାଳରେ ସମ୍ରାଟ ଫିଲିପି -୨, କେନ୍ଦ୍ରାୟତ ଶାସନ ପ୍ରବର୍ତ୍ତନ କରିବାକୁ ଉଦ୍ୟମ କରି ବ୍ୟର୍ଥ ହୋଇଥିଲେ। ଫିଲିପ୍ -୨ଙ୍କ ବିରୋଧରେ ନେତୃତ୍ୱ ନେଇଥିଲେ Willam of Orange, ଏହାଙ୍କ ନେତୃତ୍ୱରେ ଗଢ଼ାଯାଇଥିଲା Republic of Seven Netherlands- John Calvin ଙ୍କ ଦର୍ଶନ ନେଦରଲ୍ୟାଣ୍ଡବାସୀଙ୍କୁ ପ୍ରଭାବିତ କରିଥିଲା।

ନେଦରଲ୍ୟାଣ୍ଡ ସଂପ୍ରତି ଏକ ରାଜ୍ୟ ସଂଘ (Union of States) ନୁହେଁ। ଏହା ଗୋଟିଏ ଗଣତାନ୍ତ୍ରିକ ରାଷ୍ଟ୍ର, ଯାହାର ଏକତାର ସ୍ମାରକୀ ହେଉଛନ୍ତି ରାଣୀ, ଉଇଲିୟମ୍ ଅଫ୍ ଅରେଞ୍ଜସଙ୍କ ବଂଶଧର। କାଲ୍‌ଭିନ୍‌ଙ୍କ ଦଶର୍ନରେ ପରିଚାଳିତ ଏହି ଦେଶ ଅତ୍ୟନ୍ତ ଧର୍ମନିରପେକ୍ଷ, ଡଚବାସୀଙ୍କ ଦୃଷ୍ଟିରେ ବାହ୍ୟ ଆଡ଼ମ୍ବର ଓ ଅହଂକାର - ଗର୍ବ, ପାପ ଏବଂ ଶୃଙ୍ଖଳା ଓ ସ୍ୱଚ୍ଛତା ହେଉଛି ଦେବୋପମଭାବ (Ostentationness and boast fulness are akin to sinfulness and orderliness and earliness are akin to godliness) ଧନିକପଣିଆର ପ୍ରଦର୍ଶନ ଅନ୍ୟ ପ୍ରତି ଅସମ୍ମାନ। ଏଠାରେ ଅନ୍ଧକାର ଆସିଗଲେ ଘରର ପରଦା ଉନ୍ମୋଚିତ କରିଦିଆଯାଏ। ଏହାର ତାତ୍ପର୍ଯ୍ୟ ହେଉଛି ଆମର କିଛି ଲୁଚାଇବାର ନାହିଁ। ଗୋପନ ଭାବକୁ ଲୋକେ ସଂଦେହ ଚକ୍ଷୁରେ ଦେଖନ୍ତି।

ନେଦରଲାଣ୍ଡର ଶାସନ polder medel ରେ ଚାଲେ, ରାଣୀ ବିଏଟ୍ରିକ୍ସ (Queen Beatrix) ଓ ପ୍ରଧାନମନ୍ତ୍ରୀ Jan Peter Balkenende ରାଷ୍ଟ୍ରର ମୁଖ୍ୟ। ଶାସନ ବ୍ୟବସ୍ଥାରେ ଦୁଇଟି ଚେମ୍ବର ଅଛି, ଅପର ଚେମ୍ବରରେ ୭୫ ସଦସ୍ୟ, ଏମାନେ ପ୍ରାଦେଶିକ କାଉନ୍‌ସିଲ୍ ଦ୍ୱାରା ନିର୍ବାଚିତ। ଲୋୟର ଚେମ୍ବରରେ ୧୫୦ ସଦସ୍ୟ, ଏମାନେ ଲୋକଙ୍କ ଦ୍ୱାରା ନିର୍ବାଚିତ। ତଳ ଚେମ୍ବରକୁ Tweete Kamer ଏବଂ ଉପର ଚେମ୍ବରକୁ Eirst Kamer କୁହାଯାଏ, ସମଗ୍ରଦେଶର ଶାସନକୁ ତିନିଟି ସ୍ତରରେ ରଖାଯାଇଛି, କେନ୍ଦ୍ର, ପ୍ରାଦେଶିକ, ମ୍ୟୁନିସିପାଲ୍।

ଇୟୁରୋପର ପ୍ୟାରିସ୍, ଲଣ୍ଡନ, ମିଲାନକୁ ବାଦ ଦେଲେ ଆମେଷ୍ଟାରଡ଼ାମ୍ ରାଣ୍ଡସ୍ଥାଣ୍ଡ ସବୁଠୁ ବଡ଼ ସହରାଞ୍ଚଳ। ନେଦରଲାଣ୍ଡର ଅର୍ଥନୀତିରେ ସେବାକ୍ଷେତ୍ର ସବୁଠୁଁ ପ୍ରଧାନ, ଏହା ସମଗ୍ରଜାତୀୟ ଆୟର ୭୫ ପ୍ରତିଶତର ଅଧିକାରୀ। କୃଷି ଜାତୀୟ ଉତ୍ପାଦର ୧୦ ପ୍ରତିଶତ, ଏହା ବ୍ୟତୀତ ଖଣିଜ ସଂପଦ, ନେଚୁରାଲ୍ ଗ୍ୟାସ୍, ବ୍ୟବସାୟ, ମରାମତି, ସ୍ୱାସ୍ଥ୍ୟ ସେବା ଅର୍ଥନୀତିର ଗୁରୁତ୍ୱପୂର୍ଣ୍ଣ ଅଂଶ, ରାସାୟନିକ ଦ୍ରବ୍ୟ, ଉଚ୍ଚ ବୈଜ୍ଞାନିକ ପଦାର୍ଥ ଇଞ୍ଜିନିୟରିଂ ଦ୍ରବ୍ୟ ବହୁ ପରିମାଣରେ ରପ୍ତାନି କରାଯାଏ। ୟୁରୋପରେ ଏହାର ସ୍ଥାନ ଉଚ୍ଚରେ ଓ ଏହାର ବାର୍ଷିକ ଅଭିବୃଦ୍ଧି ହାର ୩.୫ ପ୍ରତିଶତ। ଶ୍ରମଶକ୍ତିର ପ୍ରାୟ ୪ ପ୍ରତିଶତ ବେକାର। ମାତ୍ର ସମସ୍ତଙ୍କୁ ରାଷ୍ଟ୍ର ବେକାରୀ ଭତ୍ତା ଦେଇଥାଏ। ନେଦରଲାଣ୍ଡର ବାଣିଜ୍ୟ ସଂପର୍କର କ୍ରମବୃଦ୍ଧି ଉତ୍ସାହଜନକ। ୯୦ ଦଶକରେ ବ୍ରାଜିଲ-ରୁଷିଆ, ଭାରତ ଚୀନ ଓ କୋରିଆରୁ ଆମଦାନୀ  କରାଯାଏ। ନେଦରଲ୍ୟାଣ୍ଡର ମୋଟ ଆମଦାନୀର ମାତ୍ର ୩.୭ ପ୍ରତିଶତ ଥିଲା ଏବେ ଏହା ୧୩.୮ ପ୍ରତିଶତ। ୧୯୬୦ରେ ନେଚୁରାଲ ଗ୍ୟାସ୍ ଆବିଷ୍କାର ହେବା ଫଳରେ ଏହା ଏକ ସମୃଦ୍ଧ ଜନମଂଗଳ ରାଷ୍ଟ୍ର ହୋଇପାରିଛି।

ଇୟୁରୋପର ଅର୍ଥନୈତିକ ଇତିହାସ Europe in the 18th Century 1713-1785 M.S. Anderson) ରୁ ଜଣାଯାଏ ସମଗ୍ର ଇୟୁରୋପରେ ସପ୍ତଦଶ ଶତାବ୍ଦୀରେ ନେଦରଲ୍ୟାଣ୍ଡ କୃଷିରେ ଅଗ୍ରଣୀ ଥିଲା, ଅର୍ଥକାରୀ ଚାଷ କରି ପ୍ରଚୁର ଅର୍ଥ ଉପାର୍ଜନ କରୁଥିଲା। Flax, mudder, wood hips tobacco ପ୍ରଚୁର ପରିମାଣରେ ଚାଷ କରାଯାଉଥିଲା ବ୍ୟବସାୟିକ ଭିତ୍ତିରେ, ଅଷ୍ଟାଦଶ ଶତାବ୍ଦୀରେ ଦୁଗ୍ଧ ଓ ଛେନା ଜାତୀୟ ଦ୍ରବ୍ୟର ରପ୍ତାନି ହେଉଥିଲା ଅନ୍ୟ ଦେଶକୁ। ୧୯୦୨ରେ ଏହି ଦେଶର ଆଳୁ ଉତ୍ପାଦନଶୀଳତା ଇଂଲାଣ୍ଡ ଠାରୁ ୩୦ ଶତାଂଶ  ଅଧିକ ଥିଲା। କୃଷି ପ୍ରଣାଳୀରେ ନେଦରଲ୍ୟାଣ୍ଡ, ଫ୍ରାନ୍ସ, ଜର୍ମାନୀ ଓ ଇଟାଲୀ, ସ୍କାଣ୍ଡିନୋଭିଆନ୍ ଦେଶଠାରୁ ଆଗରେ ଥିଲା। ନେଦରଲାଣ୍ଡରୁ ଫ୍ରାନ୍ସ, ସୁଇଡ଼େନ ରୁଷିଆକୁ ପୁଞ୍ଜିଚାଳଣ ହେଉଥିଲା, ୧୭୯୦ରେ ୮୦୦ ନିୟୁତ ଗିଲ୍‌ଡ଼ର (ଡଚମୁଦ୍ରା) ବିଦେଶୀ ସରକାରଙ୍କୁ ଋଣ ଦିଆଯାଇଥିଲା।

ଆନ୍ତର୍ଜାତୀୟ ବିତ୍ତବଜାରରେ ମୁଖ୍ୟଭୂମିକା ନେଇଥିଲା ନେଦରଲାଣ୍ଡ ଫରାସୀ ବିପ୍ଳବ ପର୍ଯ୍ୟନ୍ତ। ଐତିହାସିକଙ୍କ ଭାଷାରେ ଆମଷ୍ଟାଇଡ଼ାମ୍‌ର ଦଶ ବାରଜଣ ଡଚମହାଜନ ଋଣ ସୃଷ୍ଟି କରିବାକୁ ସିଦ୍ଧାନ୍ତ ନେଲେ ଓ ତା'ର ପ୍ରଭାବ ସମଗ୍ର ଇୟୁରୋପରେ ଅନୁଭୂତ ହେଉଥିଲା।

ସଂକ୍ଷେପରେ କହିବାକୁ ଗଲେ, ସପ୍ତଦଶ ଶତାବ୍ଦୀଠାରୁ ଏ ପର୍ଯ୍ୟନ୍ତ ନେଦରଲ୍ୟାଣ୍ଡ ଅର୍ଥନୀତି ଓ ଶାସନ କ୍ଷେତ୍ରରେ ଏକ ଶାନ୍ତି ସୋହାର୍ଦ୍ଦପୂର୍ଣ୍ଣ ପ୍ରଗତିଶୀଳ ରାଷ୍ଟ୍ର ରୂପେ ପରିଚିତ ହୋଇ ଆସିଛି।

ସମୁଦ୍ରର ଢେଉକୁ ପ୍ରତିହତ କରିବା ପାଇଁ ୪୮୦୦୦ ହେକ୍ଟର ଡାଇକ୍ ନିର୍ମାଣ କରିଥିବା ଡଚବାସୀଙ୍କ ମନୋବଳ ଐକ୍ୟବଦ୍ଧ ଭାବେ ସ୍ୱଚ୍ଛନ୍ଦ ଜୀବନ ଯାପନ କରିବାର ସଂକଳ୍ପ ଯେ ଅନନ୍ୟ ଅସାଧାରଣ ତାହା ଯେ କୌଣସି ଚିନ୍ତାଶୀଳ ବ୍ୟକ୍ତି ସ୍ୱୀକାର କରିବ। ଡଚବାସୀଙ୍କ ଜୀବନ ଦର୍ଶନ ଓ ଋରିତ୍ରିକ ଲକ୍ଷଣର ସୂଚନା ଦିଏ ଅପରାଧବୋଧ, ମୁକ୍ତିର ଅନ୍ୱେଷା, ବିଶ୍ୱାସଭାଜନତା, ସାମର୍ଥ୍ୟ, ସହମତ, ସତ୍ୟ, ଆଧୁନିକତା, ପ୍ରତିବେଶୀ ପ୍ରେମ, ଆତ୍ମପ୍ରତ୍ୟୟ, ଶୃଙ୍ଖଳା, ଦୃଢ଼ତା, ପରିଷ୍କାର ପରିଚ୍ଛନ୍ନତା, ସ୍ଫୁର୍ତ୍ତି, ଗଣତାନ୍ତ୍ରିକ ଅବବୋଧ ଏବଂ ଧର୍ମୀୟ ଉଦାରତା।

## ପରିବ୍ରାଜକ ଦୃଷ୍ଟିରେ ଡଚ

ଉଦାରତା, ବ୍ୟକ୍ତିସ୍ୱାଧୀନତା, ସମତା ଓ ରାଜନୈତିକ ବିଶ୍ୱାସ ଡଚମାନଙ୍କର ବୈଶିଷ୍ଟ୍ୟ। ଖୁବ୍ ଭଦ୍ର, ପରିବ୍ରାଜକଙ୍କ ପ୍ରତି ସଦୟ ସହାୟତାକାରୀ ବିଦେଶୀ ଚିନ୍ତାଧାରା, ଚଳଣି, ଭାଷା ଓ ଦ୍ରବ୍ୟ ପ୍ରତି ଶ୍ରଦ୍ଧା ଡଚମାନଙ୍କର ସ୍ୱଭାବ, ତେବେ ପରସ୍ପରମଧ୍ୟରେ ଈର୍ଷା, ଅସୂୟା ମନୋଭାବ ଯେ ନଥାଏ ଏପରି ନୁହେଁ। ମନରେ ତାଙ୍କର ବେଳେ ବେଳେ ଗୋଟିଏ ଭାବ ଜାତ ହୁଏ 'ତୁମେ ଯଦି ବସି ରହିଛ, ମୁଁ ମଧ ବସି ରହିବି'। ବଦାନ୍ୟତାରେ ପ୍ରସିଦ୍ଧ ବିଶ୍ୱ ମାନବିକତାରେ ଆଗ୍ରହୀ ଡଚ ପଡ଼ୋଶୀର ଧନସଂପଦ ଦେଖି ଈର୍ଷାନ୍ୱିତ ମଧ ହୋଇଥାଏ। ହଲାଣ୍ଡରେ ପ୍ରାୟ ୧୦ ଲକ୍ଷ ଲୋକ ପତଳା (Lanky) ଓ ଖୁବ୍ ଉଚ୍ଚ (୬ ଫୁଟ୍ ଦୁଇ ଇଞ୍ଚ) ଏମାନେ ଉଦ୍‌ଭାବନ ଓ ପରୀକ୍ଷା ନିରୀକ୍ଷା କରିବାକୁ ଭଲ ପାଆନ୍ତି, ଡାଇକପୋଲ କେନାଲ ନିର୍ମାଣ କରିବାରେ ସୁଦକ୍ଷ, ଆନ୍ତର୍ଜାତୀୟ ବାଣିଜ୍ୟରେ ଧୁରନ୍ଧର, ଦୁଗ୍ଧଜାତ ଓ କୁକୁଡ଼ାମାଂସ ରପ୍ତାନିରେ ବିଶ୍ୱରେ ପ୍ରଥମ।

## ହଲାଣ୍ଡ ଏକ ସାଂସ୍କୃତିକ GHETTO

ତେବେ ଡଚବାସୀ ମାନେ ବିତର୍କିତ ବିଷୟରେ ବାସ୍ତବବାଦୀ। ସେମାନେ ସ୍ୱେଚ୍ଛାମୃତ୍ୟୁ ସମଲିଙ୍ଗୀ ପ୍ରେମ, ଗର୍ଭନାଶ କ୍ଷେତ୍ରରେ ବାସ୍ତବବାଦୀ ଦୃଷ୍ଟିକୋଣ ଓ ବିଚାର ପ୍ରୟୋଗ କରିଥାନ୍ତି। ତେଣୁ ଆଇନ ଏ ସବୁକ୍ଷେତ୍ରରେ କୋହଳ ହେଲେ ମଧ୍ୟ ବାସ୍ତବତା ସହନୀୟ ହୋଇଥାଏ। ଅନ୍ୟ ଦେଶ ତୁଳନାରେ ଡ୍ରଗ୍ ଆସକ୍ତଙ୍କ ସଂଖ୍ୟା ବେଶୀ ନୁହେଁ। ଡଚମାନଙ୍କ ମନରେ କେନ୍ଦ୍ରବିନ୍ଦୁ ହେଉଛି 'Maar' ବା 'But' ସବୁଖାତରେ ସେମାନେ 'କିନ୍ତୁ'ଟିକୁ ଦେଖିଥାନ୍ତି, ଅର୍ଥାତ୍ ତାର ବିକଳ୍ପ ଭାବିଥାନ୍ତି, ଡଚମାନେ ବିଶ୍ୱାସ କରନ୍ତି ଯେ ନୈତିକତା କ୍ଷେତ୍ରରେ କେତୋଟି ନିର୍ଦ୍ଦେଶ ମାନିବାକୁ ପଡ଼ିବ, ଯେପରି ଫୋନ୍ କଲାବେଳେ ତମେ ପ୍ରଥମେ ନିଜର ପରିଚୟ ଦେବ। ମାତ୍ର ମନେରଖିବାକୁ ହେବ କୌଣସି ପ୍ରଥା ଯେପରି ଖର୍ଚ୍ଚାନ୍ତ ନ କରେ।

## ଡଚ ଘର

"Dutch People donot live in a house, they live in a show home" (Lowis Doom.)

ଜଣେ ଡଚ ଲୋକଙ୍କୁ ତାଙ୍କ ଘର ବିଷୟ ପଚାରିଲେ ସେ କହିବ ଏହା Gezelling ବେଶ୍ ମୁଲାଏମ୍ Cosy or Cramped। ଘରେ ରହୁଥିବା ଲୋକ, ଜୀବଜନ୍ତୁ ଓ ଗଛମାନେ ଘରର ଆତ୍ମା ଏବଂ ଏହାର ବାତାବରଣ ନାନା ପ୍ରକାର ପ୍ରିୟଦ୍ରବ୍ୟ ଦ୍ୱାରା ସୃଷ୍ଟି ହୋଇଥାଏ। ଏସବୁ ମିଶି Thuis ବା ଘର ହୋଇଥାଏ ବୋଲି ଡଚଙ୍କ ମତ।

ଘରଗୁଡ଼ିକ ସପ୍ତଦଶ ଶତାବ୍ଦୀର ସ୍ଥାପତ୍ୟ ଅନୁଯାୟୀ ନିର୍ମିତ, ଦୈର୍ଘ୍ୟ ପ୍ରସ୍ତଠାରୁ ଅଧିକ, ଝରକାଗୁଡ଼ିକ ବଡ଼ ବଡ଼, ତଳତାଲାରୁ ଉପର ତାଲାକୁ ଯିବା ସିଡ଼ି ଲମ୍ବା ମାତ୍ର ଅଣଓସାରିଆ, ପ୍ରତ୍ୟେକ ଘରର ଆଗ ଦ୍ୱାର ଓ ପଛଦ୍ୱାର ଥାଏ। ଘରଗୁଡ଼ିକ ହାଲୁକା ପଦାର୍ଥ, କାଠରେ ତିଆରି, ପାଖାପାଖି ଘରଗୁଡ଼ିକରେ ପଡ଼ୋଶୀ ଘରର ଶବ୍ଦ ଶୁଣାଯାଏ। ଡଚଘରର ଭିତରଟି ସୁସଜ୍ଜିତ, ଝରକାଗୁଡ଼ିକରେ ସ୍ୱଚ୍ଛକାଚ। ଟୟଲେଟର ବ୍ୟବସ୍ଥା ନିଖୁଣ, ଘର ସାମୁନେ ନାନାପ୍ରକାର ଫୁଲ ଗଛ, ରଂଗିନ ଫୁଲ ଆଗନ୍ତୁକଙ୍କୁ ସ୍ୱାଗତ କରେ। ଦୁଇ ତାଲାଘର ଗୁଡ଼ିକ କାଠରେ ତିଆରି, ଅଧିକ ତାଲାର ଘର ଇଟା ସିମେଣ୍ଟରେ। ପ୍ରତ୍ୟେକ ଘରେ ଡ୍ରଇଙ୍ଗ୍ ଓଡ଼ା'ନିଙ୍ଗ୍‌ଇ ହଲ୍ ଥାଏ, ଦୁଇଟି ସଂଲଗ୍ନ ରୋଷେଇ ଘରେ ଗ୍ୟାସ, ଓ୍ୟାଟ୍‌ର ହିଟର, କଫିକର୍ନର - ଜାର କେନ୍, କଣ୍ଡେନ୍ସ ମିଲ୍କ, କଫି କପ୍, ହିଟର ରଖାଯାଇଥାଏ

ଡଚ। ଲୋକେ ବିଲେଇ, କୁକୁର, ମାଛି, ମୂଷା, ସୁନ୍ଦର ପକ୍ଷୀ ଘରେ ରଖିବାକୁ ଭଲ ପାଆନ୍ତି।

ହଲାଣ୍ଡରେ ଦଶହଜାର ହାଉସ୍ ବୋଟ୍‌ସ ଅଛି, କେବଳ ଆମଷ୍ଟାରଡାମରେ ୨୨୦୦। ଦ୍ୱିତୀୟ ମହାଯୁଦ୍ଧ ବେଳେ ବାସଗୃହ ଅଭାବ ମେଣ୍ଟାଇବା ପାଇଁ ନଦୀ ଓ କେନାଲ ଜଳ ଉପରେ ଛୋଟ ଶସ୍ତା ଘରର ବ୍ୟବସ୍ଥା କରାଯାଇଥିଲା। ବନ୍ୟାକ୍ଳିଷ୍ଟ ଅଂଚଳରେ Floating Flates ନିର୍ମାଣ କରାହେଉଛି।

## ଗ୍ରାମାଞ୍ଚଳରେ ଜୀବନଯାତ୍ରା

ସହରରୁ ଗ୍ରାମାଞ୍ଚଳକୁ ଗଲେ ପୁରୁଣା ଢାଞ୍ଚାର ଘର ଦୃଷ୍ଟିରେ ପଡ଼େ, କେତେଗୁଡ଼ିଏ ଆଧୁନିକ ଢଂଗରେ ତିଆରି ଘର ମଧ୍ୟ ପ୍ରତିବେଶୀ ରୂପେ ଥିବାର ଦେଖାଯାଏ। ଏହି ଘରଗୁଡ଼ିକ ସାଧାରଣତଃ ଫ୍ଲାଟ୍ ଗୁଡ଼ିକ ଠାରୁ ପ୍ରଶସ୍ତ ଓ ଅଧିକ କୋଠରୀ ବିଶିଷ୍ଟ। ଶୟନକକ୍ଷ ବଡ଼, ରୋଷେଇ ଘରକୁ ଦରଜା ଥାଏ, ଟୟଲେଟ୍ ଛୋଟ ଏବଂ ଅପରିଷ୍କାର। ୧୯୪୦ ଦଶକରେ ଜର୍ମାନୀ ଅଧିକାର ବେଳେ ଶତ୍ରୁ ଗ୍ଲିଡ଼ର ଅବରୋହଣ ପ୍ରତିରୋଧ ସ୍ୱରୂପ ତିଆରି କେତେକ ମିଲିଟାରୀ ଆଶ୍ରୟସ୍ଥଳ ଅଛି ଯେଉଁଠି ଶାନ୍ତିରେ ସହରର କୋଳାହଳ ଠାରୁ ଦୂରେଇ ରହିହେବ। କିନ୍ତୁ ଏହାର ମୂଲ୍ୟ ୨.୮ ଲକ୍ଷ ଇରୋ।

## ଡଚ ଜାତିର ଆବେଗ ଓ ଚଳଣି

କଥାରେ ଅଛି 'ଯେ ଦେଶ ଯାଇ ସେ ଫଳ ଖାଇ', 'ନଈକେ ବାଙ୍କ୍ ଦେଶ କେ ଫାଙ୍କ୍।' ଅଳ୍ପଦିନ ପାଇଁ ଯାଇଥିବା ଆମ ଭଳି ପରିବ୍ରାଜକ ନିଶ୍ଚିତରେ ଅନ୍ୟ ଦେଶର ଖାଦ୍ୟପୋଷାକ ଓ ଚାଲିଚଳନରେ ସ୍ୱତନ୍ତତା ଦେଖି ବିସ୍ମିତ ହେବ। ପୋଷାକ ସିନା ବଦଳେଇବାର ଆବଶ୍ୟକତା ନଥାଏ, ତେବେ ପରଦେଶରେ ବଜାରରେ ମିଳୁଥିବା ଖାଦ୍ୟ ସହଜରେ ଉପଭୋଗ କରିହୁଏନା। ଭ୍ରମଣକାରୀର ଅସୁବିଧା ଏଇଠି। ଅବଶ୍ୟ ଆଜିକାଲି ଦେଶ ଦେଶ ଭିତରେ ସଂପର୍କ ନିବିଡ଼ ଓ ଲୋକ ଯାତାୟତ ଯଥେଷ୍ଟ ବୃଦ୍ଧି ପାଉଥିବାରୁ ବଜାରମାନଙ୍କରେ ବିଭିନ୍ନ ଦେଶର କଞ୍ଚା, ବା ପାକସିଦ୍ଧ ଦ୍ରବ୍ୟ ମିଳିଲାଣି। ଏହା ସତ୍ତ୍ୱେ ନିର୍ଦ୍ଦିଷ୍ଟ ଦୋକାନ ସହଜରେ ନ ପାଇ ଆମ ଭଳି ଅନେକ ଟୁରିଷ୍ଟ ଅସୁବିଧା ଭୋଗିଥାନ୍ତି। ପ୍ୟାରିସ ସହର ଭ୍ରମଣ ବେଳେ ମୁଁ ଏହି ଅସୁବିଧା ଭୋଗିଥିଲି। ସୁବିଧା ଅସୁବିଧା ଅଳ୍ପଦିନ ସହଜରେ ସହି ହୁଏ। କିନ୍ତୁ ବେଶୀଦିନ ରହିବାକୁ ହେଲେ ବିଦେଶ

ଯାଇଥିବା ଲୋକଟିକୁ ରୁଚି ବଦଳାଇବାକୁ ପଡ଼େ। ବିଶେଷ କରି କାର୍ଯ୍ୟକ୍ରମ ଓ ଭାବବିନିମୟ, ଅଧ୍ୟୟନ ଅଧ୍ୟାପନା ପାଇଁ ଆସିଥିଲେ ବିଦେଶୀ ଜାତିର ମନୋବୃତ୍ତି, ଆବେଗ ଓ ଜୀବନ ଦର୍ଶନ ସଂପର୍କରେ ଅବହିତ ହେବାକୁ ପଡ଼ିବ। ଅନ୍ୟ ସହିତ ଆନ୍ତରିକତା ବଢ଼ାଇବାକୁ ହେଲେ ତା'ର ମନସ୍ତତ୍ତ୍ୱ ଚଳିଚଳଣ ପ୍ରତି ଶ୍ରଦ୍ଧା ଜ୍ଞାପନ କରିବାକୁ ପଡ଼ିବ। ଗୋଟିଏ ଜାତିକୁ ଜାଣିବାକୁ ହେଲେ ତାର ଭାବପ୍ରବଣତା, ହୃଦୟର ଆବେଗ, ଐତିହ୍ୟ ଓ ସଂସ୍କୃତି ଜାଣିବା ଏକାନ୍ତ ଆବଶ୍ୟକ। ଏହି ଦୃଷ୍ଟିରୁ ଡଚଜାତିର ଭାବପ୍ରବଣତା ଉପରେ ସାମାନ୍ୟ ଆଲୋକପାତ କରୁଛି।

ଏଠାରେ ବୁକୋଓସ୍କ Bukowskyଙ୍କ ଉକ୍ତି ପ୍ରାସଙ୍ଗିକ। ସେ କହନ୍ତି 'Complaining is a positive characteristic that has made our small country great, all our advances in social economic and cultural matters are a direct result of our ability to complain loudly' ଉଚ୍ଚସ୍ୱରରେ ଅଭିଯୋଗ କରିବାର ସାମାର୍ଥ୍ୟ ହଲାଣ୍ଡ ଭଳି ଏକ ଛୋଟ ଦେଶକୁ ବଡ଼ କରିଛି, ସ୍ପଷ୍ଟବାଦିତା, ମତକୁ ଜୋରସୋର୍‌ରେ ପ୍ରକାଶ କଲେ ଅନ୍ୟମାନେ ଶୁଣିବାକୁ ବାଧ ହେବେ, ବିଚାରକୁ ନେବେ। ଡଚମାନେ ଗୋଟିଏ ଭଲ କଥା ପ୍ରତି ଖୁବ୍ ଆଗ୍ରହ ଦେଖାଇଥାନ୍ତି। ପରିବର୍ତ୍ତନ ଘଟାଇବା, ପରିବର୍ତ୍ତନର ସମ୍ମୁଖୀନ ହେବା ପ୍ରବୃତ୍ତି ଧନୀ ଓ ଶକ୍ତିଶାଳୀ ବ୍ୟକ୍ତିର ବାହାଦୁରି ପଣିଆ କମେଇବାରେ ସହାୟକ ହୋଇଛି। ଡଚମାନେ ସହଜରେ ଅନ୍ୟକଥାକୁ, ଏପରିକି ସରକାରଙ୍କ କଥାକୁ ବିନା ପ୍ରଶ୍ନରେ ମାନି ନିଅନ୍ତି ନାହିଁ, ମତବ୍ୟକ୍ତ କରିବାର ଅଧିକାର ଏମାନଙ୍କର ଅତିପ୍ରିୟ। ତର୍କ ବିତର୍କ ଏମାନଙ୍କ ଜନ୍ମଗତ ସ୍ୱଭାବ। ସ୍ୱାମୀ-ସ୍ତ୍ରୀ ମଧ୍ୟରେ, ବଂଧୁବାନ୍ଧବ ମଧ୍ୟରେ ତର୍କବିତର୍କ ଚାଲେ, ତଥାପି ସଂପର୍କ ଅକ୍ଷୁଣ୍ଣ ରହିଥାଏ। ଡଚ୍‌ଙ୍କ ମତରେ 'Agreeing is boring, Life is dull without arguing, why be alive if you can't discuss and disagree?" ତର୍କ ବିତର୍କ ଗୋଟିଏ ଶକ୍ତିବର୍ଦ୍ଧକ ଖେଳ, ଯୁକ୍ତିତର୍କ ବିଦ୍ୱେଷ ଆଣେ ନା। ଅଫିସ୍‌ରେ ସିଦ୍ଧାନ୍ତ ନେବା ସମୟସାପେକ୍ଷ ହୁଏ, କାରଣ ସମସ୍ତଙ୍କୁ ଆଲୋଚନାରେ ଭାଗନେବାକୁ ସୁଯୋଗ ଦିଆଯାଏ। ସେମାନଙ୍କ ଦୃଷ୍ଟିରେ ଯୁକ୍ତିତର୍କ ନ କରି କୌଣସି ସିଦ୍ଧାନ୍ତ ନେବାଠାରୁ ସିଦ୍ଧାନ୍ତ ନ ନେଇ ଯୁକ୍ତିତର୍କ କରିବା ଶ୍ରେୟସ୍କର।

ବିସ୍ତାରିତ ପରାମର୍ଶ, ଆଲୋଚନା, ସହମତ ସନ୍ଧି ଦୁଇ ପକ୍ଷ ମତର ମିଳାମିଶାର ପନ୍ଥାକୁ ଅର୍ଥନୀତି ଓ ଶିଳ୍ପ ସଂପର୍କ କ୍ଷେତ୍ରରେ Poldermodel କୁହାଯାଏ । ଏହି ପଦ୍ଧତି ବିଂଶ ଶତାବ୍ଦୀରେ ଆଦୃତ ଥିଲା। ଅର୍ଥନୀତିର ବିପର୍ଯ୍ୟୟ ଏହି ପଦ୍ଧତି ପ୍ରତି ଅନାଗ୍ରହ ଆଦୃତ ଥିଲା ଅର୍ଥନୀତିର ବିପର୍ଯ୍ୟୟ ଏହି ପଦ୍ଧତି ପ୍ରତି ଅନାଗ୍ରହ ସୃଷ୍ଟି କରିଛି। ୨୦୦୪ରୁ ଶ୍ରମିକ ସଂଘ ମାଲିକ ଓ ଶକ୍ତିଶାଳୀ ଅନୁଷ୍ଠାନ ଗୋପନ ମନ୍ତ୍ରଣା କରୁଛନ୍ତି।

ଆଲୋଚନା ଯୁକ୍ତିତର୍କ ବିଫଳ ହେଲେ ଡଚମାନେ ଅଭିଯୋଗ, ବିରୋଧ, ଆପତ୍ତି ଓ ଆବେଦନର ଆଶ୍ରୟ ପର୍ଯ୍ୟାୟକ୍ରମେ ନେଇଥାନ୍ତି। ପ୍ରତ୍ୟେକ ଅଭିଯୋଗର ପ୍ରତ୍ୟୁତ୍ତର ମାସେ ଦି ମାସ ଭିତରେ ମିଳିଥାଏ। ତେଣୁ କୁହାଯାଏ ହଲାଣ୍ଡରେ ସ୍ୱଚ୍ଛନ୍ଦରେ ଚଳିବାକୁ ହେଲେ ଅଭିଯୋଗ କରି ଶିଖିବାକୁ ହେବ।

ଧର୍ମ, ରାଜନୀତି ଓ ଶ୍ରେଣୀଭିତ୍ତିରେ ଡଚ ସମାଜ ପୂର୍ବେ ବିଭାଜିତ ଥିଲା, ନିଜ ଗୋଷ୍ଠୀର ବାହାରକୁ କେହି ଯାଉ ନଥିଲେ। ଏହି ଧାରାକୁ Pillarization କୁହାଯାଉଥିଲା, ଏହି ଧାରାର ବ୍ୟର୍ଥତା ଅନୁଭବରୁ ପ୍ରତିକ୍ରିୟାସ୍ୱରୂପ Dutch Tolerance ସହନଶୀଳତାର ପ୍ରସାର ଘଟିଲା, ପିଲାରାଇଜେସନ୍ ଦର୍ଶନର ପତନ ୧୯୬୦ରୁ ଘଟିଲା, ତା'ସ୍ଥଳରେ Levelling ଦର୍ଶନ ମୁଣ୍ଡ ଟେକିଛି। ସମସ୍ତେ ହଲାଣ୍ଡ ପରି ସମତଳ Flat ହେବେ।

No one is better than anyone else ସମସ୍ତେ ସମାନ।

ଡଚ୍‌ଚଳଣିରେ ଦୁଇଟି ଭାବ ଦେଖିବାକୁ ମିଳେ, ଗୋଟିଏ ସହନଶୀଳତା, ଅନ୍ୟଟି ଆଇନଗତ ଅଧିକାର Legal permissiveness । ଆଇନଗୁଡ଼ିକ ଉଦାରତା ସହ ବ୍ୟାଖ୍ୟା କରାଯାଏ। ଉଦାହରଣସ୍ୱରୂପ ୧୯୮୦ ଦଶକରେ ସ୍କାଟର ଆନ୍ଦୋଳନର ସମାଧାନ କରାଗଲା, ପୁରୁଣା ଭଂଗା କୋଠାର ମରାମତି ସରକାରୀ ଅର୍ଥରେ କରି ଗୃହହୀନଙ୍କୁ ଥଇଥାନ କରିବା ଦ୍ୱାରା।

## ନାରୀ ଆନ୍ଦୋଳନ

ହଲାଣ୍ଡରେ ନାରୀମାନଙ୍କର ଅଧିକାର ପାଇଁ ଆନ୍ଦୋଳନ ଥିଲା ବିଶ୍ୱଦୃଷ୍ଟି ଆକର୍ଷଣକାରୀ ଆନ୍ଦୋଳନ। ସମାନ ଅଧିକାର ପାଇବା ପାଇଁ ଦେଶବ୍ୟାପୀ ଆନ୍ଦୋଳନ। ଦେଶରେ ଏହି ସମସ୍ୟା ନିମିତ୍ତ ଏକ ମନ୍ତ୍ରୀ ନିଯୁକ୍ତ କରାଯାଇଛି ଏବଂ ଏହା Save the women of the world ର ରୂପ ନେଇଛି। ନାରୀ ଆନ୍ଦୋଳନ (Varo U wen) ନାରୀମାନଙ୍କ ପାଇଁ ସ୍ୱତନ୍ତ୍ର ବହି, ପତ୍ରପତ୍ରିକା, ପାଠାଗାର, ନାରୀମୁକ୍ତି କେନ୍ଦ୍ର, ଥିଏଟର ୟୁନିୟନ ସୃଷ୍ଟି କରିଛି, ନାରୀ ଆନ୍ଦୋଳନର ମୂଳ ଲକ୍ଷ୍ୟ ନାରୀମାନେ ଦଂପତିର ଅର୍ଦ୍ଧେକ ରୂପେ ବିବେଚିତ ହେବାକୁ ଋହାନ୍ତି ନାହିଁ, ସେମାନେ ଏକ ସ୍ୱତନ୍ତ୍ର ବ୍ୟକ୍ତି ଭାବେ ବିବେଚିତ ହେବାକୁ ଋହାଁନ୍ତି - ଛାଡ଼ପତ୍ର ପାଇଲେ ସଂତାନ ପାଳନ ପାଇଁ ସରକାର ଅନୁଦାନ ଦେଉଛନ୍ତି।

ଯେଉଁ ପୁରୁଷ ସ୍ୱଭାବର ବିରୋଧ କରୁଥିଲେ ନାରୀମାନେ ସେହି ସ୍ୱଭାବର ସେମାନେ ଶିକାର ହେଲେଣି।

୧୬୫୬ରେ ଇଂଲାଣ୍ଡର Owen fell then ଲେଖିଥିଲେ। "ପରିବାର ଭିତରେ ସମସ୍ତେ ସମାନ, କିଏ ମାଷ୍ଟର। ଓ କିଏ ମିଷ୍ଟ୍ରେସ୍ ଜାଣି ହେବନି, ଦୁହେଁ ଏକ ସଙ୍ଗେ ଶୋଇବାକୁ ଯାଉଛନ୍ତି ନ ଜାଣିଲେ।

୨୦୦୦ ମସିହାର ହଲାଣ୍ଡର Aurelia Hale କହନ୍ତି, "ଡଚ ନାରୀ ବେଶୀ ଭାଗ ଅବିଶ୍ୱାସୀ। ମୋର ଜଣେ ସହକର୍ମୀ କହିଥିଲେ ମୁଁ ଆଗାମୀ ବର୍ଷ ଜଣେ ବାଳିକାଙ୍କ ବନ୍ଧୁ ସହ ସ୍ପେନ ଯାଉଛି, ତାଜା ମାଂସ ପାଇବି, ମୋ ସ୍ୱାମୀ ଘରେ ପିଲାଙ୍କ ସହ ରହିବେ, ମୁଁ କିଛି ସରସତା ପାଇବି", ଦକ୍ଷିଣଆଫ୍ରିକାର ହାନସ୍ ଆଲଗ୍ରା କହନ୍ତି, ହଲାଣ୍ଡର ଅଧିକାଂଶ ମହିଳାଙ୍କର ରୁଚି ନାହିଁ, ନାରୀ ସୁଲଭ ଗୁଣ ବିବର୍ଜିତ, ଋଷୀ ଭଳି ଋଲନ୍ତି। ହଲାଣ୍ଡର ଜଣେ ବ୍ୟକ୍ତି କହନ୍ତି, "ଡଚନାରୀଙ୍କ ଗହଣରେ ଥିଲେ ବିଦେଶୀ ପୁରୁଷଟି ମଧ ରୋମାଞ୍ଚ ହରାଇବ। ତେଣୁ ମୁଁ ବାହାରୁ ସ୍ତ୍ରୀଟି ଆଣିଲି।"

ନାରୀ ଆନ୍ଦୋଳନର ତୀବ୍ରତା ଏକବିଂଶ ଶତାବ୍ଦୀରେ ହ୍ରାସ ପାଇଛି, ସରକାର ନାରୀମାନଙ୍କ ପାଇଁ ନିଯୁକ୍ତି, ଦରମା ଓ ଅନ୍ୟ ଅନୁଦାନର ବ୍ୟବସ୍ଥା କରିଛନ୍ତି। ଏବେ ଆନ୍ଦୋଳନକାରୀ ମାନେ ଅନ୍ୟ ସଂସ୍କୃତିର ନାରୀଙ୍କ ମୁକ୍ତି ପାଇଁ ଆନ୍ଦୋଳନ ଚଳାଉଛନ୍ତି। ଡଚ, ଇଂରାଜୀ ଫରାସୀ ଭାଷାରେ ବହୁ ବହି ବିକ୍ରୟ ହେଉଛି, 'topless' ହେବା ମୁଣ୍ଡରେ ଓଢ଼ଣୀ ନ ଦେବା ଲିଙ୍ଗ ପରିବର୍ତ୍ତନ ବିଷୟରେ। ହଲାଣ୍ଡର ନାରୀ ଆନ୍ଦୋଳନକାରୀ ସଂଘ WAWA - ଏକ ଆନ୍ତର୍ଜାତୀୟ ନାରୀ ସଂଘର ସଭ୍ୟ। ପ୍ରଚଳିତ ନାରୀ -ପୁରୁଷ ସଂପର୍କକୁ ଧ୍ୱଂସ ମୁଖରୁ ରଖିବା ପାଇଁ Anton Hein ଙ୍କ ପରାମର୍ଶ ହେଉଛି, ଆମେ ପୁରୁଷମାନେ ଅନୁଭବ କରିବା ଓ ଜାଣିବା ଉଚିତ୍ ଯେ ନାରୀମାନେ ନାରୀମାନଙ୍କ ସହ ଲଟରପଟର ହେବା ପୁରୁଷଙ୍କୁ ଭଲ ପାଆନ୍ତି ନାହିଁ। ଆମେ ନାରୀମାନଙ୍କୁ ଆଗେଇ ଆସିବାକୁ ପ୍ରଥମ ସୁଯୋଗ ଦେବା ଦରକାର।

## ଖାଦ୍ୟ : ମନ ଓ ପ୍ରାଣର

ଖାଦ୍ୟ ପଦାର୍ଥର ଅଭାବ ନାହିଁ, ସବୁପ୍ରକାର ଫଳ ପନିପରିବା ବଜାରରେ ମିଳେ, ବାଇଗଣ, କଲରା, ନାଉ, ଅମୃତଭଣ୍ଡା, ଛତୁ, ଭେଣ୍ଡି, କୋବି, ସଜନା ଛୁଇଁ, ମାଟି ତ ଉର୍ବର, ଜଳର ଅଭାବ ନାହିଁ। ବଣଜଙ୍ଗଲ ରାସ୍ତାକଡ଼ରେ ନାନାପ୍ରକାର ବିରାଟ ଗଛ ଦେଖିଲେ ମନେ ହେବ ପ୍ରକୃତି ଏଠାରେ ଚିର ସତେଜ, ଚିର ସବୁଜ। ନାନାଫୁଲର ସମାହାର ଜୀବନର ସୌନ୍ଦର୍ଯ୍ୟ ପିପାସା ବୃଦ୍ଧି କରିବା ସ୍ୱାଭାବିକ। ସେଇଥିପାଇଁ ଏ ଦେଶରେ ଚିତ୍ରକଳା ପ୍ରତି ପ୍ରବଳ ଆଦର। ମାଛ ମାଂସର ଅଭାବ ନାହିଁ। ପରିବାର ନେଇ ରହିଥିବା

ବିଭିନ୍ନ ଦେଶର ଲୋକ, ନିଜର ଅଭ୍ୟାସ ଓ ରୁଚି ଅନୁସାରେ ଘରେ ରାନ୍ଧି ସକାଳ, ମଧ୍ୟାହ୍ନ ଓ ନୈଶ୍ୟ ଭୋଜନ ବ୍ୟବସ୍ଥା କରିପାରିବ। ବୋହୂ ମୋରତ ସୁନ୍ଦର ରାନ୍ଧି ପାରେ, ସଂଗରେ ଅଛନ୍ତି ସ୍ତ୍ରୀ, ସମୁଦୁଣୀ। ରାନ୍ଧିବାରେ ଏକକୁ ଆରେକ, ତେଣୁ ମୁଁ ଅନୁଭବ କରିପାରେନା, ଭୁବନେଶ୍ବର ଓ ଟିଲବର୍ଗ ସହରରେ ଖାଇବାର ପାର୍ଥକ୍ୟ। ଖାଦ୍ୟ ଯେପରି ସବୁପ୍ରକାରର ସମ୍ଭବ, ପାନୀୟ କଥା ମଧ୍ୟ ତଦ୍ରୂପ। ନାନାପ୍ରକାର ମଦ, ଫଳରସ ଓ ଦୁଧ ଛୋଟ ବଡ଼ ପ୍ୟାକେଟ୍‌ରେ ମିଳେ। ନାତି ଦୁଇଟି ମୋର ରୀତିମତ ଜୁସ୍ ପିଅନ୍ତି, ପ୍ରାତଃ ଭୋଜନ ପରେ କ୍ଷୀରପାନ କରନ୍ତି। ମୁଁ ଗ୍ଲାସେ ଲେଖା କ୍ଷୀର ପାନ କରେ ଅଭ୍ୟାସ ବଶତଃ ରାତ୍ରିଭୋଜନ ପରେ। ବଜାରରେ କେତେପ୍ରକାର ଫଳ, କମଳାଲେମ୍ବୁ, ବାତାପି, କଦଳୀ, ସେଓ, ଅଂଗୁର, ନାନାପ୍ରକାର କୋଳି, ଖଜୁରୀ। ଅର୍ଥ ଥିଲେ ଲାଳସା ବ୍ୟର୍ଥ ହେବନି।

ଡଚମାନେ ସାଧାରଣତଃ ପାଉଁରୋଟି, ଜାମ୍, ସେଣ୍ଡଉଇଚ, ଆପେଲ୍ ଜିବାକ୍, ଆପେଲ୍ ପିଅରସ୍ ଖାଇ କଫି ପାନ କରନ୍ତି। କଫି ହେଉଛି ଡଚମାନଙ୍କର ପ୍ରିୟ ପାନୀୟ। ହୋଟେଲ୍ ରେଷ୍ଟୁରାଣ୍ଟରେ ସପରିବାର ବସି, ଖୁସି ଗପ କରୁ କରୁ କଫି କପ୍ ଚୁଚୁମୁଥିବେ। ସମୟ କଟାଇବାର ଆନନ୍ଦଦାୟକ ଉପାୟ। ଡଚସୁ ସୁ (Sushi) ଅନ୍ୟ ଏକ ସ୍ୱତନ୍ତ୍ର ପ୍ରିୟ ଖାଦ୍ୟ। ମାଛ ଷ୍ଟଲ୍ ପାଖରେ ଛିଡ଼ା ହୋଇ ଛୋଟଛୋଟ ମସଲା ଦିଆ ଗୋଟା ମାଛକୁ ଗିଳୁଥିବାର ଦୃଶ୍ୟ ହାସ୍ୟୋଦ୍ଦୀପକ ହେବ ଆମ ଦୃଷ୍ଟିରେ। କିନ୍ତୁ ଡଚମାନେ ବହୁକାଳରୁ ଜାପାନୀଙ୍କ ଭଳି ଏପରି ମାଛ ଖାଇବାରେ ଅଭ୍ୟସ୍ତ। ଅନ୍ୟ ସବୁ ଇୟୁରୋପୀୟଙ୍କ ଭଳି ଡଚମାନେ ମଧ୍ୟ ଖାଆନ୍ତି ବିସ୍କୁଟ୍। ଡଚ ରସ୍କ ବେଶ୍ ଲୋକପ୍ରିୟ। ଡଚ୍ Cocoa ବିଶ୍ୱବିଖ୍ୟାତ।

ଡଚ୍ ଖାଦ୍ୟର ପ୍ରଶଂସା କରି Claniss Dukson Wright ଲେଖିଛନ୍ତି 'For once one must be nice about the Dutch' - they do make the best Cocoa'

## ଫୁଲର ମହକ - ଜୀବନେ ଚମକ

ବଂଚି ରହିବା ପାଇଁ ଉଦରର କ୍ଷୁଧାଜ୍ୱାଳାର ଉପଶମ ଯେତିକି ଦରକାର, ଜୀବନକୁ ସରସ, ସୁନ୍ଦର ଓ ଆନନ୍ଦମୟ କରିବା ପାଇଁ ପ୍ରକୃତିର ସୌନ୍ଦର୍ଯ୍ୟ, ଲଳିତ ସ୍ୱର, ବିସ୍ମୟକରୀ ଦୃଶ୍ୟ ଓ ଚମତ୍କାରୀ ଘଟଣା ମଧ୍ୟ ସେତିକି ଦରକାର। ଈଶ୍ୱରଙ୍କ ସୃଷ୍ଟିରେ ମଣିଷ ହେଉଛି, ମହାନ୍, ଅଦ୍ଭୁତ ତାର ଅଛି ମନନ, ଚିନ୍ତନ କଳ୍ପନା, ଓ ସ୍ୱପ୍ନ ଦେଖିବାର ଶକ୍ତି, ଜଣାରୁ ଅଜଣା, ଦେଖାରୁ ଅଦେଖାକୁ ଯିବାର ଉତ୍କଣ୍ଠା ଆବେଗ, ମଣିଷର ଚରିତ୍ରର ବୈଶିଷ୍ଟ୍ୟ। ମଣିଷର ଏହି ପ୍ରବୃତ୍ତିକୁ ପରିପୁଷ୍ଟ କରିବା ପାଇଁ ପ୍ରକୃତି ଅଜାଡ଼ି ଦେଇଛି ନାନାରଂଗ ଓ ଗନ୍ଧର ଫୁଲ,

ନାନା ସ୍ୱରର କାକଳି ଓ ରବ । - ପନିପରିବା ଫଳପତ୍ର ସାଂଗକୁ ରହିଛି ଫୁଲ, ଯା'ର ସୌନ୍ଦର୍ଯ୍ୟ ଓ ମହକରେ ଜୀବନ ହୁଏ ଉତ୍ତାଳ, ରୋମାଞ୍ଚକର ଓ ସ୍ୱପ୍ନମୟ।

ଆମ ଦେଶର ସାଧାରଣତ ମଣିଷ, ପିଲାଙ୍କ ଠାରୁ ବୁଢ଼ା ପର୍ଯ୍ୟନ୍ତ, ନାରୀ ପୁରୁଷ ନିର୍ବିଶେଷରେ ସମସ୍ତେ ଫୁଲର ସୌନ୍ଦର୍ଯ୍ୟ ଓ ମହକରେ ବିଭୋର ହୋଇଥାନ୍ତି। ଗୃହସଜ୍ଜା, ବଂଧୁଙ୍କୁ ଅଭିବାଦନ, ଭକ୍ତି ଅର୍ଚ୍ଚନା, ସେବା ପୂଜା ପାଇଁ ଲୋଡ଼ା ହୁଏ ଫୁଲ ଚମ୍ପା, ମଲ୍ଲୀ, କେତକୀ, ଯୁଇ, କଇଁ, ପଦ୍ମ, ଟଗର, କନିଅର। ଅସଂଖ୍ୟ ଫୁଲକୁ କେନ୍ଦ୍ର କରି କବି ଓ କଳାକାର ସୃଷ୍ଟିରେ ହୋଇଛନ୍ତି ତତ୍ପର। ବର୍ଣ୍ଣନା ଚତୁରୀରେ ଚନ୍ଦ୍ର ସହ କୁମୁଦିନୀକୁ, ପଦ୍ମ ସହ ସୂର୍ଯ୍ୟକୁ, କୋମଳ ସୁନ୍ଦର ଫୁଲ ସହ ଲାବଣ୍ୟମୟୀ ରମଣୀକୁ ଯୋଡ଼ି ଦେଇଛନ୍ତି।

ଆମ ଦେଶରେ ଯାହା, ଅନ୍ୟ ଦେଶରେ ବି ତା। ପ୍ରକୃତି କବି ଓ୍ୱାଡ଼ସ୍‌ୱର୍ଥଙ୍କ ଭଳି କବି କଳ୍ପନାରେ ଡେଫୋଡ଼ିଲ୍ସ ହୋଇଯାଏ ଭାବରସର ଉତ୍ସ, ଲାଏରଉତ୍ସ, ମଧୁସୂଦନ ରାଓଙ୍କ ଲେଖନୀରେ ପଦ୍ମପାଲଟିଏ ଆଧ୍ୟାତ୍ମିକତାର ପ୍ରତୀକ, ଆଉ କେଉଁ କବିଙ୍କ ତୂଳୀରେ ଶେଫାଳି ହୋଇଯାଏ ମଧୁମୟ ଜୀବନର କ୍ଷଣଭଂଗୁରତାର ପ୍ରତୀକ।

ଫୁଲର ଆବେଦନ ଅସୀମ, କେତେ ପ୍ରସାଙ୍ଗିକ: Lydia m Child ଙ୍କ ମନ୍ତବ୍ୟ Flowers have spoken to me more than I can tell in written words. They are the hieroglyphieis of angels loved by all men for the beauty of the character, though few can decipher even fragments of their meaning. ସ୍ୱର୍ଗର ପାରିଜାତ, ଦେବତାର ଆଶୀର୍ବାଦ, ବିଂଚି ଦେବାକୁ ଧରାପୃଷ୍ଠରେ ଫୁଟିଛି ନାନାଜାତିର ଫୁଲ।

ବଂଧୁଙ୍କୁ ଅଭିନନ୍ଦନ ଜଣାଇବାକୁ, କଳହର ମୀମାଂସା କରିବାକୁ, ଉତ୍ସବାଦି ଆମନ୍ତ୍ରଣରେ ଡଚମାନେ ଫୁଲତୋଡ଼ା ଧରିଯିବା ଏକ ଜାତୀୟ ପ୍ରଥା, ସାଇକେଲ୍‌ରେ ବଜାରରୁ ଫୁଲ ଗୋଛା ଧରିଯିବାର ଦୃଶ୍ୟ ସାଧାରଣ। ନୂତନ ଗୃହକୁ ବଂଧୁମାନଙ୍କୁ ଆମନ୍ତ୍ରଣ କରିବା ପୂର୍ବରୁ ଫୁଲଗଛ ଲଗାଇ ଉତ୍ସବ ସଂପନ୍ନ କରିବା ଏକ ପ୍ରଥା। ଡଚମାନଙ୍କ ବାସଗୃହର ପ୍ରବେଶ ଦ୍ୱାରରେ, ଝରକା ନିକଟରେ, ବୈଠକଖାନାରେ ଫୁଲ ଗଛ ସଜ୍ଜୀକରଣ ଆଗନ୍ତୁକଙ୍କୁ ଆକୃଷ୍ଟ କରେ। ଡଚମାନେ ନିଜର ଫୁଲ ପ୍ରୀତି ପାଇଁ ଗର୍ବିତ, ଟ୍ୟୁଲିପ ଡଚର ଜାତୀୟ କୁସୁମ (National Flower)। ହଲାଣ୍ଡରେ ବିସ୍ତୃତ ଫୁଲଚାଷ କରାଯାଏ। Aalsmeer ଠାରେ ଫୁଲ ନିଲାମ୍ କରାଯାଏ। ପୃଥିବୀର ପ୍ରାୟ ୪୪ ପ୍ରତିଶତ ଫୁଲ ଏଠାରେ ନିଲାମ କରାଯାଇଥାଏ। ପ୍ରତିବର୍ଷ ଫୁଲ ମେଳା ତ ହୁଏ। ପ୍ରତି ଦଶବର୍ଷରେ ଗୋଟିଏ ବଡ଼ ମେଳା ହୋଇଥାଏ। ଫଳଫୁଲ ପନିପରିବାର ପ୍ରଚୁର ଚାଷଜମିର ଉର୍ବରତା ନଷ୍ଟ କରିଦେବାର ଆଶଙ୍କା ଦୂର କରାଯାଇଥାଏ ସାର ପ୍ରୟୋଗ ଦ୍ୱାରା। ଗୋରୁ ଓ ଘୁଷୁରୀଙ୍କ ଠାରୁ ପ୍ରଚୁର

ଛୈବିକ ସାର ମିଳିଥାଏ। ପ୍ରାଦେଶିକ କର୍ତ୍ତାମାନେ ଲାଭପ୍ରଦ ସାରବ୍ୟାଙ୍କ ଖୋଲିଛନ୍ତି। (Shitbanks) ଡଚମାନଙ୍କର ଗଛ ପ୍ରୀତି ମଧ୍ୟ ଅପରିମିତ। ୧୩୦ ବର୍ଷରୁ ଅଧିକ କାଳ ବଂଚିଥିବା ଗଛକୁ ମନୁମେଣ୍ଟ ର ସମ୍ମାନ ଦିଆଯାଏ।

## ଡଚମାନଙ୍କ ଆଚାର ବ୍ୟବହାର

ବିଦେଶୀଙ୍କ ଦୃଷ୍ଟିରେ ଡଚମାନଙ୍କ କଥାବାର୍ତ୍ତାରେ କୋମଳତା ଓ ଲାଳିତ୍ୟର ଅଭାବ ପରିଲକ୍ଷିତ ହୁଏ। ଡଚମାନେ କିନ୍ତୁ ଭାବନ୍ତି ସେମାନଙ୍କ ବ୍ୟବହାର ନିର୍ମଳ। ସାଧୁତା ଓ ନୈତିକତା ସ୍ପଷ୍ଟ ଉଚ୍ଚାରଣର ଲକ୍ଷଣ ବୋଲି ଡଚମାନେ ଭାବନ୍ତି। ଜଣେ ଆମେରିକାନ୍ ଲେଖକଙ୍କ ମତରେ ଡଚମାନେ ଧଳା କଳା ଦୁଇ ରଂଗ ଦେଖିଥାନ୍ତି, ମିଶାମିଶି ଦୃଷ୍ଟିରେ ପଡ଼େନି, ତେଣୁ କଥାରେ ନଥାଏ ଚାତୁରୀ।

ଡଚମାନେ ପ୍ରଥମେ ଜଣେ ବଂଧୁ କି ଅତିଥିଙ୍କୁ ଭେଟିଲେ ଡାହାଣ ହାତ ବଢ଼ାଇ ଦିଅନ୍ତି କରମର୍ଦ୍ଦନ ପାଇଁ, ଅଭିନନ୍ଦନ ଦୀର୍ଘ ହେଲେ, ଅର୍ଥାତ୍ ନିବିଡ଼ତା ଅବବୋଧ ହେଲେ, ପରସ୍ପରକୁ ଚୁମା ଦିଅନ୍ତି, ଦକ୍ଷିଣ ବାମ ଦକ୍ଷିଣ ଗାଲରେ ତିନିଟି ଚୁମା, ପୁରୁଷ ପୁରୁଷ ବଂଧୁଙ୍କୁ, ନାରୀ ନାରୀଙ୍କୁ, କି ପୁରୁଷ-ନାରୀକୁ। ଏହା କେବଳ ଅଭିନନ୍ଦନର ଆନ୍ତରିକତାର ଚିହ୍ନ, ନାରୀ ପୁରୁଷ କି ସମଲିଙ୍ଗୀ ପ୍ରେମର ଆଭାସ ନୁହେଁ। ରାସ୍ତାରେ ସୁନ୍ଦର କିଶୋର କିଶୋରୀଙ୍କ ସାକ୍ଷାତ୍ ବେଳେ ଚୁମା ଦେବାନେବା ପ୍ରଥମେ ମୋ ମନରେ ଅନ୍ୟ ଭାବ ଜାତ କରିଥିଲା, ସୁନ୍ଦର ମସୃଣ ଚିବୁକର ସ୍ପର୍ଶ, ଆହା କି ମଧୁର।

କୌଣସି ବଂଧୁଘର ରାତିରେ କି ଦିନରେ ବିଦାୟ ନେଲାବେଳେ ଘରର ଦ୍ୱାର ବାହାରକୁ ଆସି କେତେଥର ଉଚ୍ଚସ୍ୱରରେ ଦାଆଗ୍ (Dauag) କହିବାକୁ ହୁଏ। Dauag ସାଧାରଣତଃ ବିଦାୟ ବେଳେ ଦୁଇ (Dooee) କୁହାଯାଏ। ଏହା ନିମ୍ନ ଶ୍ରେଣୀର ଶିକ୍ଷା ବିବର୍ଜିତ ଲୋକଙ୍କ ଭାବ ପ୍ରକାଶ ରୀତି ଏକଦା ଥିଲା, ଏବେ ଏହା ସର୍ବସାଧାରଣରେ ଗ୍ରହଣୀୟ।

ଡଚ ସମାଜରେ ସଂପ୍ରତି ବିବାହ ପ୍ରଥା ସାଂଗକୁ Live together (Same women) ପ୍ରଥା ମଧ୍ୟ ପ୍ରଚଳିତ। ବିବାହ ଟାଉନହଲ୍‌ର ମେରେଜରୁମ୍‌ରେ ସଂଘଟିତ ହୁଏ। ଚର୍ଚ୍ଚ ଉତ୍ସବ କରିପାର ନ କରିପାର, ରେଜେଷ୍ଟ୍ରି କରାଯାଏ ବିବାହକୁ। ଲିଭ୍ ଟୁଗେଦର ନୋଟାରୀ ପବ୍ଲିକ୍ ସାମ୍ନାରେ କରାଯାଇଥାଏ। ଏଥିରେ ବି ଟିକସ ରିହାତି ଓ ସମାଜ ମଙ୍ଗଳ ସୁବିଧା ଦୁହିଁଙ୍କୁ ମିଳିଥାଏ।

ଡଚ ବାସୀମାନେ ଅତ୍ୟନ୍ତ କଫି ପ୍ରିୟ। ହାରାହାରି ବର୍ଷକୁ ୧୬୫ ଲିଟର କଫି ପାନ କରନ୍ତି। ଡଚ କଫି ସ୍ୱାଦୁରେ ପୃଥିବୀ ପ୍ରସିଦ୍ଧ। କଫି ପାନ ଏକ ବିଳାସ କାର୍ଯ୍ୟ।

ଅନ୍ୟ ଏକ ବିଳାସ ହେଉଛି ରବିବାର କୌଣସି ପାର୍କରେ ଟେଣ୍ଟ ପକେଇ camping କରିବା ।

ପିଲାର ଜନ୍ମ ଦିନକୁ ଆଡ଼ମ୍ବର ସହକାରେ ପାଳନ କରନ୍ତି, ନିମନ୍ତ୍ରିତ ବଂଧୁମାନେ ଫୁଲ ଓ ଉପହାର ଆଣିଥାନ୍ତି ।

ଡଚମାନଙ୍କ ନିକଟରେ ଉତ୍ସବମୁଖର ଦିନ ହେଉଛି 'Queen's Day, Rememberance / Liberation Day, ଖ୍ରୀଷ୍ଟ ମାସ ଡ଼େ ନିୟୁ ଇଅରସ୍ ଡ଼େ, ଜାତୀୟ ବାଇ ସାଇକେଲ ଡ଼େ ।

କ୍ୱିଇନସ୍ ଡ଼େ ଏପ୍ରିଲ ୩୦ରେ ପାଳନ କରାଯାଏ । ସହରମାନଙ୍କରେ ନାନାରଂଗର ପୋଷାକ ପିନ୍ଧି, ଗୀତ ନାଚ କରି ଜୀବନକୁ ଉପଭୋଗ କରନ୍ତି । ନାନା ଢଂଗରେ ବାଦ୍ୟ, ପେରେଡ଼, ସାଜସଜ୍ଜା ହୋଇଥାଏ ।

ରିମେମ୍ବରନ୍ସ ଡ଼େ, ମେ ୪ରେ ପାଳନ କରାଯାଏ । ଏହି ଦିନରେ ସବୁ ଯୋଦ୍ଧା ସହୀଦଙ୍କୁ ସ୍ମରଣୀ କରାଯାଏ । Liberation Day ପାଳିତ ହୁଏ ମେ ୫ରେ । ୧୯୪୫ରେ Teutonic ଅତ୍ୟାଚରରୁ ମୁକ୍ତିଲାଭ ଦିବସକୁ ସ୍ମରଣ କରି ଏ ଉତ୍ସବ ପାଳନ କରାଯାଏ । - ଏହି ଦିନ ପରସ୍ପର ମଧ୍ୟରେ ଉପହାର ଆଦାନ ପ୍ରଦାନ କରାଯାଏ । ଅନ୍ୟଟି ଡିସେମ୍ବର ୨୪, ଉପାସନାର ଦିବସ ।

ଡଚମାନେ ଖ୍ରୀଷ୍ଟମାସ ଦୁଇଦିନ ପାଳନ କରନ୍ତି । ନଭେମ୍ବର ୫ରେ Santaclaus ସ୍ପେନରୁ ଜାହାଜରେ ଆସି ଆମ୍ଷ୍ଟରଡାମ୍‌ରେ ପହଞ୍ଚିଥିଲେ । ଏହି ଦିନଟି ଶ୍ରଦ୍ଧାର ସହ ପାଳନ କରନ୍ତି । ଡିସେମ୍ବର ୫ ତାରିଖ ସେଣ୍ଟନିକୋଲାସ୍‌ଙ୍କ ଜନ୍ମଦିନ । ଏହିଦିନ ପରସ୍ପର ମଧ୍ୟରେ ଉପହାର ଆଦାନପ୍ରଦାନ କରାଯାଏ ।

ନିୟୁ ଡ଼େ ପାଳନ କରାଯାଏ ଡିସେମ୍ବର ୧୫ରୁ ଜାନୁୟାରୀ ୧୫ ପର୍ଯ୍ୟନ୍ତ । ପ୍ରଚୁର ବାଣକାମର ପ୍ରଦର୍ଶନୀ ହୋଇଥାଏ । ଆଜକୁ ୩୦ ବର୍ଷ ହେଲା ମେ ଦ୍ୱିତୀୟ ଶନିବାର ଦିନ ନେସନାଲ୍ ବାଇସାଇକେଲ ଡ଼େ ପାଳନ କରାଯାଉଛି, ପ୍ରାୟ ଅଢ଼େଇଲକ୍ଷ ସାଇକେଲ ଚଢ଼ାଳି ଏଥିରେ ଅଂଶଗ୍ରହଣ କରନ୍ତି ।

## ବାଇସାଇକେଲ ଡାଇକ୍ ପତାକା ଓ କଠିନ ଶ୍ରମ

Bikes, Dikes, Flags and Fags

'What wound's one's feelings in Holland is the perpetual consciousness that the country has no business being there at all. You see it all below the level of the water, supply hideous and artificial.

(Mathew Arnold , 1859)

"କୌଣସି ବ୍ୟବସାୟ ଦେଶ ମାଟିରେ ହୁଏନା, ସବୁକିଛି ଜଳସ୍ତରର ତଳେ ସନ୍ତସନିଆ, ଅଦୃଶ୍ୟ, କୃତ୍ରିମ।" ସାଇକେଲ୍ ନଦୀବଂଧ, ପତାକା ଓ ଯୌନାଗାର (Fags) ଡଚ ଜାତିର ସ୍ୱାତନ୍ତ୍ର୍ୟର ପ୍ରତୀକ।

ହଲାଣ୍ଡର ୯୧ ପ୍ରତିଶତ ଘରେ ବାଇସାଇକେଲ ଅଛି। ୧୦୦୦୦ କିଲୋମିଟର ସ୍ୱତନ୍ତ୍ର ରାସ୍ତା ତିଆରି ହୋଇଛି ସାଇକେଲ ଚଳାଚଳ ପାଇଁ।

ଡାଇକ୍ ଓ ଡାମ୍ ନିର୍ମାଣ କରିବାରେ ଡଚମାନେ ଧୂରନ୍ଧର ଆଜକୁ ୮୦୦ ବର୍ଷ ହେଲା ସେମାନ ନିର୍ମାଣ କରି ଆସୁଛନ୍ତି, ସମୁଦ୍ର ପତନ ତଳେଥିବା ବିସ୍ତୃତ ଅଂଚଳକୁ ସୁରକ୍ଷିତ କରି ଚଳୁଛନ୍ତି, Northseaର ବିରାଟ ଅଂଚଳ ଉଦ୍ଧାର କରି ବସବାସ କରୁଛନ୍ତି ଲଣ୍ଡନ ଟାୱାର୍ ବ୍ରିଜ୍ ଭଳି ଦୁଇଟି ଝୁଲାଫାଟକ ରଟରଡ଼ାମକୁ ସୁରକ୍ଷିତ କରୁଛି। ୧୯୫୩ରେ ବନ୍ୟାରେ ବହୁଲୋକଙ୍କ ଜୀବନନାଶ ଘଟିବା ପରେ ୧୯୬୦ରୁ ସରକାର ଗୋଟିଏ ଡାଇକ୍ ଯୋଜନା ଆରମ୍ଭ କରି ୧୯୭୮ ରେ ସଂପୂର୍ଣ୍ଣ କଲେ। ଏହି ଅଦ୍ଭୁତ କାର୍ଯ୍ୟକୁ ପ୍ରଶଂସା କରି The New York Times ଲେଖିଥିଲେ, "This will end the mythology of the dumb little Dutch boy with his stupid finger in the dike to save the country" ଡଚମାନେ ଏବେ ଜଳ ନିୟନ୍ତ୍ରଣ କାରିଗରୀ ରପ୍ତାନି କରି ପ୍ରଚୁର ଅର୍ଥ ଉପାର୍ଜନ କରୁଛନ୍ତି।

ହଲାଣ୍ଡର ଜାତୀୟ ପତାକା ଫ୍ରାନ୍ସର ତ୍ରିରଂଗା ପତାକା ସଦୃଶ, ତଫାତ୍ ରଂଗଟି ଲମ୍ବା ପତାକାର ପାର୍ଶ୍ୱଧାରରେ (Side ways) ଥାଏ। ଇଂଲାଣ୍ଡ ପରି ହଲାଣ୍ଡ ଲୋକେ ରାଷ୍ଟ୍ରର ସର୍ବୋଚ୍ଚକର୍ତ୍ତା ଭାବେ ରାଜବଂଶକୁ ମାନିଥାନ୍ତି। ରାଣୀ ଜୁଲିଆନା ଓ ବିଏଟ୍ରିକ୍ସ ଅତି ଲୋକପ୍ରିୟ ସାଧାରଣ ଲୋକଙ୍କ ପରି ରାଣୀ ସାଇକେଲ ଚଢ଼ି ବୁଲିବାର ଦେଖାଯାଏ।

ସମଲିଂଗୀ କାମ ଓ ବିବାହ ହଲାଣ୍ଡର ଏକ ବିତର୍କିତ ବ୍ୟବସ୍ଥା। ପୁରୁଷ - ପୁରୁଷ ମଧ୍ୟରେ ନାରୀ ନାରୀ ମଧ୍ୟରେ ସହବାସ, ଅଦ୍ଭୁତ ଅରୁଚିକର ମନେ ହେବ ଭାରତୀୟଙ୍କୁ ମାତ୍ର ଏହା ଗ୍ରହଣୀୟ ହୋଇଗଲାଣି ହଲାଣ୍ଡରେ Gay and lesbian ଙ୍କ ମଧ୍ୟରେ ପାର୍ଥକ୍ୟ ଓ ଅମିତ୍ରଭାବ ମଧ ଥାଏ। ଲେସବିଆନମାନେ କୃତ୍ରିମ ଉପାୟରେ ସଂତାନ ଜନ୍ମ କରି ସରକାର ସାହାଯ୍ୟ ମଧ ପାଆନ୍ତି। ୧୯୮୭ରେ ଆମଷ୍ଟାରଡ଼ାମର ଉଦାର ବ୍ୟକ୍ତିମାନେ ବିଶ୍ୱର ପ୍ରଥମ ମନୁମେଣ୍ଟ ସମଲିଂଗୀ ପ୍ରେମୀଙ୍କ ପାଇଁ ନିର୍ମାଣ କରିଥିଲେ। ୨୦୦୧ରେ ଡଚଲୋକଙ୍କ ମଧ୍ୟରେ ପୁରୁଷ ପୁରୁଷ ବିବାହକୁ ବୈଧାନିକ କରାଗଲା। ତଥାପି ଡଚର ପିତାମାତା ମାନେ ନିଜ ସଂତାନ ସମଲିଂଗକାମୀଙ୍କ ମଧ୍ୟରେ ବିଚରଣ କରୁଥିବା ଦେଖିଲେ ଦୁଃଖ ଅନୁଭବ କରନ୍ତି।

# ଯୌନ ଜୀବନ : ଅଭିସାର ନା ବ୍ୟଭିଚାର

ବ୍ୟକ୍ତିତ ଜୀବନରେ, ସମାଜ ଦୃଷ୍ଟିରେ ଆମର ପ୍ରେମ କାମ ଓ ବିବାହ ଯେପରି ରହସ୍ୟାଚ୍ଛନ୍ନ ଓ ଗୋପନ ଥାଏ ଡଚ ସମାଜରେ ସେପରି ନଥାଏ। ଆମ ଯୌନ ଜୀବନରେ ଗୋପନୀୟତା ଉତ୍ତେଜନା ଉଦ୍ଦୀପନା ସୃଷ୍ଟି କରିଥାଏ। ନାରୀମାନଙ୍କର ଲଜ୍ଜା, ପ୍ରେମିକ ପ୍ରେମିକା ସୃଷ୍ଟି କରିଥାଏ। ନାରୀ ମାନଙ୍କର ଲଜ୍ଜା, ପ୍ରେମିକ-ପ୍ରେମିକାଙ୍କ ଗୋପନ ଅଭିସାର ଜୀବନକୁ ରୋମାଞ୍ଚକର କରିବା ସଂଗେ ସଂଗେ ସାହିତ୍ୟକୁ ରସାଳ ମନୋଜ୍ଞ କରିଛି। ଡଚସମାଜରେ ମୁକ୍ତ ଅବାଧ ପ୍ରେମ ଓ ମିଳନ, ତା ପୁଣି କେବଳ ନାରୀ ପୁରୁଷ ମଧ୍ୟରେ ନୁହେଁ, ନାରୀ ନାରୀ, ପୁରୁଷ ପୁରୁଷ ଭିତରେ ମଧ୍ୟ ବାତ୍ସାୟନଙ୍କ କାମଶାସ୍ତ୍ରର ପ୍ରାସଙ୍ଗିକତା ଏଡ଼ାଇ ଦିଏ।

ଯୌନାଚାର ଗୋଟିଏ କ୍ରିୟା, ଯାହାକୁ ସମାଜ ୧୪ ବର୍ଷର ଉର୍ଦ୍ଧ୍ୱ ପୁଅ ଝିଅଙ୍କ ମଧ୍ୟରେ ଉତ୍ସାହିତ କରିଥାଏ, ମାଆମାନେ ଝିଅମାନଙ୍କୁ ରଜବତୀ ହେବାର ତାତ୍ପର୍ଯ୍ୟ ବୁଝାଇ ସାବଧାନତା ଶିଖାଇ ଥାନ୍ତି। ସ୍କୁଲମାନଙ୍କରେ ଯୌନ ରୋଗ ସଂବନ୍ଧରେ ସତର୍କ କରି ଦିଆଯାଇଥାଏ।

ବେଳେବେଳେ କେତେକ ବାପା ତରୁଣ ପୁଅମାନଙ୍କୁ ସହବାସ ଅଭିଜ୍ଞତା ଅର୍ଜନ ପାଇଁ ପ୍ରବର୍ତ୍ତାଇଥାନ୍ତି। ସ୍କୁଲ ଓ ବାପା ମାଆଙ୍କ ଠାରୁ ଯାହା ଶିଖିଥାନ୍ତି, ସେଥିରେ ଯୋଗ କରାଯାଏ ଇଣ୍ଟରନେଟ୍ ଶିକ୍ଷା, କୌତୂହଳୀ ଯୁବକ-ଯୁବତୀମାନେ ଜାଣିବାକୁ ପାଆନ୍ତି ପ୍ରେମର କଳା କିଏ କାହା ଉପରକୁ ଉଠେ। ପୂର୍ଣ୍ଣ ତରୁଣ ହେଲାବେଳକୁ ସେମାନଙ୍କର ଧାରଣା ହୋଇଥାଏ ଯେ ଯୌନ କର୍ମ ଗୋଟିଏ ନିତ୍ୟନୈମିତିକ କର୍ମ। ଜଣେ ଗୃହିଣୀଙ୍କ ଭାଷାରେ, ଦନ୍ତମାର୍ଜନ ଭଳି ଏହା ପ୍ରାତଃକାଳୀନ ଓ ରାତ୍ରି ଶୟନ କାଳର ନିତ୍ୟକର୍ମ, ଟେବୁଲରେ ଅତିଥି ନିକଟରେ ବିନା ସଂକୋଚରେ ଯୌନସଂଳାପ ହୁଏ। "କାଲିପିଲାମାନେ ବେଳାଭୂମିରେ ମଜା କରିଥିଲେ, କାଲିରାତିରେ ଆମର ଆମୋଦାୟକ ଯୌନକ୍ରିୟା ହୋଇଥିଲା।" ବିନା ଲଜ୍ଜାବୋଧରେ ଡଚମାନେ Vrijen ସଂପର୍କରେ କଥାବାର୍ତ୍ତା ହୁଅନ୍ତି vrijen ଅର୍ଥ ଉଭୟ ପୂର୍ବରାଗ ଓ ଲିଙ୍ଗପ୍ରବେଶ।

ଡଚମାନେ ସହଜରେ ସାଧାରଣରେ ଉଲଗ୍ନ ହୋଇପଡ଼ନ୍ତି। ଉଲଗ୍ନ ହେବାଟା ଯୌନକର୍ମର ଇଂଗିତ ହୋଇ ନଥାଏ। କେହି ଜଣେ ବଂଧୁ ପୋଷାକଟିଏ ଉପହାର ଦେଲାବେଳେ, ପୋଷାକଟି ଦେହକୁ ଠିକ୍ ହୋଇଛି କି ନାହିଁ ଜାଣିବା ପାଇଁ ଅତିଥିଙ୍କ ସାମ୍ନାରେ ଲଙ୍ଗଳା ହୋଇ ନୂଆ ପୋଷାକ ପିନ୍ଧନ୍ତି। ଡାକ୍ତର ନିକଟରେ ଶରୀର ପରୀକ୍ଷା

ପାଇଁ ପୋଷାକ ପୂରା ଖୋଲି ଦେବାରେ ସଂକୋଚ ନଥାଏ। ସେହିଭଳି ଗର୍ଭନଷ୍ଟ କରିବା କାର୍ଯ୍ୟ କେହି ଗୋପନ ରଖେନା।

ଉନ୍ମୁକ୍ତତା ଯୌନକ୍ରିୟାର ମଧୁର ଉଦ୍ଦୀପନା ହ୍ରାସ କରିବା ସ୍ୱାଭାବିକ, ତେଣୁ ଏଥିରେ କିଛିଟା ଆମୋଦ ଓ ଶିହରଣ ଆଣିବା ପାଇଁ କଣ୍ଡମଙ୍କୁ ଜାଜ୍ୱଲ୍ୟମାନ ସୁଗନ୍ଧଯୁକ୍ତ କରାଯାଇଥାଏ ଓ ଅନ୍ତର୍ବାସ ଆକର୍ଷଣୀୟ ଓ ଲୋଭନୀୟ ହୋଇଥାଏ।

ଯୌନକ୍ରିୟାକୁ ଡଚମାନେ ଏକ ଶିଳ୍ପରେ ପରିଣତ କରିଦେଇଛନ୍ତି। ଆମଷ୍ଟାରଡ଼ାମ୍‌ରେ ବିଖ୍ୟାତ ଲାଲବତୀ ଅଞ୍ଚଳଟିଏ ଅଛି, ତାର ନାମ dewallen- ଏଠାରେ ଥାନାଟିଏ ରହିଛି। ବେଶ୍ୟମାନେ ମୁଦ୍ରା, କ୍ରେଡ଼ିଟକାର୍ଡ଼ ଓ ବିଦେଶୀ ମୁଦ୍ରା ପ୍ରାପ୍ୟ ରୂପେ ରଖିଥାନ୍ତି। ବ୍ୟବସାୟରେ ଗର୍ବ ଥାଏ, ଲୁଚାଇବାର ହୀନମନ୍ୟତା ନ ଥାଏ। Red Thred ବା Rode Draad ନାମକ ଏକ ସଂଗଠନ ଅଛି ବେଶ୍ୟା ଓ ସେମାନଙ୍କ ଗ୍ରାହକମାନଙ୍କର। ଏହି ସଂଗଠନ ସରକାରୀ ନିୟନ୍ତ୍ରଣ ବିରୁଦ୍ଧରେ ଆନ୍ଦୋଳନ କରିଥାଏ। ପ୍ରଥମେ ଏହା ବେଶ୍ୟାମାନଙ୍କ ପାଇଁ ରୋଗାକ୍ରାନ୍ତ ହେବାବେଳେ ଅନୁଦାନ ଟିକସରେ ସ୍ୱତନ୍ତ୍ର ଛାଡ଼, ପେନସନ ସୁବିଧା ହେବାବେଳେ ଅନୁଦାନ, ଟିକସରେ ସ୍ୱତନ୍ତ୍ର ଛାଡ, ପେନସନ୍ ସୁବିଧା, ଗର୍ଭକାଳୀନ ଛୁଟି ଓ କ୍ଷତିପୂରଣ ପାଇଁ ଆନ୍ଦୋଳନ କରିଥିଲେ, ଆନ୍ଦୋଳନ ସଫଳ ହେଲା। ୨୦୦୧ରେ ବେଶ୍ୟାବୃତ୍ତି ବୈଧାନିକ ହେଲା। ଏବେ ଏହି ସଂଗଠନ ଅନ୍ୟ ସବୁ ନିୟନ୍ତ୍ରଣ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଛି। ଯୌନକର୍ମୀମାନେ sex club ମାଧ୍ୟମରେ ଋକିରି ଖୋଜିଲେଣି, Sexclub ବିଜ୍ଞାପନ ମାଧ୍ୟମରେ ଯୌନକର୍ମୀ ନିଯୁକ୍ତ କଲେଣି। ବିଜ୍ଞାପନରେ ମାସିକ ଦରମା ଓ ଅନ୍ୟାନ୍ୟ ସୁବିଧାର ସୂଚନା ଥାଏ।

ଡଚ ସରକାରର ଯୌନକର୍ମୀଙ୍କ ପ୍ରତି ଉଦାରତା, ଯୌନକ୍ରିୟା ସୁଯୋଗ ଦେବାର ଦାୟିତ୍ୱ ଆମେ ବିଶ୍ୱାସ କରିପାରିବା ନାହିଁ, ଉଚ୍ଚ ନ୍ୟାୟାଳୟ ଜଣେ ରୋଗୀର ଯୌନ ଆବଶ୍ୟକତା ଜଣାଇବାରୁ ତାକୁ ଏହାର ସୁବିଧା ଦିଆଗଲା। Netherlands Association of Psychiatric Nursing ରୋଗୀମାନଙ୍କର ଯୌନ ଇଚ୍ଛା ପୂରଣ ସପକ୍ଷରେ ମତ ଦେବାରୁ ନଗର କର୍ତ୍ତୃପକ୍ଷ ଜଣେ ସ୍ତ୍ରୀ ଲୋକଙ୍କୁ ନିଯୁକ୍ତ କଲେ, ରୋଗୀଙ୍କୁ ନିରାପଦ ନାରୀ ନିକଟରେ ପହଞ୍ଚାଇବାକୁ।

ସହରମାନଙ୍କରେ ଯୌନସାମଗ୍ରୀ ବିକ୍ରୟର ଦୋକାନ ଦେଖିବାକୁ ମିଳେ, ଝରକା ଦେଇ ଯୌନଯନ୍ତ୍ର, ଫିଲ୍ମ ପୋଷାକ ଓ ପତ୍ରିକା ଦେଖିବାକୁ ମିଳିଥାଏ, ଜୀବନ୍ତ ଯୌନକ୍ରିୟା ପ୍ରଦର୍ଶନୀର-ମଣିଷ ଓ ପଶୁର – ବ୍ୟବସ୍ଥା ମଧ୍ୟ ଅଛି।

# ବିବାହ ବିଚ୍ଛେଦ

ଡଚ୍ ବାଳକ-ବାଳିକାମାନେ ବାର ତେର ବର୍ଷ ବୟସରୁ ଯୌନକ୍ରିୟା ସଂପର୍କରେ ଅବଗତ ହୋଇଥାନ୍ତି। ଅବାଧ ମିଳନ ଯୋଗୁଁ ଗର୍ଭଧାରଣ ଘଟିବା ଅସ୍ୱାଭାବିକ ନୁହେଁ। ଗର୍ଭନାଶ ଏକ ସାଧାରଣ ପ୍ରକ୍ରିୟା। ଆମ ଦେଶ ଭଳି ପିତାମାତା ଅତି ବିବ୍ରତ ହୁଅନ୍ତି ନାହିଁ। ଯୁବକ ଯୁବତୀ ଏକ ସଂଗେ ମିଶିବା, ଆଲିଙ୍ଗନ, ଚୁମ୍ବନ, କାମ ଉପଭୋଗ କରିବା ସ୍ୱାଭାବିକ ନାରୀପୁରୁଷ ସୁଲଭ କାର୍ଯ୍ୟ ରୂପେ ଗ୍ରହଣ କରନ୍ତି। ବିବାହର ସିଦ୍ଧାନ୍ତ, ପିଲାଛୁଆ କରି ପରିବାର ରଚନା କରିବାର ସିଦ୍ଧାନ୍ତ ୩୫/୪୦ ବର୍ଷ ବୟସରେ ନେଇଥାନ୍ତି, ସେ ପର୍ଯ୍ୟନ୍ତ ଏକ ସଂଗେ ରହି ଫୂର୍ତ୍ତିରେ ଜୀବନଯାପନ କରି, ମନ ନ ମାନିଲେ ପରସ୍ପରଠାରୁ ଦୂରେଇ ଯିବା ଘଟଣା ପ୍ରତି କେହି ଗୁରୁତ୍ୱ ଦିଅନ୍ତି ନାହିଁ। ଏଠାରେ ପୁରୁଷଠାରୁ ନାରୀର ଚୟନ ଅଧିକ ଗୁରୁତ୍ୱପୂର୍ଣ୍ଣ। ନାରୀଟି ପୁରୁଷଠାରୁ ଅଧିକ ପ୍ରଭାବ ବିସ୍ତାର କରିଥାଏ ବିବାହ ବଂଧନ ଓ ପରିବାର ସୃଷ୍ଟି କ୍ଷେତ୍ରରେ। ୫୦ ବର୍ଷ ବୟସ ହେଲା ପରେ ସହଜରେ ବଂଧନ ଛିନ୍ନ କରନ୍ତି ନାହିଁ। ଆବଶ୍ୟକତା ଓ ନିରାପତ୍ତା ଦୃଷ୍ଟିରୁ ଛାଡ଼ପତ୍ରର ଲାଭ କ୍ଷତିଚିନ୍ତା କରାଯାଇଥାଏ। ବୈବାହିକ ବଂଧନ କ୍ଷେତ୍ରରେ ନାରୀର ସୌନ୍ଦର୍ଯ୍ୟ ଓ ବ୍ୟବହାର, ପୁରୁଷର ରୂପ ଗୁଣ ଓ ଆୟ ବିଚାରକୁ ନିଆଯାଇଥାଏ। ଏମାନଙ୍କ ଦୃଷ୍ଟିରେ ବିବାହ ଏକ ଚୁକ୍ତିବଦ୍ଧ ଜୀବନ। ଚୁକ୍ତିର ଖିଲାପ ନାପସନ୍ଦ କରାଯାଏ। ଲାଭକ୍ଷତିର ହିସାବ ମଧ୍ୟ ଥାଏ ବିବାହ ଓ ଏକ ସଂଗେ ଜୀବନ କ୍ଷେତ୍ରରେ।

# କାହିଁ ବାଲିଯାତ୍ରା, କାହିଁ କେର୍ମିସ୍

କାର୍ତ୍ତିକ ପୂର୍ଣ୍ଣିମା, କଦଳୀ ପଟୁଆରେ ଦୀପ ଡଂଗା, ସୋଲ ତିଆରି ରଂଗିନ ଜାହାଜ ନଈ, ନାଳ, ପୋଖରୀ, ସମୁଦ୍ରରେ ନାଆ ଭସାଣି, ପୂର୍ଣ୍ଣିମାର ମଧୁର ସକାଳେ ହସ ହସ ପିଲା, ଧର୍ମପ୍ରାଣା ରମଣୀ, ଅତୀତର ଗୌରବମୟ ସ୍ମୃତିରେ ବିମୁଗ୍ଧ ନାରୀପୁରୁଷ, ଆନନ୍ଦମୁଖର କରିଦେଇଥାନ୍ତି ତଟତୀର ବେଳାଭୂମି। 'ଆକା ମା ଭୈ'ର ମଧୁଗୁଞ୍ଜନ ଭାସି ଆସୁଥାଏ କେଉଁ ବିସ୍ମୃତ ଅଦେଖା ଦିଗବଳୟରୁ। ଭାବୁକ ରସିକ ତରୁଣ-ତରୁଣୀ ପ୍ରାଣରେ ସ୍ପନ୍ଦନ ଖେଳାଇ ଦିଏ ଭଂଜ କବିଙ୍କ ରସାଳ ଲାବଣ୍ୟବତୀର ମଧୁରଛନ୍ଦ। "ବହିତ୍ର ଲାଗିଲା ଯାଇ ସିଂହଳ ଦ୍ୱୀପରେ", ଜାଭା ସୁମାତ୍ରା ଇଣ୍ଡୋନେସିଆର ଅଜଣା ଛବି ଭାସି ଆସେ ମାନସପଟକୁ। କି ଆନନ୍ଦ! ଇତିହାସକୁ ସ୍ମରଣ କରିବାରେ ଇତିହାସକୁ ମନେ ପକାଇ ଆଗେଇଯିବାର ପ୍ରୟାସରେ କି ଉଲ୍ଲାସ ପାରାଦ୍ୱୀପ ଗୋପାଳପୁର ଚାନ୍ଦବାଲି ଛବି ଭାସି

ଆସେ। ସତେ କ'ଣ ଅତୀତ ନୂତନ ବେଶଭୂଷାରେ ଆନନ୍ଦ ବିଭୋର ଗର୍ବିତ ଚିତ୍ତରେ ଫେରି ଆସିବ? କାହିଁକି ଯେ ଫେରି ନ ଆସିବ? ଦକ୍ଷକର୍ମୀ ଓ ଜ୍ଞାନୀ ଉଚ୍ଚାଭିଳାଷୀ ଓଡ଼ିଆ ଯୁବକ – ଯୁବତୀ ତ ଆଛି ଇଣ୍ଡୋନେସିଆ, ହଂକଙ୍ଗ, ମାଲେସିଆ, ହଲାଣ୍ଡ, ଇଂଲାଣ୍ଡ, ଆମେରିକା, କାନାଡ଼ା, ଆଫ୍ରିକାରେ। ଲଙ୍କା, ଲୁଣ, ପାନ ମସଲା, ପଥର କାମ ଯାଉଥିଲା ସୁଦୂର ଜାଭା ସୁମାତ୍ରା ଇଣ୍ଡୋନେସିଆକୁ ଏବେ ଲୁହାପଥର, ଆଲୁମିନିୟମ, ଓଡ଼ିଶୀ ନୃତ୍ୟକଳା, ଧର୍ମ, ସଂସ୍କୃତି, ଜ୍ଞାନ କାରିଗରୀବିଦ୍ୟା ଯାଉଛି ସାତ ସମୁଦ୍ର ତେର ନଈ ପାରି ହୋଇ ଆକାଶର ବକ୍ଷରେ ସୁଦୂର ଦେଶକୁ, ଜ୍ଞାନ ଅର୍ଜନ କରି, ଅର୍ଥ ଉପାର୍ଜନ କରି। ଦେଣନେଣର ବିସ୍ତୃତିରେ ବିଶ୍ୱ ହେଉଛି ସମୃଦ୍ଧ ଅସମାନ ଓ ଅସ୍ଥିର। ମୁଁ ଆସିଛି ମନର କୌତୁହଳ ସେଣ୍ଟାଇ ଅଭିଜ୍ଞତାରେ ଉତ୍‌ଫୁଲ ହେବାକୁ, ଟିଲ୍‌ବର୍ଗରେ ଦେଖୁଛି ପ୍ରସିଦ୍ଧ କେମ୍ପିସ୍ ମେଳା।

ଏହି ମେଳାଟି ପ୍ରତିବର୍ଷ ଜୁଲାଇ ମାସରେ ଅନୁଷ୍ଠିତ ହୁଏ। ନେଦରଲାଣ୍ଡ, ବେଲଜିୟମ୍, ଲକଜମବର୍ଗର ଅଧିବାସୀ ମାନେ ସାତ ଦିନ ବ୍ୟାପୀ ଏହି ମେଳା ଦେଖିବାକୁ ଆସନ୍ତି। ଧନୀ ବିଜ୍ଞାନସମୃଦ୍ଧ ଦେଶରେ ମେଳାର ରୂପ ହେଉଛି ସ୍ୱତନ୍ତ୍ର, ଅନନ୍ୟ। ଏମାନଙ୍କ ସଂସ୍ପର୍ଶରେ ଆସି ଆମ ଦେଶରେ ମଧ୍ୟ ଆଧୁନିକ କଳାକୌଶଳ ବିଜ୍ଞାନ ପ୍ରସୁତି ଆଶ୍ଚର୍ଯ୍ୟଜନକ ଖେଳ ଓ ପ୍ରଦର୍ଶନୀ ବି ସଂଘଟିତ ହେଲାଣି। ତେବେ ଟିଲବର୍ଗର ମେଳାରେ ବିରାଟ ଦୋଳି, ସୁନ୍ଦର କଳାତ୍ମକ କୃତ୍ରିମ ପ୍ରାସାଦ ଭିତରେ ନାନା କୌତୁକ, ବିରାଟ ଡାଇନୋସୋର ଗର୍ଭରେ ଅନ୍ଧକାର ଭୂତପ୍ରେତର ଡାହାଣୀଙ୍କ ଭୀତି ପ୍ରଦର୍ଶନ, ମଟର ସାଇକେଲରେ ଚକ୍ରାକାରେ ଘୂର୍ଣନ ନିକ୍ଷିତ ରୂପେ ବାଳକ ବାଳିକା କୈଶୋରୀ କି ଗୋରୀ ତରୁଣ ତରୁଣୀମାନଙ୍କୁ ଦେଉଥିବା ଆନନ୍ଦ। ଦୂରରୁ ଥାଇ ସେମାନଙ୍କ ଆନନ୍ଦ ଉଲ୍ଲାସର ରମଣୀୟ ମୁହଁ ଦେଖିଲୁ। ଛୋଟ ଝିଅଟି କେତେ ସାହସରେ ଦୋଳିରେ କସରତ କରୁଥାଏ ଦଉଡ଼ିକୁ ଧରି। ପିଲାବେଳର ସର୍କସ ଆଖି ଆଗରେ ଭାସି ଆସିଲା। କୁଆଡ଼େ ଗଲା, ସେ ଜେମିନୀ ସର୍କସ, ପିସି ସରକାର ଯାଦୁ। ନୂଆ ଢଂଗରେ କେତେ ଆଶ୍ଚର୍ଯ୍ୟଜନକ ରହସ୍ୟମୟ ଖେଳ କସରତ ବାହାରିଲାଣି, ସେଗୁଡ଼ିକ ଉପଭୋଗ କରିବାକୁ ନା ଅଛି ବୟସ ନା ଅଛି ମନ। ନାତିନାତୁଣୀଙ୍କ ଉପଭୋଗ ଲୀଳା ଦେଖି ସେହି ଲୀଳାରୁ ଅତୀତର ରୋମନ୍ଥନ କରି ଆନନ୍ଦ ପାଇବା ପର୍ଯ୍ୟାୟରେ ଆମେ, ସତେ କେତେ ମାୟାଛନ୍ନ ଏ ସୃଷ୍ଟି! ମାୟାର ପ୍ରତୀକ ଆମେ ବଂଚିଛୁ ମାୟାରେ, ଦୁଃଖ ସୁଖ ଭୋଗୁଛୁମାୟାରେ। ନିର୍ମଳ ନିଶ୍ଚିନ୍ତ ବେପରୁଆ ଶିଶୁ କିଶୋରୀଙ୍କ କଥା ନିଆରା, ସେମାନେ ପାଉଛନ୍ତି ବାସ୍ତବ ଆନନ୍ଦ, ନିରୋଳା ଅମଳିନ।

ମାର୍କ ଡୋନାଲ୍‌ଡ୍‌ର ଆଳୁଚିପ୍‌ସ ଖାଇ କଫି ପିଇ ଖୁସିମନରେ ଘରକୁ ଫେରିଲି। କଟକ ବାଲିଯାତ୍ରାର ଦହିବରା ଆଳୁଦମ୍ କଥା ମନେ ପଡ଼ିବାରୁ ପାଟିରୁ ଲାଳ ବହିଆସିଲା,

ବାଲି ମେଳାରେ ବାଦାମ ବିକୁଥିବା ଢେଙ୍କାନାଳର ଦଂପତି ସାମାନ୍ୟ ଟଙ୍କେ ଆଠଣା ପଇସା କ୍ରେତା ଠାରୁ ହାତକୁ ଆଣିଲାବେଳର ଛାତି ଫୁଲା ଆନନ୍ଦ ମନେ ପଡ଼ିଯାଉଥାଏ। ତଫାତ୍ କେଉଁଠି ? ଅମୀରର ସୁନା, ମୁକ୍ତା, ଉଚ୍ଚ ଭାସ୍କର୍ଯ୍ୟ, କଳାକାରୁକାର୍ଯ୍ୟପୂର୍ଣ୍ଣ ଦ୍ରବ୍ୟର କ୍ରେତା ଓ ବିକ୍ରେତାର ଆନନ୍ଦ ଓ ଗରିବ ଘଷାଟିର ବାଦାମ ମଟର ଆଖୁରସ ବିକିବା ଓ ସାଧାରଣ ମଣିଷଟି ତାହା ଉପଭୋଗ କରିବାର ଆନନ୍ଦ ମଧ୍ୟରେ ? ସମାଜ କଲ୍ୟାଣ ଅର୍ଥଶାସ୍ତ୍ରୀ ଅମର୍ତ୍ତ୍ୟସେନ୍‌ଙ୍କ କଥା ମନକୁ ବେଶ୍ ପାଉଥିଲା ସେଦିନ, ଆଜିବି।

## ଆମଷ୍ଟାରଡାମରେ ମନୋରଂଜନ

ହଲାଣ୍ଡର ରାଜଧାନୀ ଆମଷ୍ଟରଡ଼ାମ୍, ସମୁଦ୍ର କୂଳ, ହ୍ରଦ ଘେରିପାଖରେ ସୌଧ ମାଳା, ସପ୍ତଦଶ ଶତାବ୍ଦୀରୁ କ୍ରମବର୍ଦ୍ଧମାନ ବନ୍ଦର, ଏକଦା ବିଶ୍ୱରେ ବୃହତ୍ତମ ନୌକା ବାଣିଜ୍ୟ, କେନ୍ଦ୍ର, ଏବେ ମଧ୍ୟ ବଜାୟ ରଖିଛି ତାର ପ୍ରସିଦ୍ଧି। ଇୟୁରୋପ ଆମେରିକାର ବଡ଼ ବଡ଼ ସହରର ଆଧୁନିକତା ଓ ଲୋଭନୀୟ ଦୃଶ୍ୟ ଦେଖି ଦେଖି ବେଳେବେଳେ କ୍ଲାନ୍ତି ଆସିଯାଏ। ତେଣୁ ମନେ ହୁଏ ସହରର ସୁନାମ ଯେଉଁଥି ପାଇଁ ତାକୁ ଅବଲୋକନ କରିବାକୁ। ଶୁଣିଥିଲି ହଲାଣ୍ଡ, ପ୍ୟାରିସ୍, ସୁଇଜରଲ୍ୟାଣ୍ଡରେ ଚିତ୍ରକଳାର ଆଦର ପ୍ରବଳ। ପ୍ୟାରିସ୍‌ର ମିଉଜିୟମ୍ ଭିତରକୁ ଯାଇପାରି ନଥିଲି। ଆମ୍‌ଷ୍ଟାରଡ଼ାମ୍‌ରେ କଳା ମିଉଜିୟମ୍ ଦେଖିବାକୁ ଇଚ୍ଛା ପୋଷଣ କରିଥିଲି। ବୋହୂ, ନାତି ଓ ପୁଅ,ବୋହୂର ଜଣେ ଗବେଷିକା ମଇନା, ସ୍ତ୍ରୀ ସମୁଦୁଣୀ ସହ ଗଲି ପ୍ରସିଦ୍ଧ Vangogh Museum - ଦେଖିବାକୁ। ଜଣକା ୧୨.୫୦ ଇରୋ ଭାରତୀୟ ମୁଦ୍ରାରେ ପ୍ରାୟ ୮୦୦ ଟଙ୍କା ହେବ ପ୍ରବେଶ ମୂଲ୍ୟ। ଏହି ମିଉଜିୟମ୍‌ରେ ଭାନ୍‌ଗଗ୍‌ଙ୍କ ଜୀବନର ଆରମ୍ଭ ଓ ଶେଷ କାଳର ସମସ୍ତ ଚିତ୍ର ଦେଖିବାକୁ ପାଇଲୁଁ, ଜାପାନ, ପ୍ୟାରିସ୍ ଓ ହଲାଣ୍ଡ ରହଣି କାଳର ନାନାଚିତ୍ର, ସୁନ୍ଦର ଚମତ୍କାର। ଉନବିଂଶ ଶତାବ୍ଦୀର ଅଳ୍ପ କେତୋଟି ବିଖ୍ୟାତ ଚିତ୍ରକର, ପିକାଶୋ, ହେରିକାଙ୍କ ମଧ୍ୟରେ ଭାନ୍‌ଗଗ୍ ଅନ୍ୟତମ।

ଏହି ମିଉଜିୟମରେ Vangoghଙ୍କର ୨୦୦ଟି ଚିତ୍ର ଓ ଉନ୍ନବିଂଶ ଶତାବ୍ଦୀର ଅନ୍ୟ ପ୍ରସିଦ୍ଧ ଚିତ୍ରକାରଙ୍କ କୃତି ସୁରକ୍ଷିତ। ୧୮୫୩ ରେ ଜନ୍ମ ହୋଇ ସେ ୧୮୯୫ରେ ମୃତ୍ୟୁବରଣ କରିଥିଲେ। ଜୀବନ କାଳ ଭିତରେ ୮୦୦ ରଂଗିନ୍ ଚିତ୍ର ଓ ପ୍ରାୟ ୧୦୦୦ ଡ୍ରଇଂ କରୁଥିବା ଚିତ୍ରଶିଳ୍ପୀ, ଚିତ୍ରକାର ହେବାର ୧୦ବର୍ଷ ଭିତରେ ସୁନାମ ଅର୍ଜନ କରିଥିଲେ। ତାଙ୍କର ଦ୍ରୁତ ପ୍ରଗତିର ହୃଦୟସ୍ପର୍ଶୀ ବିବରଣୀ ସେ ତାଙ୍କର ଭାଇ ଓ ଏବଂ ଅନ୍ୟ ବଂଧୁବାନ୍ଧବ ଓ ପରିବାରର ଲୋକଙ୍କୁ ଲେଖିଥିବା ଚିଠିରେ ବର୍ଣ୍ଣନା କରାଯାଇଛି। ଚିଠି ମଧ୍ୟରୁ ଅଧିକାଂଶ ସଂରକ୍ଷିତ।



ଆମଷ୍ଟାରଡ଼ାମ୍‌ର କୁଇନ୍‌ସପେଲେସ୍

Vinunt Vangogh କୌଣସି ଆନୁଷ୍ଠାନିକ ଶିକ୍ଷା ନ ପାଇ, ନିଜେ ବହି ପଢ଼ି ଚିତ୍ର ମିଉଜିୟମ୍ ଦେଖି ବ୍ରସେଲ୍ ଓ ଆଣ୍ଟା ଓ୍ୟାର୍ପରେ କେତୋଟି ଚିତ୍ର ପ୍ରଶିକ୍ଷଣରେ ଯୋଗ ଦେଇ ନିଜର ନିଷ୍ଠା ଓ ଅଦମ୍ୟ ପ୍ରୟାସ ବଳରେ ଜଣେ ବିଖ୍ୟାତ ଚିତ୍ରକର ହୋଇପାରିଥିଲେ, ତାଙ୍କର କଳାକୃତି ଓ ନାଟକୀୟ ଜୀବନ କାହାଣୀ, ଅସଫଳ ପ୍ରେମ, ବାହ୍ୟ ସ୍ୱୀକୃତିର ଅଭାବ ରୋଗ ଆତ୍ମହତ୍ୟା ତାଙ୍କର ମୃତ୍ୟୁ ପରେ ତାଙ୍କୁ ଅଧିକ ଲୋକପ୍ରିୟ କରିଥିଲା ।

ଏହି ରୋମାଞ୍ଚକାରୀ କଳାକାରଙ୍କ ଜୀବନ ଥିଲା ବୈଚିତ୍ର୍ୟମୟ । ୨୭ ବର୍ଷ ବୟସରେ ସେ କଳାକାର ହେବାକୁ ମନସ୍ଥ କଲେ, ଏହା ପୂର୍ବରୁ ଧର୍ମ ପ୍ରଚାରକ ଓ ସ୍କୁଲ ଶିକ୍ଷକ ରୂପେ କାର୍ଯ୍ୟ କରୁଥିଲେ । ସେଥିରେ ଅସଫଳତା ତାଙ୍କୁ ଚିତ୍ର ଶିଳ୍ପୀରେ ପରିଣତ କଲା, ପ୍ରଥମେ ସେ ବ୍ରସେଲ ଓପରେ ଇଟେନ୍‌ରେ ବାପା ମାଆଙ୍କ ନିକଟରେ ରହୁଥିଲେ, ନିଜର ଜଣେ ସଂପର୍କୀୟ ଭାଇ ଏଣ୍ଟନ ମାଉଭଙ୍କ ଠାରୁ କଳା ସଂବନ୍ଧରେ କିଛି ଶିକ୍ଷା ପାଇଥିଲେ । କିଛିଦିନ ପରେ ଗୋଟିଏ ଝିଅର ମାଆ ଗର୍ଭବତୀ, ସିଏନହୁର୍ନିକ ସହ ଅବୈଧ ପ୍ରେମ ଯୋଗୁଁ ପରିବାର ଠାରୁ ଦୂରେଇ ଗଲେ । ୧୮୮୩ରେ ସିଏନ୍‌ଙ୍କ ସହ ସଂପର୍କ ଛିନ୍ନ ହେଲା, କିଛିଦିନ ପରେ ସେ ବାପା ମାଆଙ୍କ ନିକଟକୁ ବ୍ରବାଣ୍ଟ ପ୍ରଦେଶକୁ ଫେରି ଫରାସୀ ଚିତ୍ରଶିଳ୍ପୀ ଜେ.ଏଫ. ମିଲେଟ୍ (୧୮୧୪-୧୮୭୫) ଙ୍କ ଅନୁସରଣରେ, ଋଷୀ ଓ ବୁଣାକାର କାର୍ଯ୍ୟର ଚିତ୍ର କଲେ, କୃଷକ ପରିବାରର ସରଳ କର୍ମଠ ଜୀବନ, ଗ୍ରାମାଞ୍ଚଳର ରମଣୀୟ ଦୃଶ୍ୟପଟ ଅଂକନ କରି ସେ The Patato Gaters (April : 1885) ଛବିମାଳା ପ୍ରଦର୍ଶନ କରି ସୁଖ୍ୟାତି ଲାଭ କରିବାର ଆଶାପୋଷଣ କରିଥିଲେ । ଏହା ପରିବର୍ତ୍ତେ ସେ

କଠୋର ଭାବେ ସମାଲୋଚିତ ହୋଇଥିଲା। ତାଙ୍କ ଚିତ୍ରରେ ଥିଲା ପ୍ରକୃତ ଜୀବନର ଛବି, ବାସ୍ତବବାଦର ଆଭାସ, ରୋମାଞ୍ଚହୀନ।

୧୮୮୬ରୁ ୧୮୮୮ ପର୍ଯ୍ୟନ୍ତ ସେ ପ୍ୟାରିସ୍‌ରେ ରହିଥିଲେ। ପ୍ୟାରିସ୍‌ରେ ପ୍ଲାଷ୍ଟିକ୍ ଚିତ୍ର ଅଧ୍ୟୟନ କଲେ। ୨୭ଟି ଆତ୍ମଚିତ୍ର Selfpotrai କରିଥିଲେ। ଏଥି ସହ ଜାପାନୀ କାଠ କାମ ପ୍ରତି ସେ ଆକୃଷ୍ଟ ହୋଇଥିଲେ। ଜୀବନରେ ଶାନ୍ତି ଓ ଉଷ୍ଣତା ପାଇବା ପାଇଁ ସେ ପ୍ୟାରିସ୍ ସହର ଛାଡ଼ି ଦକ୍ଷିଣପ୍ରାନ୍ତର ଏକ ଗ୍ରାମରେ ବାସ କଲେ। ବଂଧୁ Paulgauguinଙ୍କ ସହ ମିଶି ଗୋଟିଏ ଚିତ୍ର ଶିଳ୍ପୀ କଲୋନୀ ସ୍ଥାପନ କରିବାକୁ ମନ ବଳାଇଥିଲେ, Gaugun ସପରିବାର ଗଗ୍‌ଙ୍କ ଘରକୁ ଆସିଥିଲେ। ମାତ୍ର ଡିସେମ୍ବର ୧୮୮୧ରେ ଏକ ନାଟକୀୟ ଢଂଗରେ ଦୁହିଁଙ୍କ ଭିତରେ କଳହ ସୃଷ୍ଟି ହେଲା ଏବଂ ଏକ ଅଜଣା ଆବେଗ ଓ ଝୁଙ୍କ୍‌ରେ ନିଜ କାନକୁ କାଟି ପକାଇଥିଲେ। ସେ ଏପିଲେପସି ମୂର୍ଚ୍ଛା ରୋଗରେ ପୀଡ଼ିତ ବୋଲି ଘୋଷଣା କଲେ। ବାରମ୍ବାର ରୋଗାକ୍ରାନ୍ତ ହେବାରୁ ଡାକ୍ତରଖାନାରେ ଭର୍ତ୍ତି ହେଲେ। ମାନସିକ ରୋଗୀ ରୂପେ ଚିକିତ୍ସିତ ହେଉଥିବା ଅବସ୍ଥାରେ ମଧ୍ୟ ସେ ହସ୍‌ପିଟାଲ ପରିବେଶର ଚିତ୍ର ଆଙ୍କୁଥିଲେ। ଏହି ସମୟରେ ସେ ତାଙ୍କର ଉଚ୍ଚ ପ୍ରଶଂସିତ ଚିତ୍ର Wheat field with a reapear and Iresis ଆଙ୍କିଥିଲେ। ୧୮୦୩ରେ Auvers ବାସ କରିବା ସମୟରେ ସୁନ୍ଦର ଛବି Wheat field with crows ଅଙ୍କନ କରି ସୁନାମ ଅର୍ଜନ କରିଥିଲେ। ଜଣେ ଚିତ୍ରଶିଳ୍ପୀ ଭାବେ ତାଙ୍କର ଖ୍ୟାତି ବଢ଼ି ଆସୁଥିଲାବେଳେ ସେ ଭାଇଥିଓ (Theo) ଏବଂ ତା ପରିବାର ଉପରେ ବୋଝ ହେଉଛି ଭାବି, ନିଜକୁ ଗୁଳିବଦ୍ଧ କରିଥିଲେ। ଦୁଇଦିନ ପରେ ତାଙ୍କର ପ୍ରାଣବାୟୁ ଉଡ଼ିଯାଇଥିଲା। ଅତି ଉଦାର ସାହାଯ୍ୟକାରୀ ଥିଓଙ୍କର ଦେହାବସାନ ଘଟିଥିଲା ଛ' ମାସ ପରେ।

ଭାନଗଗ୍‌ଙ୍କ ଜୀବନ ଏକ ଅଦ୍ଭୁତ ଉଦ୍ୟମଶୀଳ ଶିଳ୍ପୀର ଜୀବନ। ଆନୁଷ୍ଠାନିକ ଶିକ୍ଷା ତାଲିମ ନ ପାଇ ନିଜ ପ୍ରଚେଷ୍ଟାରେ ନିଜକୁ ଏକ ବିଶ୍ୱରେ ସୁପରିଚିତ ଶିଳ୍ପୀ ଭାବେ ପ୍ରତିଷ୍ଠା କରିବାର ବିରଳ ଉଦାହରଣ। ଏହି କାରଣରୁ ସମ୍ଭବତଃ ମୃତ୍ୟୁ ପରେ ତାଙ୍କର ଯଶର ପ୍ରସାର ଓ Snmtborm ଅଭିବୃଦ୍ଧି ଘଟିଥିଲା ଏବଂ ଇୟୁରୋପର ଚିତ୍ର ଶିଳ୍ପୀ ନବିସଙ୍କ ନିକଟରେ ସେ ପ୍ରେରଣାର ଉତ୍ସ ହୋଇ ରହିଛନ୍ତି।

## ମାଡ଼ାମ୍‌ତୁଷାଦ ହଲ୍-ମହମ୍‌ବତୀର ଯାଦୁଘର

ମହମବତୀରେ ଏତେ ସୁନ୍ଦର ମୂର୍ତ୍ତି ଯେ ତିଆରି କରାଯାଇପାରେ ତା ଏହି ମିଉଜିୟମ୍ ନ ଦେଖିଲେ ବିଶ୍ୱାସ କରି ହେବନି। ଯାଦୁଘରେ ପ୍ରବେଶ କରି ଲିଫ୍‌ଟରେ ଉପର ମହଲାକୁ ଉଠିବା ପୂର୍ବରୁ ଜଣେ ଫଟୋଗ୍ରାଫର ଆମକୁ ଠିଆ କରାଇଦେଲା ଗୋଟିଏ ପ୍ରତିମୂର୍ତ୍ତି

ନିକଟରେ । ମୁଁ ଭାବିଥିଲି ପ୍ରତିମୂର୍ତ୍ତିଟି ଜଣେ ଜୀବନ୍ତ ମଣିଷ, ପରେ ଜାଣିଲି ତାହା ମହମବତୀରେ ତିଆରି ବାରାକ ଓବାମାଙ୍କ ପ୍ରତିମୂର୍ତ୍ତି। ପରିଦର୍ଶକଙ୍କୁ ଠିଆ କରାଇ ଫଟୋ ଉଠାଇବେ, ଯାହାର ଫଟୋ ଉଠଇଥିବ ସେ କିଣିବାକୁ ଇଚ୍ଛା କଲେ ୧୦ ଇରୋ, ଦେଇ ନେଇପାରିବ। ଫଟୋଗ୍ରାଫଙ୍କର ଏହା ଏକ ବ୍ୟବସାୟ ପଦ୍ଧତି, ମୋର ଚିନ୍ତା ଥିଲା ଏତିକିରେ ସୀମିତ। ମୋ ସ୍ତ୍ରୀ ପରେ ମତ ଦେଲା ଆମେରିକାର ରାଷ୍ଟ୍ରପତି ସହ ଫଟୋ ଉଠାଇଥିବାର କୁହେଳିକା ସୃଷ୍ଟି କରିବା ଲାଭଜନକ । ଲିଫ୍‌ଟି କିଛି ତାଲା ଗଲା ପରେ ମହମବତୀରେ ତିଆରି ବିଭିନ୍ନ ରୂପ ସହ ବିଭିନ୍ନ ଫୁଲଫଳ, ଘାସ, ଗଛ, ପାହାଡ଼, ଜଂଗଲର ଅପୂର୍ବ ଦୃଶ୍ୟ ଦେଖିବାକୁ ପାଇଲୁ, ସ୍ତିମିତ ଆଲୋକ ଭିତରେ ସଂକୀର୍ଣ୍ଣ କୋଠରୀଗୁଡ଼ିକ ଭିତରେ ନାନା ଛବି ଚମତ୍କାର ଦିଶୁଥିଲା ସତ, ମାତ୍ର ଏକପ୍ରକାର Caustrophotia ରୋଗର ଶିକାର ହୋଇଥିବାରୁ ମୁଁ ଶ୍ୱାସରୁଦ୍ଧ ହେବା ଅନୁଭବ କରି ତଳକୁ ଓହ୍ଲାଇ ଆସିଲି, ଅସୁସ୍ଥତା ଅନୁଭବ କରୁଥିବା ଜାଣିପାରି ସ୍ତ୍ରୀ ମଧ୍ୟ ମୋ ସଂଗେ ଚାଲି ଆସିଲା। ବୋହୂ ନାତି ଅନ୍ୟମାନେ ଅନ୍ୟ ଅର୍ଦ୍ଧେକ ବୁଲି ବିଭିନ୍ନ ଦୃଶ୍ୟ ଦେଖିଲେ, ହଲାଣ୍ଡର ରାଣୀ, ପ୍ରଧାନମନ୍ତ୍ରୀ ଇଂଲାଣ୍ଡ ଆମେରିକାର ବିଶିଷ୍ଟ ପୁରାତନ ଓ ବର୍ତ୍ତମାନର ନେତାଙ୍କ ପ୍ରତିମୂର୍ତ୍ତି। ମହାତ୍ମାଗାନ୍ଧୀଙ୍କର ପ୍ରତିମୂର୍ତ୍ତି ଭାରତର ମହନୀୟତା ପ୍ରତିପାଦିତ କରୁଥିଲେ।

ଯାଦୁଘର ଦେଖି ସାରି ବଜାରରେ କିଛି ସୋଭେନିର କିଣି ଆମଷ୍ଟାରଡ଼ାମ୍ ଷ୍ଟେସନ୍‌କୁ ଫେରିଲୁ। ଷ୍ଟେସନ୍‌ଟି ବେଶ୍ ବଡ଼, ଷ୍ଟେସ୍‌ନ ଭିତରେ ମନୋରମ ଦୋକାନ ରେଷ୍ଟୁରାଣ୍ଟ ଦୋତାଲା ଟ୍ରେନ୍ ଅଛି। ଆମଷ୍ଟାରଡ଼ାମ୍‌ରେ ଟ୍ରାମ ଚଳାଚଳ ଅଛି। ଟାଙ୍ଗାଗାଡ଼ିର ଦୃଶ୍ୟ ମୋ ମନରେ ବିସ୍ମୟ ଜାତ କଲା, ଅତୀତ ଦିନର ମଧୁର ସ୍ମୃତି ଜାଗି ଉଠିଲା। କଲିକତାରେ ଛାତ୍ର ଜୀବନରେ ଟ୍ରାମ୍ ଚଢ଼ି କଲେଜ ଯିବା ପାଇଁ ଧାଇଁବାର ଛବି, ଅସାବଧାନତା ଯୋଗୁ ଟ୍ରାମ୍‌ରୁ ପଡ଼ିଯିବାରୁ ଅଳ୍ପକେ ରକ୍ଷା ପାଇବା ଘଟଣା, ଷାଠିଏ ଦଶକରେ ବାପା ମାଆଙ୍କ ସହ ଦିଲ୍ଲୀ ମଥୁରାରେ ଟାଙ୍ଗା ଚଢ଼ି ଭ୍ରମଣ କରିବାର ରୋମାଞ୍ଚ, ଲକ୍ଷ୍ନୌ ସହରରେ ବାଦସାହା ଠାଣିରେ ବେଗମ ସହ ବୁଲିବାର ଆନନ୍ଦ ସବୁ ଆଖି ଆଗରେ ଭାସି ଉଠିଲା। ଫେରିଯିବାକୁ ହେବ ଟିଲବର୍ଗ, ଟ୍ରେନ୍ ଧରିବାକୁ ତରତର। ଅତି ଦ୍ରୁତଗାମୀ ଟ୍ରେନ୍, ଯନ୍ତ୍ର ସାହାଯ୍ୟରେ ଟ୍ରେନ୍ ଦ୍ୱାର ଖୋଲିଯାଏ, ନିର୍ଦ୍ଦିଷ୍ଟ ସମୟ ପରେ ଆପେ ଆପେ ବନ୍ଦ ହୋଇଯାଏ। ଏହି ସମୟ ଭିତରେ ସାଂଗ ସାଥୀ ସହ ଚଢ଼ିବାକୁ ଓହ୍ଲାଇବାକୁ ହେବ। ଚଢ଼ିବା ଓହ୍ଲାଇବାରେ କିଛି ଅସୁବିଧା ଭୋଗକରି ନଥିଲୁଁ। କଲିକତା ଦିଲ୍ଲୀ ଷ୍ଟେସନ୍ ପରି ଯାତ୍ରୀ ଭିଡ଼ ନଥାଏ। ଟ୍ରେନ୍ ଗୁଡ଼ିକ ଦୋତାଲା, ଦୋତାଲା ଉପରେ ଚଢ଼ି ପାଖ ହ୍ରଦରେ ଶହ ଶହ ଜାହାଜ ଚାଲୁଥିବାର କିମ୍ବା ରହିଥିବାର ମୁଗ୍ଧକର ଦୃଶ୍ୟ ଦେଖିଲୁ। ଆମ୍ଷ୍ଟାରଡ଼ାମ ବନ୍ଦର ନିକଟରୁ ବାହାରି ଥିବା ହ୍ରଦଟି ପୋତାଶ୍ରୟ ରୂପେ କାମ କରେ। ନୌବାଣିଜ୍ୟରେ ବିଶ୍ୱ ବିଖ୍ୟାତ ଡଚବାସୀଙ୍କ କୃତିର ପରାକାଷ୍ଠାର ପ୍ରତୀକ ଜଳଜାହାଜ।

# କର୍ମଯୋଗାଣ ଓ ଜନ କଲ୍ୟାଣ

"We believe, you must give our people a basic wage and let them choose whether or not to work"

- Gereit Jen W.

ଆହାଃ, ଜୀବନଟା ଯଦି ଲମ୍ବା ଛୁଟି ହୁଏ, କାମ ନାହିଁ, ଚିନ୍ତା ନାହିଁ, ଇସ୍କୁଲ ଯିବା ନାହିଁ, ଟିଉସନ୍ ନାହିଁ, ଶୋଇ ଶୋଇ ସକାଳ ସୂର୍ଯ୍ୟର ନାଲିକିରଣକୁ ଉପଭୋଗ କରନ୍ତ, ପକ୍ଷୀର କାକଳି, ଶେଫାଳିର ଗନ୍ଧ ଉପଭୋଗ କରନ୍ତ, ଆଉ ଭାଗ୍ୟଥିଲେ, ସୁନ୍ଦରୀ ତରୁଣୀର ମହମହ ମୁଖବାସ ଆଘ୍ରାଣ କରନ୍ତ, ଦେହର ବ୍ୟଥା ମନର ବ୍ୟଥା, ଯଦି କିଛି ଥାଏ, କୋମଳାଙ୍ଗୀର ଉଷ୍ମ ସ୍ପର୍ଶରେ ଉଭେଇ ଯାଆନ୍ତା, କି ସୁନ୍ଦର ହୁଅନ୍ତା ନାହିଁ ?

ହଲାଣ୍ଡର କାମ ଓ ଜନ କଲ୍ୟାଣ ବ୍ୟବସ୍ଥା ଅଧ୍ୟୟନ କଲାବେଳେ ମୋ ଭଳି ଜଣେ ଭାରତୀୟ ମନରେ ଏହି ଚିନ୍ତା ଜାଗ୍ରତ ହୁଏ। ବିସ୍ମିତ ହୁଏ, ଭାବି ଭାବି, ଅର୍ଥଶାସ୍ତ୍ରୀ, ଶାସକ ପ୍ରଶାସକଙ୍କ ମଧ୍ୟରେ କେତେ ଯୁକ୍ତିତର୍କ ସର୍ବନିମ୍ନ ମୌଳିକ ମଜୁରି ନିର୍ଦ୍ଧାରଣକୁ କେନ୍ଦ୍ର କରି, କାମ ନାହିଁ, ତ ମଜୁରି ନାହିଁ। ପାଇଲେ ଖାଅ, ନୋହିଲେ ପେଟରେ ଓଦା କନା ଦେଇ ଶୁଅ। ଏହି ଅବସ୍ଥାରୁ ଆମେ କେତେଦୂର ନିଷ୍କ୍ରାନ୍ତ ହୋଇଛୁ ?

ଡଚ କଥା ଭାବତ, କେତେ ଚତୁରତା ସହ କାମ ଓ ସମାଜମଙ୍ଗଳ, ବ୍ୟକ୍ତିଗତ ଅଧିକାର ଓ ସାମାଜିକ ନ୍ୟାୟକୁ ଏକ ସଂଗେ ଯୋଡ଼ି ଦେଇଛନ୍ତି ! ହତଭାଗାମାନଙ୍କ ମଧ୍ୟରେ ସହସ୍ର କୋଟି ମୁଦ୍ରା ବାଣ୍ଟି ଦେଇ ଡଚ୍‌ମାନେ ଗର୍ବ ଓ ଆନନ୍ଦ ଅନୁଭବ କରନ୍ତି।

ଡଚ ସମାଜ ସହିତ ମିଶିଯିବାକୁ ହେଲେ ତୁମକୁ କିଛିନା କିଛି ଜାତୀୟ ସାହାଯ୍ୟ Uitkering or out caring ରେ ଅଂଶଗ୍ରହଣ କରିବାକୁ ହେବ। ସାମାଜିକ ସାହାଯ୍ୟ ପାଇବା ପାଇଁ ଦରଖାସ୍ତ କରିବା ଓ ତାର ସୁବିଧା ନେବା ଆଦୌ ନିନ୍ଦନୀୟ ନୁହେଁ। ସମାଜ ମଂଗଳ ବ୍ୟବସ୍ଥାର ସୁବିଧା ନାନା ପ୍ରକାର,

- ଏହା କାମ କରିବାର ପ୍ରବୃତ୍ତି ନଷ୍ଟ କରିଦିଏ, ଡଚ ଯୁବକଙ୍କ ପାଇଁ ଏହା ଉତ୍ତମ ଶିକ୍ଷା।
- ଡଚ ସରକାରଙ୍କୁ ପୃଥିବୀର ସର୍ବାଧିକ ଟିକସ ହାର ବସାଇବାକୁ ସୁଯୋଗ ଦିଏ।
- ଏହା ହଜାର ହଜାର ବିଦେଶୀ ତୁର୍କୀ ଓ ମରୋକାନଙ୍କୁ ଆକର୍ଷି ଆଣେ।
- ଡଚ ବହୁଜାତିର ସମାଜ ବୋଲି ଦାବି କରିଥାଏ ଏହି କାରଣରୁ।
- ଏହା ଅନେକ ଡଚଙ୍କୁ ବିଦେଶରେ ଜୀବନକଟାଇବାକୁ ପ୍ରେରଣା ଦିଏ।
- ଏହା ନାନାପ୍ରକାର ଅସାମର୍ଥ୍ୟକୁ ସହନୀୟ କରେ।

ଗୋଟିଏ ସମୟରେ ହଲାଣ୍ଡରେ ପ୍ରାୟ ଏକ ଚତୁର୍ଥାଂଶ ଲୋକ ସମାଜ କଲ୍ୟାଣ ବ୍ୟବସ୍ଥାରେ ଅନ୍ତର୍ଭୁକ୍ତ ଥିଲେ, ଶାରୀରିକ ଅକ୍ଷମତା ଯୋଗୁ ପ୍ରାୟ ୧୦ ପ୍ରତିଶତ ଲୋକ ଦରମାର ୭୦-୧୦୦ ପ୍ରତିଶତ ଭତ୍ତା ପାଆନ୍ତି, ୨୫-୩୫ ବର୍ଷର ସ୍ତ୍ରୀଲୋକ ମଧ୍ୟରୁ ପ୍ରାୟ ଏକ ଚତୁର୍ଥାଂଶ ସନ୍ତାନ ଜନ୍ମ କାନୀନ ଭତ୍ତା ଉପଭୋଗ କରିଥାନ୍ତି। ଗୋଟିଏ ଗୋଟିଏ ସହରରେ ଲୋକମାନଙ୍କୁ ଜଣାଇବା ପାଇଁ ସମାଜ ମଂଗଳ ସଂପର୍କିତ ପତ୍ରିକା ପ୍ରକାଶ ପାଏ।

ସରକାରଙ୍କ ଠାରୁ ଏତେ ସୁବିଧା ପାଇ ମଧ କେତେକ ଅଧିକ ସୁବିଧା ଦାବି କରନ୍ତି, ଆଉ କେତେକ ଏହାର ବିରୋଧ କରି କହନ୍ତି - ଏହା ଲୋକଙ୍କୁ ପର ନିର୍ଭରଶୀଳ କରିଦିଏ। ଏହା ଏକପ୍ରକାର ପୁଞ୍ଜିବାଦୀ ଦାସତ୍ୱ ପ୍ରଥା Capitalist slave making system.

କେତେକ ତ୍ରୁଟି ସତ୍ତ୍ୱେ ସାମାଜିକ ନିରାପତ୍ତା ପାଇଁ ପ୍ରକୃତରେ ଯୋଗ୍ୟ ଲୋକ, ଚିରରୋଗୀ, ବୃଦ୍ଧ ଓ ଶିଶୁମାନଙ୍କୁ ଅଧିକ ମାନବିକତାର ସହ ସାହାଯ୍ୟ ଯୋଗାଇଥାଏ।

ସରକାର ଅସ୍ୱୀକାର କରୁଥିଲେ ହେଁ ହଲାଣ୍ଡର ପ୍ରାୟ ଏକ ଲକ୍ଷ ଲୋକ ବାସଗୃହହୀନ ଅଛନ୍ତି। କେତେକ ସମାଜମଙ୍ଗଳ କେନ୍ଦ୍ର ଏମାନଙ୍କ ଥଇଥାନ ପାଇଁ ଅର୍ଥ ସଂଗ୍ରହ କରିଥାନ୍ତି। ଗବେଷଣାରୁ ଜଣାଯାଏ ଯେ ସମାଜ କଲ୍ୟାଣ ବ୍ୟବସ୍ଥା ସତ୍ତ୍ୱେ ଚୋରି, ବେଶ୍ୟାବୃତ୍ତି ଓ ପୁରୁଣା ଖବରକାଗଜ ବିକି ଜଣେ ଜଣେ ୫୫୦ରୁ ୧୭୨୫ ଇରୋ ଅର୍ଥାତ୍ ଭାରତୀୟ ମୁଦ୍ରାରେ ଟ ୪୦୦୦ରୁ ୧୨୦୦୦ ପର୍ଯ୍ୟନ୍ତ ମାସିକ ଆୟ କରନ୍ତି।

## କାମ କରିବାର ପନ୍ଥା

ସନ୍ତୋଷଜନକ ବେକାରଭତ୍ତା ଥିଲେ ହେଁ ଅନେକ ସମର୍ଥ ଲୋକ ମନଲାଖି କାମଟେ ପାଇବାକୁ ଚାହାନ୍ତି। ସେଥିପାଇଁ ତୁମକୁ ଯୋଗ୍ୟତା ସାଟିଫିକେଟ୍ ଦେଖାଇବାକୁ ହେବ, ଡଚଭାଷା ଜାଣିଥିବ, ସାକ୍ଷାତ୍କାର ଦେବାକୁ ହେବ। ଚାକର ମିଳିବାର ସମ୍ଭାବନା ଯଥେଷ୍ଟ। ଶାରୀରିକ ଶ୍ରମ ପାଇଁ ଲୋକ ଅଭାବ, ଇୟୁରୋପୀୟ ଲୋକେ ଏ କାମ କରିବାକୁ ଏତେ ଆଗ୍ରହୀ ହେଉ ନଥିବାରୁ ଏସିଆ, ଆଫ୍ରିକାର ବହୁ ଲୋକ ଏ ସବୁ କାମ କରିଥାନ୍ତି। ଥରେ ଅଫିସ୍, କଂପାନୀ ବା ଶିକ୍ଷାନୁଷ୍ଠାନରେ କର୍ମଚାରୀ ଭାବେ ଯୋଗ ଦେଲେ ତିନିମାସ ପର୍ଯ୍ୟନ୍ତ ତୁମ କାର୍ଯ୍ୟ ପର୍ଯ୍ୟବେକ୍ଷଣ କରାଯାଏ। ଏହି ସମୟରେ ନବାଗତକୁ ସହକର୍ମୀମାନେ ସାହାଯ୍ୟ କରିନଥାନ୍ତି, ତିନିମାସ ପରେ ତୁମ ଚାକିରିରେ କିଛି ଅନିଶ୍ଚିତତା ନଥାଏ। ଭଲ କାମ କଲେ କଂପାନୀ ଅଧିକ ସୁବିଧା ଦିଏ, ଗୋଟିଏ ମୌଳିକ ନିୟମ ହେଲା ଅନ୍ୟ ସହିତ ନିଜର ଦରମା କଥା ଆଲୋଚନା କରନା। ଏହା ଅସୁନ୍ଦର, ଅମାନୁଷିକ, ଅସମାନତାର ସୂଚକ।

## କାମ ତଦାରକ ଓ ପ୍ରଭୁତ୍ୱ ପ୍ରକାଶ

ବିଦେଶାଗତ କର୍ମଚାରୀମାନେ ଡଚ ଉଚ୍ଚକର୍ତ୍ତୃପକ୍ଷ ଓ ଅଫିସରଙ୍କୁ ବେଶ ଭଦ୍ର ଓ ବଂଧୁତ୍ୱପୂର୍ଣ୍ଣ ବୋଲି ଭାବିଥାନ୍ତି, ମାତ୍ର ଡଚ କର୍ମଚାରୀମାନଙ୍କ ଅନୁଭବ ଭିନ୍ନ ପ୍ରକାରର। ପ୍ରାୟ ୪୦ ପ୍ରତିଶତ କର୍ମଚାରୀଙ୍କ ମତରେ ଉପର ଅଫିସରମାନେ ବଂଧୁତ୍ୱପୂର୍ଣ୍ଣ ବ୍ୟବହାର କରୁ ନାହାନ୍ତି, ବିଶେଷତଃ ନୂଆ ହାକିମ ମାନେ ଏକଛତ୍ରବାଦୀ ମନୋଭାବ ପୋଷଣ କରୁଛନ୍ତି। ଏହା ସତ ଯେ କଂପାନୀରେ ଅଭିବୃଦ୍ଧି ଘଟୁଥିଲାବେଳେ ନୂତନତ୍ୱର ପ୍ରବର୍ତ୍ତନ ବିଚାରବନ୍ତ ପରିଚାଳକଙ୍କ ଦ୍ୱାରା କରାଯାଇଥାଏ। ପ୍ରତି ସ୍ତରରେ ଲୋକଙ୍କ ମତାମତ ନିଆଯାଇ ନଥାଏ।

କାମରୁ ଛଟେଇ କରିବାକୁ ହେଲେ ସଂପୃକ୍ତ କର୍ତ୍ତୃପକ୍ଷ ୩ଟି ନୋଟିସ୍ ଦେବେ। କର୍ମଚାରୀଟି ସଂଶୋଧିତ କରି ନ ପାରିଲେ କାମରୁ ବରଖାସ୍ତ ହେବ। ହେଲେ, ବେକାର ଭତ୍ତା ପାଇବ। ବେଳେବେଳେ କର୍ମଚାରୀଟିଏ କାମରେ ଅଶାନ୍ତି ପାଇଲେ, କ୍ଳାନ୍ତି ଅନୁଭବ କଲେ ଉପଶମ ପାଇଁ ବିଶ୍ରାମ ନେବ ଏବଂ Burn out ଭତ୍ତା ପାଇବ।

ଡଚ ଶ୍ରମିକଙ୍କୁ ବର୍ଷକୁ ୭ ଦିନ ଜାତୀୟ ଛୁଟି ଦିବସ, ୧୦ ଦିନ Family leave days ଓ ୨୦-୨୫ ଦିନ ବିଶ୍ରାମ ଦିବସ କଂପାନୀ ସୁବିଧାନୁଯାୟ ଦେଇଥାଏ, ଏଥିପାଇଁ ବେଶ କିଛି ଅଂଶ ଶ୍ରମିକର ଦରମାରୁ ବର୍ଷକ ଭିତରେ କଟାଯାଇଥାଏ, ମାଲିକ କିଛି ବହନ କରିଥାଏ। ଶ୍ରମିକ ଟି ପୂରା ଦରମା ପାଏ ଛୁଟିରେ।

ବଡ଼ ଚତୁରତାର ସହ ଡଚ ମାନେ ଚୁକ୍ତିସ୍ୱାକ୍ଷର କରିଥାନ୍ତି। କଂପାନୀର ପ୍ରସାର କ୍ଷେତ୍ରରେ ଏମାନଙ୍କର କୌଶଳ ଅନୁକରଣୀୟ।

## ଅସ୍ମିତାର ସଂକଟ

'In the past we've always been good we protected Jews during World War II and because we were good we rescued them. We are still good ---- what we have therefore is an arrogance of goodness and we are going to stick to this policy, no matter what. Prof. W.C.M. Klijn.

କେତେ ଦଶନ୍ଧି ଧରି ଡଚଙ୍କ ସ୍ୱତନ୍ତତା ମିଳାଇ ଯିବାରେ ଲାଗିଛି। ଦୂର କଲୋନୀର ଲୋକଙ୍କୁ, ଅନ୍ୟ ଦେଶରୁ, ଶସ୍ତା ଶ୍ରମିକଙ୍କୁ, ଆଣିବା ଏବଂ ଅନ୍ୟ ୟୁରୋପୀୟଙ୍କୁ ଗ୍ରହଣ କରିବା ହେତୁ ସ୍ୱାତନ୍ତ୍ୟ ହ୍ରାସ ପାଇଛି।

ଅନ୍ୟ ଦେଶରେ ଆଇନ ଦ୍ୱାରା ନିଷିଦ୍ଧ କାର୍ଯ୍ୟ ବ୍ୟତୀତ ଅନ୍ୟ ସବୁ କାମ ଜଣେ ବ୍ୟକ୍ତି ମୁକ୍ତ ଭାବରେ କରିପାରେ। ମାତ୍ର ହଲାଣ୍ଡରେ କେବଳ ଆଇନାନୁମୋଦିତ କାର୍ଯ୍ୟ ମୁକ୍ତ ଭାବରେ କରିହେବ। ହଲାଣ୍ଡରେ Regal (rule) ଶବ୍ଦଟି ଅତି ସୁପରିଚିତ। ହଲାଣ୍ଡ ଭଳି ଦେଶର ଯେଉଁଠି ନାନାପ୍ରକାର ସ୍ୱାଧୀନତା ଦିଆଯାଇଛି, ସମଲିଂଗୀ କାମ ବିବାହ ଇତ୍ୟାଦି ସେ ଦେଶରେ ଆଇନର ଛାପ ବିଦେଶୀ ପରିବ୍ରାଜକଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରେ, ଏଠାରେ ଜାତୀୟ, ପ୍ରାଦେଶିକ, ଆଞ୍ଚଳିକ ନାନା ନିୟମ ଅଛି। ଏହି ନିୟମ ଭିତରେ ତୁମେ ମୁକ୍ତ ପକ୍ଷୀ। ନିୟମଗୁଡ଼ିକ ନମନୀୟ ଏବଂ ସହଜରେ ପରିବର୍ତ୍ତନ କରାଯାଇଥାଏ।

ହଲାଣ୍ଡରେ ଏକ ତୃତୀୟାଂଶ ଲୋକ ନିଜକୁ ନିରାପଦ ଭାବନ୍ତି ନାହିଁ। ଅପରାଧ ସ୍ତର ବଢ଼ିଚାଲିଛି। ତେବେ ଦୋଷୀ ଦଣ୍ଡସ୍ୱରୂପ ବଂଦୀ ଜୀବନ ଯାପନ କରିବାରେ ବିଶେଷ ଯନ୍ତ୍ରଣା ଭୋଗେ ନାହିଁ, ତା ପାଇଁ ଅଛି ଟି.ଭି. ଭିଡ଼ିଓ ଗେମସ୍ ଇତ୍ୟାଦି। କେତେକ ଜେଲରେ ବିଛଣା ସହ sex cell ଅଛି। ଜେଲ ଭିତରେ ନିଜ ପୋଷାକ ପିନ୍ଧି ନିଜେ ରୋଷେଇ କରି ଖାଇବାର ସ୍ୱାଧୀନତା ମଧ୍ୟ ଥାଏ।

## ଜାତିହୀନ - ଜାତି

ଡଚମାନଙ୍କ ମନରେ ଅନ୍ୟ ଜାତି ପ୍ରତି ଘୃଣା ନଥିଲା, ଏବେ ମଧ୍ୟ ବିଦ୍ୱେଷର ମାତ୍ରା ଖୁବ୍ କମ୍ - କିନ୍ତୁ ୧୯୬୦ରେ ତୁର୍କୀ ଓ ମରୋକୋରୁ ଶସ୍ତା ଶ୍ରମିକଙ୍କ ପ୍ରବେଶ, ୧୯୭୫ରେ ସୁରିନାମ ସ୍ୱାଧୀନ ହେଲାପରେ ସୁରିନାମଙ୍କ ଆଗମନ ପରିସ୍ଥିତିରେ କିଛି ପରିବର୍ତ୍ତନ ଆଣିଛି। ବହୁସଂଖ୍ୟାରେ ଆସୁଥିବା ସୁରିନାମଙ୍କୁ ସ୍ୱାଗତ କରାଗଲା ସତ ତେବେ ସେମାନେ ଡଚଲୋକଙ୍କ ସହ ନ ମିଶିବାକୁ ଇଙ୍ଗିତ୍ ଦିଆଗଲା। ଉପନିବେଶରୁ ବହୁ ଲୋକଙ୍କ ଆଗମନ ପ୍ରଥମେ ପ୍ରଥମେ ବିଦ୍ୱେଷ ଓ ଘୃଣା ସୃଷ୍ଟି କରିଥିଲା। ମାତ୍ର ସମୟ କ୍ରମେ ବର୍ଣ୍ଣଭେଦ ଭାବର ତୀବ୍ରତା ହ୍ରାସ ପାଇଲା। କଳା ଲୋକଙ୍କୁ Immigrants foreigners, Fellow citizens, minorities New Dutch କୁହାଗଲା। ଡଚମାନେ ନୂଆ ଶବ୍ଦ ସୃଷ୍ଟି କଲେ ଯଥା Moriccan Cunt, Goat Fuckers Immigration ଶବ୍ଦଟି ୨୦୦୪ ପରେ ବ୍ୟବହୃତ ହେଲା ନାହିଁ। ଜନୈକ Anti-Immigration ନେତା Pim Fortuyn ଓ ଫିଲ୍ମ ନିର୍ମାତା ଥିଓଭାନ୍‌ଗସ୍‌ଙ୍କ ହତ୍ୟା ମନରେ ସହନଶୀଳତା ଓ ପ୍ରତ୍ୟୟ ଭାବ ସୃଷ୍ଟି କରିଛି।

ବର୍ଣ୍ଣ ବିଭେଦ ଥାଉ କି ନ ଥାଉ ଡଚମାନଙ୍କର ଜର୍ମାନଙ୍କ ପ୍ରତି ଘୃଣାର ଅବସାନ ନାହିଁ। ଏହି ଘୃଣାର କାରଣ ବୟସ୍କ ଲୋକଙ୍କ ନିକଟରେ – ଦ୍ୱିତୀୟ ମହାଯୁଦ୍ଧରେ ଡଚ ଓ ଜିଉଙ୍କ ଉପରେ ନାଜିଙ୍କ ଆକ୍ରମଣ ଏବଂ ଡଚସାଇକେଲ ଚୋରି କରିନେଇ ସେହି

ଲୁହାରେ ଅସ୍ତ୍ର ନିର୍ମାଣ, ଯୁବଗୋଷ୍ଠୀଙ୍କ ନିକଟରେ ୧୯୭୪ରେ ହଲାଣ୍ଡକୁ ଜର୍ମାନୀ ରେଫରୀଙ୍କ ତ୍ରୁଟି ହେତୁ ସସର ପ୍ରତିଯୋଗିତାରେ ହଲାଣ୍ଡ World cup ହରାଇବ ଘୃଣାର କାରଣ ।

## ନେଦରଲାଣ୍ଡର ଶିଶୁ

ପାରିବାରିକ ଜୀବନରେ ଆନନ୍ଦର ଉତ୍ସ ଶିଶୁ, ସରଳ, ନିର୍ମଳ ଓ ଶାନ୍ତଶିଷ୍ଟ ଦୁଷ୍ଟର ଶିଶୁ ସୁଲଭ ଲୀଳା କାହାକୁ ଆନନ୍ଦ ନ ଦିଏ ? ପାଶ୍ଚାତ୍ୟ ପ୍ରାଚ୍ୟ, ବିବାହ-ଛାଡ଼ପତ୍ର ନିର୍ବିଶେଷରେ ଶିଶୁ ପ୍ରତି ସ୍ନେହ ଶ୍ରଦ୍ଧା, ସବୁ ମଣିଷଙ୍କ ଠାରେ ଜନ୍ମଗତ ଗୁଣ । ଶିକ୍ଷାସଂସ୍କୃତିର ପ୍ରସାର ସଂଗେ ସମାଜ ଓ ଜାତିର ଅସ୍ମିତା ବୃଦ୍ଧି ସଂଗେ ଶିଶୁ ପ୍ରତି ଯତ୍ନ ସବୁ ଦେଶରେ ବୃଦ୍ଧି ପାଇଛି । ଯେଉଁ ଦେଶରେ ସାମାଜିକ ନିରାପତ୍ତା ଅଧିକ ସେ ଦେଶର ଶିଶୁଙ୍କ ପ୍ରତି ଯତ୍ନ ସର୍ବାଧିକ ହେବା ସ୍ୱାଭାବିକ । ପାଶ୍ଚାତ୍ୟ ଦେଶରେ ଶିଶୁମାନଙ୍କୁ କଠୋର ଶାସନ ମଧ୍ୟରେ ବଢ଼େଇବାକୁ ପସନ୍ଦ କରନ୍ତି ନାହିଁ, ତେଣୁ ଶିଶୁଙ୍କୁ ମାଡ଼ ଦେବା ଏକ ଦଣ୍ଡନୀୟ ଅପରାଧ, ହଲାଣ୍ଡରେ ସମ୍ଭବତଃ ତାହା । ବ୍ୟକ୍ତି ସ୍ୱାଧୀନତା ସହ ଶିଶୁର ଅବାଧ ପ୍ରାକୃତିକ ବିକାଶ ବୋଧ ହୁଏ ତାଳ ଦେଇ ଚାଲିଛି । ତେଣୁ Lana Dese Delfini ନାମକ ଜୈନକ ଡଚ କଳାର ଐତିହାସିକ କହନ୍ତି "In 20 years I have never seen (Dutch) child physically punished."

ଶିଶୁର ବ୍ୟବହାରକୁ କେହି ପ୍ରାଣବନ୍ତ ପ୍ରଶଂସନୀୟ କହିପାରେ, ଆଉ କାହାଠାରେ ବିଶୃଙ୍ଖଳ ଓ ଅସହନୀୟ ହୋଇପାରେ । ସପ୍ତଦଶ ଶତାବ୍ଦୀରେ ପରିବ୍ରାଜକମାନେ ଡଚ ବାପା ମାଆଙ୍କର ସନ୍ତାନ ପ୍ରତି ଅତ୍ୟଧିକ ଆସକ୍ତି ଦେଖି ବିସ୍ମିତ ହୋଇଥିଲେ ଏବଂ ଏହା ସେମାନଙ୍କୁ ନଷ୍ଟ କରିଦେଉଛି ବୋଲି ଭାବୁଥିଲେ ।

୧୬୫୬ରେ Jan Van Beverwijuc ମତ ଦେଇଥିଲେ "ଲାଳନପାଳନ ଓ ଶିକ୍ଷା ଦାନ କ୍ଷେତ୍ରରେ ଶିଶୁମାନଙ୍କ ଉପରେ ଅଧିକ ନିୟନ୍ତ୍ରଣ ଉଚିତ ନୁହେଁ, ସେମାନଙ୍କ ଶିଶୁ ସୁଲଭ ବ୍ୟବହାରକୁ ବାଧା ଦେବା ଅନୁଚିତ୍ ସେମାନଙ୍କ ନରମ ପ୍ରକୃତି ଉପରେ ଅଧିକ ଚାପ ଆମେ ଦେଉ ନା, ଏବଂ ଅପ୍ରସ୍ତୁତ ଜମିରେ ଅସମୟରେ ମଂଜି ବୁଣୁନା ।'

ଗର୍ଭଧାରଣ ସମୟରୁ ପିଲାଜନ୍ମ ହେବା ପର୍ଯ୍ୟନ୍ତ ଅଗ୍ରଗତି ଉଲ୍ଲେଖନୀୟ । ଡାକ୍ତର ଧାଈ ତାଲିମପ୍ରାପ୍ତ ହୋଇଥାନ୍ତି । ପ୍ରାକୃତିକ ଉପାୟରେ ଶିଶୁର ଜନ୍ମ ବ୍ୟବସ୍ଥା କରିବାକୁ ଓ ନିଜ ଘରେ ପିଲା ଜନ୍ମ ହେବାକୁ ପସନ୍ଦ କରନ୍ତି । ପିଲାଟି ଜନ୍ମ ହେଲେ ବିଜ୍ଞାପନ ଦିଆଯାଏ । ନୂଆ ଶିଶୁଟିର ଆବିର୍ଭାବ ହୋଇଛି, ସମସ୍ତ ଅନୁଦାନ ସ୍ୱାଗତଯୋଗ୍ୟ, ଖେଳନା, ପଶୁ ଓ

ରଂଗ ସାହାଯ୍ୟର ଜଣେଇ ଦିଆଯାଏ ଶିଶୁ ଜନ୍ମକଥା, ଦୁଇ ତିନି ସପ୍ତାହ ଧରି ବଂଧୁବାନ୍ଧବଙ୍କ ଉପହାର ଦେବା ଚାଲିଥାଏ।

ହଲାଣ୍ଡର ସମାଜ ମଙ୍ଗଳ ବ୍ୟବସ୍ଥା ଶିଶୁଙ୍କୁ ଅଗ୍ରାଧିକାର ଦେଇଥାଏ, ଶୈଶବ ସୁବିଧା Kinderbijsla ପିଲାର ଜନ୍ମଠାରୁ ୧୫-୧୮ ବର୍ଷ ପର୍ଯ୍ୟନ୍ତ ଯଥେଷ୍ଟ ସରକାରୀ ଅନୁଦାନ ମିଳିଥାଏ। ଜାଣିବାକୁ ପାଇଲି, ଜଣେ ଲୋକ ମାଆ ଛାଡ଼ି ଯାଇଥିବା ନାତିଟିକୁ ଲାଳନପାଳନ କରୁଥିବାରୁ ଏବେ ମାସକୁ ପ୍ରାୟ ୫୦୦ ଇରୋ ବା ଟ୩୫୦୦ଙ୍କା ସରକାରୀ ସାହାଯ୍ୟ ପାଉଛି।

ହଲାଣ୍ଡ ଆଇନ ଅନୁସାରେ ଶିଶୁଙ୍କ ପାଇଁ ୧୨ ବର୍ଷ euthansia, ୧୬ ବର୍ଷ ହେଲେ ମଦ୍ୟପାନ, ଯୌନକ୍ରିୟା ସିଗାରେଟ୍ ପାନ କରିପାର, ୧୮ ବର୍ଷ ହେଲେ, ବିବାହ ଓ ନରମ ଡ୍ରଗସେବନ କରିପାର। ୨୧ ବର୍ଷ ପର୍ଯ୍ୟନ୍ତ ବାପା ମାଆଙ୍କ ସାହାଯ୍ୟ ମିଳେ।

ଭଦ୍ର ଉତ୍ତମ ପ୍ରକୃତିର ପୁଅ ଝିଅ ପିଲାଙ୍କ କ୍ଷେତ୍ରରେ କିଛି ଚିନ୍ତା ନଥାଏ, ଦୁଷ୍ଟ ପିଲାଙ୍କ ପାଇଁ ଚିନ୍ତା, ସାଧରଣତଃ ଡଚମାନେ ପିଲାଙ୍କୁ ସ୍ୱାଧୀନ ଭାବେ ଚଳିବାକୁ ଛାଡ଼ି ଦିଅନ୍ତି ଏବଂ ନିଜେ ଅଭିଜ୍ଞତାରୁ ଶିକ୍ଷାକୁ ଚାହାନ୍ତି।

୨/୩ ବର୍ଷ ହେଲେ ଶିଶୁକୁ କ୍ରେଚ୍‌ରେ ଛାଡ଼ନ୍ତି। ୩ ବର୍ଷ ବେଳକୁ ଡଚପିଲା ସାଇକେଲ୍ ଶିଖି ଯାଇଥାଏ, ଅତିଥି ଘରକୁ ଆସିଲେ ଡଚପିଲାଟି ନାଚେ ବକର ବକର ହୁଏ। ଅତିଥିର ଦୃଷ୍ଟି ଆକର୍ଷଣ କରିବାକୁ ମାଆକୁ କୁଣ୍ଢେଇ ଧରି ତାର ମୁହଁ ଓ କେଶକୁ ସାଉଁଳେଇ ଦିଏ। ଅତିଥି ନିକଟରେ ବସି ତାଙ୍କୁ ଚାହେଁ, ତାଙ୍କର ମୁଖଭଂଗୀକୁ ଅନୁକରଣ କରେ।

ପିଲାମାନଙ୍କ ଖେଳିବା ପାଇଁ ସର୍ବସାଧାରଣ କ୍ରୀଡ଼ା କେନ୍ଦ୍ର ଥାଏ। ନାନାପ୍ରକାର କୌତୁକିଆ ଖେଳ ପ୍ରତ୍ୟେକ ସାହି ବା ପଡ଼ାରେ ଥାଏ। ବଡ଼ ବଡ଼ ଦୋକାନରେ ମଧ ଛୋଟ ଖେଳ ଜାଗା ଥାଏ।

ଛୋଟ ପିଲାଟି କିଚିନରେ କପ୍ ବୋର୍ଡ଼ର ଖାଦ୍ୟ ଦେଖିବାକୁ ବ୍ୟଗ୍ର ହେଲେ ବଜାରରେ ଜିନିଷ କିଣିଲାବେଳେ କିଣୁ ନଥିବା ଜିନିଷଟିକୁ ଆଣି ମାଆକୁ ଦେଲାବେଳେ, ମାଆ ପିଲାର ଦୁଷ୍ଟାମି ପ୍ରତି ସାବଧାନ କରାଇଦିଏ, ମାତ୍ର ବିଶେଷ ଚିନ୍ତାଗ୍ରସ୍ତ ହୁଏନି। ବାସ୍‌ରେ ଗଲାବେଳେ ରାସ୍ତାର ପିଲା ବାସ୍ କାଚକୁ ସ୍ନୋବଲ ଫିଙ୍ଗିଲେ ପିଲା ଝିଅଟିଏ ଡରି ମାଆର ଦୃଷ୍ଟି ଆକର୍ଷଣ କରେ, ମାଆ ନିଃଶଙ୍କ ଚିତ୍ତରେ ଉତ୍ତର ଦିଏ କାହିଁକି ବା କରିବେ ନାହିଁ। ଏସବୁ ଥିରୁ ପିଲାଙ୍କ ଦୁଷ୍ଟାମିକୁ ଅଯଥା ଗୁରୁତ୍ୱ ନ ଦେବା ଡ଼ଚଙ୍କ ଲକ୍ଷଣ ବୋଲି ମନେହୁଏ। ଡଚ କିଶୋର ସାଇକେଲ ଚଢ଼ା ଓ ମରାମତି ଏବଂ ସେଲ୍‌ଫୋନ୍ ବ୍ୟବହାରରେ ଓସ୍ତାଦ୍।

# ନେଦରଲାଣ୍ଡରେ ସ୍କୁଲ

ଶିଶୁଟି କ୍ରେଚ ସ୍ତର ଅତିକ୍ରମ କଲାପରେ ସ୍କୁଲରେ ଅଧ୍ୟୟନ କରେ। କେଉଁ ସ୍କୁଲରେ ପିଲା ପଢ଼ିବ ତା ବାପାମାଆଙ୍କ ଉପରେ ନିର୍ଭର କରେ ତିନିପ୍ରକାର ଚୟନ ବ୍ୟବସ୍ଥା ଅଛି Classcial education, Philosophy ଓ Religion ବହୁଦିନର ପ୍ରଚଳିତ ଦର୍ଶନ ଓ ଧର୍ମ ଶିକ୍ଷା, ରୋମାନ କେଥୋଲିକ୍ ଓ ପ୍ରୋଟେଷ୍ଟାଣ୍ଟ ସ୍କୁଲରେ ପଢ଼ାଇଲେ ଡଚପିଲା, ତୁର୍କୀ, ମରୋକୋନ ଓ ଅନ୍ୟ ଦେଶ ପିଲାଙ୍କ ଠାରୁ ଦୂରେଇ ରହିପାରିବ। ତେବେ ସରକାର ଦ୍ୱାରା ଅଣ ଅନୁମୋଦିତ ତିନି ଶ୍ରେଣୀର ସ୍କୁଲ 'white', mixed or Black' ଦେଖିବାକୁ ମିଳେ। ଡଚ ସଂବିଧାନ ପ୍ରତ୍ୟେକ ପିଲାଙ୍କୁ ପାଠପଢ଼ିବାର ଅଧିକାର ଦେଇଛି, ଦେଶର ଦୁଇ ତୃତୀୟାଂଶ ପିଲା, ଘରୋଇ ସ୍କୁଲକୁ ଓ ଏକ ତୃତୀୟାଂଶ ସରକାରୀ ସ୍କୁଲରେ ପାଠ ପଢ଼ନ୍ତି, ଉଭୟ ପ୍ରକାର ସ୍କୁଲକୁ ସରକାର ଅର୍ଥ ଯୋଗାଇଥାନ୍ତି। ଅଭିଭାବକ ମାନଙ୍କୁ ସ୍କୁଲ ପରିଚାଳନାରେ ଅଂଶଗ୍ରହଣ କରିବାକୁ ସୁଯୋଗ ଦିଆଯାଇଥାଏ।

ନାନା ଆଲୋଚନା, ବିଚାର ବିମର୍ଷ ସତ୍ତ୍ୱେ ଡଚ ସ୍କୁଲର କେତୋଟି ତ୍ରୁଟି ପରିଲକ୍ଷିତ ହୁଏ :–

ସୀମିତ ଶିକ୍ଷା ସମୟ, କେତେକ ସ୍କୁଲରେ ଶୁକ୍ରବାର, ବୁଧବାର ଅପରାହ୍ନ ଛୁଟି, ମଧ୍ୟାହ୍ନ ଭୋଜନ ବେଳେ ବାପା ମାଆ ଯତ୍ନ ନେବାକୁ କୁହାଯାଏ, ପିଲାଙ୍କୁ ଦୁଷ୍ଟାମି ପାଇଁ ଇନ୍‌ସୁରେନ୍‌ସ କରିବାକୁ କୁହାଯାଏ, ଗ୍ରୀଷ୍ମଛୁଟି ୭ ସପ୍ତାହ ହୁଏ।

# ଶିକ୍ଷା ବ୍ୟବସ୍ଥା

୧) ୪ ବର୍ଷ ବୟସରେ ଶିଶୁକୁ Kinder garten ରେ ଭର୍ତ୍ତି ହେବାକୁ ପଡ଼େ, କେତେକ ସ୍କୁଲରେ ଏହା creche ସ୍କୁଲ ସହ ସଂଲଗ୍ନ ଥାଏ।

୨) Elementary School / Basic School, ୫ରୁ ୧୧ ବର୍ଷ ପର୍ଯ୍ୟନ୍ତ ଏହି ସ୍ତରରେ କୌଶଳ, ବିଷୟବସ୍ତୁ ଓ ଗଣିତ ଶିକ୍ଷା ଦିଆଯାଏ। ଏହାର ଲକ୍ଷ୍ୟ ସାଂସ୍କୃତିକ, ସାମାଜିକ ଓ ଶାରୀରିକ କୌଶଳ ସଂବନ୍ଧରେ ଜ୍ଞାନ ଦେବା।

୩) Junior School or Junior High School ୧୨–୧୪ ବର୍ଷ ପର୍ଯ୍ୟନ୍ତ ୩ଟି ଶ୍ରେଣୀରେ ସୀମିତ ଥାଏ। ଏହି ଠାରୁ ବିଭିନ୍ନ ପ୍ରକାର ସ୍କୁଲ ଆରମ୍ଭ ହୁଏ। ମୌଳିକ ଲକ୍ଷ୍ୟ ମାଧ୍ୟମିକ ଶିକ୍ଷାପ୍ରାପ୍ତି, ମାତ୍ର ଏହାର ମାନ ସ୍କୁଲର ପ୍ରକାର ଭେଦ ଉପରେ ନିର୍ଭର କରେ।

୪) Comprehensive Grammer High School ୪ରୁ ୬ ଶ୍ରେଣୀ ସନ୍ନିବିଷ୍ଟ ୧୫ରୁ ୧୮ ବୟସ ଭିତରେ। ଏହା ୧୬ ବର୍ଷ ବୟସରେ ଶେଷ ହୋଇପାରେ ବା ୨୦ ବର୍ଷ ପର୍ଯ୍ୟନ୍ତ ଯାଇପାରେ।

ବିଭିନ୍ନ ଆକର୍ଷଣୀୟ ବିଷୟ ନେବାର ସୁବିଧା ଓ ସ୍ୱାଧୀନତା ଥିଲେ ହେଁ Low Land ରେ ସ୍କୁଲ ତ୍ୟାଗ କରିବା ହାର ଅଧିକ। ଏହାକୁ ହ୍ରାସ କରିବା ପାଇଁ ନାନା ପ୍ରକାର ଉତ୍ସାହଜନକ ପଦକ୍ଷେପ ଓ ଅର୍ଥଦଣ୍ଡ ଥିଲେ ହେଁ 'ତାର ନିରାକରଣ ହେଉ ନାହିଁ।'

ଶିକ୍ଷକମାନେ ଅନ୍ୟମାନଙ୍କ ଠାରୁ ଅଧିକ sick leave ନେଇଥାନ୍ତି, ସ୍କୁଲ ଛାତ୍ରଙ୍କ ଅଭିଭାବକମାନେ ସରକାରଙ୍କର ସମସ୍ତ ସାହାଯ୍ୟ ପାଇଥାନ୍ତି। ସ୍କୁଲ ଶିକ୍ଷା ପରେ ଉଚ୍ଚ ବୈଷୟିକ ଶିକ୍ଷା ଓ ବିଶ୍ୱବିଦ୍ୟାଳୟ ଶିକ୍ଷାର ବ୍ୟୟ ବଢ଼ିଯାଏ। ଛାତ୍ରମାନେ ନିଜର କୃତି ଅନୁସାରେ ଅନୁଦାନ ପାଇଥାନ୍ତି।

## ଚିକିତ୍ସା ବ୍ୟବସ୍ଥା

ହଲାଣ୍ଡର ଚିକିତ୍ସା ବ୍ୟବସ୍ଥା ବିଶେଷ ପ୍ରଶଂସନୀୟ ନୁହେଁ, ସ୍ୱାସ୍ଥ୍ୟ ବ୍ୟବସ୍ଥା ଓ ବୀମା ସମସ୍ତଙ୍କ ପାଇଁ ସରକାରୀ ସ୍ତରରେ ଥିଲେ ହେଁ ଡାକ୍ତର ନର୍ସମାନଙ୍କର କର୍ତ୍ତବ୍ୟରେ ତ୍ରୁଟି ପରିଲକ୍ଷିତ ହୋଇଥାଏ। ରୋଗୀ ପରାମର୍ଶ କରିବାକୁ ଗଲେ କୌଣସି ପ୍ରକାର ପ୍ରାରମ୍ଭିକ ଉପଦେଶ ଦେଇ ଛାଡ଼ି ଦିଆଯାଏ। ରୋଗ ସହଜେ ଭଲ ନ ହେଲେ ରୋଗୀର ଅନୁନୟକୁ କିଛିଦିନ ଏଡ଼ାଇ ଦିଆଯାଏ। ବେଳେବେଳେ Retirement Home ର ପରିଷ୍କାର ପରିଚ୍ଛନ୍ନ ବ୍ୟବସ୍ଥାରେ ବିଭକ୍ତ ହୋଇ ଅନ୍ତେବାସୀମାନେ ପ୍ରତିବାଦ କରିଥାନ୍ତି। ନେଦରଲ୍ୟାଣ୍ଡରେ ପ୍ରତି ୧୮ ଜଣରେ ଜଣେ ମାନସିକ ରୋଗୀ, ମାନସିକ ରୋଗୀଙ୍କୁ ଲୁହାର କୁଡ଼ିଆରେ ରଖାଯାଉଥିଲା। ଦ୍ୱିତୀୟ ମହାଯୁଦ୍ଧ ସମୟରେ ଏ ବ୍ୟବସ୍ଥାକୁ ବାତିଲ କରାଯାଇଥିଲା ୧୯୭୦ ଦଶକରେ, ସଂପ୍ରତି ଏହାର ପୁନଃ ପ୍ରବର୍ତ୍ତନ କରାଗଲାଣି। ଧୂମପାନ ଏବେ ଦୋକାନ, ଟ୍ରେନ୍ ଓ ବାସ ଭିତରେ ନିଷିଦ୍ଧ କରାଯାଇଛି।

ଇଚ୍ଛାମୃତ୍ୟୁ ଅଶୀ ଦଶକରୁ ଅବଲମ୍ବନ କରାଗଲାଣି। ଏହା ଆଇନ ସମ୍ମତ, ମାତ୍ର ରୋଗ ଚିକିତ୍ସାର ନିୟନ୍ତ୍ରଣ ବାହାରେ ଥିବ, ପରିବାରର ମତ ଥିବ, Public Posecuterଙ୍କୁ ଡାକ୍ତର ସୁପାରିଶ ଜଣାଇବ ଇତ୍ୟାଦି ସର୍ତ୍ତ ପାଳନ କରିବାକୁ ହୁଏ।

ଡଚ ଜୀବନର ଶେଷକୃତ୍ୟ (Funeral) ସମୟରେ ଡଚର ଆବେଗହୀନ ଅର୍ଥ ସର୍ବସ୍ୱ ଭାବ ପରିଷ୍କାର ରୂପେ ପରିଲକ୍ଷିତ ହୋଇଥାଏ। କବର ଦେବା ଯେପରି ବେଶୀ ଖର୍ଚ୍ଚ ନହୁଏ ସେଥିପାଇଁ ଜଣେ ଅଭିଜ୍ଞ ଡଚର ସାହାଯ୍ୟ ନିଆଯାଏ, ଯେକି, ପୁଷ୍ପ ଗୁଚ୍ଛର

ଠିକ୍ ମୂଲ୍ୟ ନିରୂପଣ କରିପାରିବ, କବର ପ୍ରସ୍ତୁତକାରକ ପାଇଁ କାଫିର ଦାମ୍ କଥାବୁଝିବା ସଂଗୀତକାରରେ ପାରିଶ୍ରମିକ ଠିକ୍ କରିବ।

ଶ୍ମଶାନସ୍ଥଳୀ ୨୦ ବର୍ଷ ପାଇଁ ଭଡ଼ାରେ ନିଆଯାଏ। ଗୋଟିଏ କବରରେ ତିନି କଫିନ୍ ରହିପାରେ। କବର ପାଇଁ ସ୍ଥାନ ମିଳିବା କଷ୍ଟକର ହେଉଥିବା ଶବକୁ ପୋଡ଼ି ଦିଆଗଲାଣି, ଅନ୍ୟ ବିକଳ୍ପ ବ୍ୟବସ୍ଥା ଚିନ୍ତା କରାଯାଉଛି - Wall to wall storage ନିର୍ମିତ କାନ୍ଥରେ ମୃତ ବ୍ୟକ୍ତିଙ୍କ ଦେହ ରଖିବାର ବ୍ୟବସ୍ଥା ହେଉଛି, ସଂପ୍ରତି ଇଣ୍ଟରନେଟ୍‌ର ସମାଧି ଗଢ଼ାଗଲାଣି ଯେଉଁଠି ସମସ୍ତ ଆବେଗ ଭାବପ୍ରବରତା ଲିପିବଦ୍ଧ ରହିବ ଏବଂ ଏହି ଶବ ସତ୍କାର ପ୍ରକ୍ରିୟା ୱେବ୍‌ସାଇଟ୍‌ରେ ଭିଡ଼ିଓ ମାଧ୍ୟମରେ ଦେଖାଯିବ, ଏବେ ଡିଜିଟାଲ୍ ସମାଧି ପୀଠ (ପ୍ରସ୍ତରର) ବ୍ୟବସ୍ଥା ମଧ୍ୟ ହେଲାଣି।

## ବୃଦ୍ଧାଶ୍ରମ (OLD AGE HOME)

ଟିଲବର୍ଗ ସହରରେ ବିରାଟ ବୃଦ୍ଧାଶ୍ରମଗୁଡ଼ିକୁ ଦେଖି ମୁଁ ଆଶ୍ଚର୍ଯ୍ୟାନ୍ୱିତ ହେଲି। ଗୋଟିଏ ଗୋଟିଏ ବିରାଟ ସାତ-ଆଠ ତାଲା ପ୍ରାସାଦ। ୭୫ ରୁ ୧୦୦ ପର୍ଯ୍ୟନ୍ତ ବୃଦ୍ଧବୃଦ୍ଧା ଗୋଟିଏ Apartment ରେ ରହନ୍ତି, ବୃଦ୍ଧାଶ୍ରମଗୁଡ଼ିକ କେତେକ ଅନୁଷ୍ଠାନ କିମ୍ବା କଂପାନୀ ପରିଚାଳନା କରନ୍ତି, ସେଠାରେ ବାସ କରୁଥିବା ବୃଦ୍ଧବୃଦ୍ଧାଙ୍କ ପାଇଁ ସବୁ ପ୍ରକାର ସୁବିଧା ଥାଏ। ଚିକିତ୍ସା, ଖେଳକସରତ ଚିତ୍ତବିନୋଦନର ସୁବ୍ୟବସ୍ଥା ଦେଖିଲେ ମନେହେବ ନିଶ୍ଚିନ୍ତରେ ବୟସ୍କ ଲୋକମାନେ ଅଛନ୍ତି। ଗୋଟିଏ ଗୋଟିଏ ପ୍ରତିଷ୍ଠାନର ବିଭିନ୍ନ ସହରରେ ବୃଦ୍ଧାଶ୍ରମ ଥାଏ। ହଲାଣ୍ଡ ସରକାର ବୃଦ୍ଧବୃଦ୍ଧାମାନଙ୍କୁ ପ୍ରଚୁର ମାସିକ ଭତ୍ତା ଦେଇଥାଏ। ସେହି ଭତ୍ତାରୁ ତ ସବୁ ଖର୍ଚ୍ଚ ଆଶ୍ରମ ପରିଚାଳକ ସହଜରେ ପାଇପାରିବ। ପାଶ୍ଚାତ୍ୟ ଦେଶରେ ପୁଅ ଝିଅ ବୟଃ ପ୍ରାପ୍ତ ହେଲେ ଦୂରେଇ ରହିବା, ଚଳଣି, ଏକକ ପରିବାର, ବାପା ମାଆଙ୍କୁ ଅବଶ୍ୟ ମଝିରେ ମଝିରେ ଦେଖା କରିବାକୁ ପୁଅଝିଅ ଆସନ୍ତି, ଜନ୍ମଦିନରେ ଫୁଲଗୁଚ୍ଛ ଦିଅନ୍ତି, ନାତି ନାତୁଣୀଙ୍କ ସଂଗରେ ହସ କୌତୁକ କରିବାକୁ ସୁଯୋଗ ଦିଅନ୍ତି। ସେମାନଙ୍କ ଭୋଜନାଗାର ଅତି ଆଧୁନିକ ପରିଷ୍କାର ପରିଚ୍ଛନ୍ନ। ଗୋଟିଏ ବୃଦ୍ଧାଶ୍ରମରେ ଭୋଜନାଗାର ଦେଖି ମୋର ମନେହେଲା ଗୋଟିଏ ବଡ଼ ରେଷ୍ଟୁରାଣ୍ଟ। ବୃଦ୍ଧାଶ୍ରମରେ ଷ୍ଟେସନାରୀ ଦ୍ରବ୍ୟ, ବ୍ରେଡ୍ ବିସ୍କୁଟ୍ ଓ ଅନ୍ୟାନ୍ୟ ପେକଡ଼ ଖାଦ୍ୟ ବିକ୍ରୟ ପାଇଁ ଷ୍ଟୋର ଥାଏ। ଭଡ଼ା ବାବଦ ମାସକୁ ୫୦୦/୬୦୦ ଇରୋ ଦେବାକୁ ପଡ଼େ। କ୍ୟାଣ୍ଟିନ୍‌ରେ ୮/ ୧୦ ଇରୋ ଦେଇ ଦୈନିକ ଭୋଜନ କରିହୁଏ। ଅନ୍ତେବାସୀଙ୍କ ଚିତ୍ତବିନୋଦ ପାଇଁ ଛୋଟ ପାର୍କ ଓ କ୍ରୀଡ଼ା ବ୍ୟବସ୍ଥା ଥାଏ। ଆଶ୍ରମ ପରିଚାଳକ ରୋଗ ଚିକିତ୍ସାର ବ୍ୟବସ୍ଥା କରି ଦିଅନ୍ତି। ସମସ୍ତଙ୍କର ଜୀବନ ବୀମା ଥାଏ।

# ଉଡ଼ନ୍ତା ପକ୍ଷୀ (FLYING BIRD)

" I only miss Holland when I am in Holland"
- Paul Verheve, Hol land Film Director, 1992

ନୀଳ ଆକାଶରେ ପକ୍ଷୀ ଉଡ଼ି ଉଡ଼ି ପାଏ ଆନନ୍ଦ, ଡଚଲୋକେ ସମୁଦ୍ରରେ ଆକାଶରେ ଦେଶରୁ ଦେଶକୁ ଯାଇ ନିଜର ଅସ୍ତିତ୍ୱ ଅଧିକ ଅନୁଭବ କରନ୍ତି। ସେ ବିଦେଶ ମାଟିକୁ ନେଇଥାଏ ତାର ହଲାଣ୍ଡପଣିଆ, ବିଦେଶ ମାଟିରେ କିଛିଟା ହରାଏ, କିଛିଟା ରଖେ, ବିଦେଶୀ ସଭ୍ୟତାକୁ ସହଜରେ ସେ ଆପଣେଇ ନିଏ।

ଅନ୍ୟ ଦେଶକୁ କାହିଁକି ଯେ ଡଚ ଲୋକ ଯାଏ, ତାର କାରଣ ସେ କାହାକୁ ଜଣାଏ ନା, କେବଳ କହେ, ନିଜ ଇଚ୍ଛାରେ କିଛି କାରଣରୁ ଦେଶାନ୍ତର ହେଲି, କିନ୍ତୁ କିଛିଦିନ ପରେ ସ୍ପଷ୍ଟ ଜଣାଯାଏ ସେ ଅଧିକ ଅର୍ଥ ଉପାର୍ଜନ ଓ ସୁବିଧା ସୁଯୋଗ ଅନ୍ୱେଷଣରେ ଆସିଛି। ସେମାନେ ଅଷ୍ଟ୍ରେଲିଆ, କାନାଡ଼ା, ଦକ୍ଷିଣଆଫ୍ରିକା, ସ୍ପେନ, ଯୁକ୍ତରାଷ୍ଟ୍ର ଆମେରିକାରେ ବିଛୁରି ପଡ଼ିଛନ୍ତି। ସଂଗରେ ନିଜର ସଂସ୍କୃତି ଐତିହ୍ୟ-କାଠଯୋଡ଼ା ଉଇଣ୍ଡମିଲସ୍, ଟୁଲିପ୍ ଫୁଲ, ଛଳନାର ପୋଷାକ ସଂଗରେ ଧରି ବୁଲନ୍ତି। ମାତ୍ର ଏହା ସହିତ ସେମାନଙ୍କୁ ଯୋଡ଼ି ଦେଲେ ସେମାନେ ଖୁସି ହୁଅନ୍ତି ନାହିଁ। ଡଚ ବଂଧୁଟି ବିନା ନିମନ୍ତ୍ରଣରେ ପହଞ୍ଚିଯାଏ, ସପ୍ତାହ ସପ୍ତାହ ଧରି ରହେ ଏବଂ ଆଶାକରେ ବଂଧୁ ତାଙ୍କୁ ବିଭିନ୍ନ ସ୍ଥାନରେ ନିଜ ଖର୍ଚ୍ଚରେ ବୁଲେଇ ଆଣିବ। ବଡ଼ ଦେଶରେ ଡଚ ତାର ଅସ୍ମିତା ହରାଇ ବସେ, ଛୋଟ ଦେଶରେ ଧରି ରଖେ, ବାହାରର ମଦ ପିଉଥିଲାବେଳେ ହଲାଣ୍ଡର ବିଅର୍ କଥା ଭାବନ୍ତି, କିନ୍ତୁ ଭଦ୍ରତା ରଖି କହନ୍ତି, ଏହା ଉତ୍କୃଷ୍ଟ। କ୍ଲବ୍‌ରେ ଖବରକାଗଜରେ ଜାତୀୟ ଉତ୍ସବରେ ସେମାନଙ୍କ ସ୍ୱାତନ୍ତ୍ୟ ସ୍ପଷ୍ଟ ହୋଇଥାଏ। ଫୁଲ ପ୍ରତି ଆକର୍ଷଣ, ଗଛ ଘାସ ଉଦ୍ୟାନ, ଫଳ ପନିପରିବା ଚାଷ ଇତ୍ୟାଦିରେ ସେମାନଙ୍କ ଆଗ୍ରହ ବିଦେଶରେ ମଧ ବାରି ହୋଇଯାଏ।

କଫି ଡଚ ସ୍ଥାପତ୍ୟ, ବଡ଼ ପ୍ରାସାଦ ଉଦ୍ୟାନ ଘେରାଘର ନାମ ପଛରେ Vander ସେମାନଙ୍କୁ ଅନ୍ୟ ଠାରୁ ପୃଥକ କରିଦିଏ, ପୂର୍ବେ ସେମାନଙ୍କ ଧର୍ମାନୁଷ୍ଠାନ Dutch reformed Church calvinist elements ସ୍ୱାତନ୍ତ୍ୟର ଲକ୍ଷଣ ଥିଲା, ହଲାଣ୍ଡବାସୀ ମାନେ ସେମାନଙ୍କ ବେଶି କଥା ମନେପଡ଼ିଲା ବେଳେ ସାଇକେଲରୁ ବ୍ୟବହାର ହ୍ରାସ ବେଶୀ ଅନୁଭବ କରନ୍ତି, ବିଦେଶର ପରବର୍ତ୍ତିତ ଓ ଜଳବାୟୁ, ଉଚ୍ଚ ନୀଚ ଅସମାନ ଜମି ପାହାଡ଼ ସେମାନଙ୍କୁ ମନେ ପକେଇଦିଏ ଦେଶର କଥା। ଡଚ ଭାଷା ଘର ବ୍ୟତୀତ ଅନ୍ୟତ୍ର ବ୍ୟବହାର କରିବାକୁ ସୁଯୋଗ ମିଳେନା।

ଡଚମାନେ East-Indies and West-indies ରେ ଉପନିବେଶ ସ୍ଥାପନ କରିଥିଲେ, Calvindit ଧର୍ମର ଉଦାରତା ଯୋଗୁଁ ଉପନିବେଶକୁ ଅନ୍ୟ ଇୟୁରୋପୀୟମାନଙ୍କ ପରି ଶୋଷଣ କରୁ ନଥିଲେ। ୧୯୪୦ ଦଶକରେ ଇଣ୍ଡୋନେସିଆ ସ୍ୱାଧୀନ ହେବାରୁ ପ୍ରାୟ ୫ ଲକ୍ଷ ଡଚ ଓ ଅନ୍ୟ ଇଉରୋପବାସୀ ସେଠାରୁ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିଥିଲେ।

ଅଧୁନା ଇଣ୍ଡୋନେସିଆରେ ଡଚମାନଙ୍କର ସ୍ୱାର୍ଥରକ୍ଷ କରିବାରେ ଡଚମାନେ ଇଣ୍ଡୋନେସିଆ ଭାଷା ଶିଖି ସ୍ଥାନୀୟ ଅଧିବାସୀଙ୍କ ସହ ମିଶିଗଲେଣି।

ହଲାଣ୍ଡର ଅବଶୋଷ ହେଉଛି, ୧) ଛୋଟ କ୍ଷେତ୍ରଫଳ, ଦ୍ୱୀପଗୁଡ଼ିକର ଆକାର ୫ରୁ ୧୮୦ ବର୍ଗ ମାଇଲ ଭିତରେ ୨) ପ୍ରଚୁର ଜଳ ୩) ଉଚ୍ଚ ଭୂମିର ଅଭାବ, ମାତ୍ର ଗୋଟିଏ ପାହାଡ଼ ଓ ଅଗ୍ନେୟଗିରି ଏ ଦେଶରେ ଅଛି।

ଶତାବ୍ଦୀ ଶତାବ୍ଦୀ ଧରି ୟରୋପର ଅନ୍ୟ ଦେଶର ସଂସ୍କୃତି ଏବଂ ନୂତନ ଦ୍ରବ୍ୟ ଡଚ ସ୍ୱାତନ୍ତ୍ର୍ୟ ନଷ୍ଟ କରି ଚାଲିଛି। Ginger bread, haouses , କେନାଲ, ପୋଲ, ବନ୍ଦର, ବେଶ୍ୟାବୃତ୍ତି ପଥରେ Leg road ବସ, ବ୍ୟାଙ୍କ ରାସ୍ତା ଆଳୁଅ, ଟପଲେସ୍ ସନ୍‌ବାଦିଗ୍ ଡଚମାନଙ୍କୁ ବଦଳାଇ ଦେଇଛି।

ଡଚ ସ୍ୱାତନ୍ତ୍ର୍ୟର ସୁରକ୍ଷା ପାଇଁ ଏବେ ପୁରୁଣାଶୈଳୀର ଘରର ଯତ୍ନ ନିଆଯାଉଛି। ବିଦେଶୀ ଭ୍ରମଣକାରୀଙ୍କ ପାଇଁ ପୁରାତନ ଡଚ ଦ୍ରବ୍ୟର ବିପଣି ମେଳାଯାଇଛି।

## ସୁରିନାମ : SURINAME

ଅନ୍ୟ ଏକ ଡଚ ଉପନିବେଶ ଥିଲା ସୁରିନାମ, ଏହି ଭୂଖଣ୍ଡଟିକୁ ପ୍ରଥମେ କଲମ୍ବସ ଆବିଷ୍କାର କରିଥିଲେ। ଏହା ୧୬୬୭ରେ ଡଚଙ୍କ ଅଧୀନକୁ ଆସିଲା। ସେତେବେଳର Newamsterdam ବା Newyork ପ୍ରତିବଦଳରେ ଡଚମାନେ ଇଂରାଜୀଙ୍କ ଠାରୁ ଏହି ଭୂଖଣ୍ଡଟି ପାଇଥିଲେ। ସୁରିନାମରେ ଡଚମାନେ ଆଫ୍ରିକୀୟ ଶ୍ରମିକ ସାହାଯ୍ୟରେ ଚାଷ ବିଶେଷତଃ କଫି ଚାଷ କରୁଥିଲେ। ଡଚମାନେ ଗୋପନରେ ବିନ୍‌ଚାଷ କରୁଥିଲେ। ବ୍ରାଜିଲ ସୁରିନାମରୁ ବିନ୍ ଲୁଚାଇ ନେଇ ଚାଷ କରିବାରୁ ସୁରିନାମର ଏକଚାଟିଆ ଚାଷର ବିଲୋପ ଘଟିଲା। ସୁରିନାମ ଅର୍ଥନୀତି ଦୁର୍ବଳ ହେଲା, ସୁରିନାମା ୧୯୫୪ରେ ସ୍ୱାୟତ ଶାସନ ପାଇ ୧୯୭୫ରେ ସ୍ୱାଧୀନ ହେଲା। ବହୁ ସଂଖ୍ୟାରେ କୁଶଳୀ ଶ୍ରମିକ ନେଦରଲାଣ୍ଡ ଆସିଲେ। ସଂପ୍ରତି ୩୫୮ ୦୦୦ ସୁରିନାମୀ ଅଛନ୍ତି। ସୁରିନାମରେ ୪୫୦୦ ଡଚ ଅଛନ୍ତି।

ଦକ୍ଷିଣ ଆଫ୍ରିକାରେ ପ୍ରଥମେ ୧୬୫୨ ରେ ଡଚମାନେ ପହଞ୍ଚି ଥିଲେ। ଉତ୍ତର ପୂର୍ବ ଦିଗରେ Transval Orange Free State, ସ୍ୱାଧୀନ ଦେଶ ସ୍ଥାପନ କଲେ। ନିଜକୁ

ଆଫ୍ରିକାନ ବୋଲି ଭାବୁଥିଲେ। ୧୭୦୦ ଖ୍ରୀଷ୍ଟାବ୍ଦରୁ ଆଫ୍ରିକାନ ଭାଷା ସୃଷ୍ଟି ହେଲା, ୧୯୨୫ରୁ ଡଚ ପରିବର୍ତ୍ତେ ଇଂରାଜୀ ଦ୍ୱିତୀୟ ଭାଷା ରୂପେ ବ୍ୟବହୃତ ହେଲା। ଡଚମାନେ ଆଫ୍ରିକୀୟଙ୍କ ସହ ମିଳିମିଶି ଚଳୁଛନ୍ତି।

ଅଷ୍ଟ୍ରେଲିଆରେ ଡଚମାନେ ବେଶ୍ ଆନନ୍ଦରେ ଅଛନ୍ତି, ଏଠାରେ ୨୪ଟି ଡଚ ଭାଷାର ରେଡ଼ିଓ ପ୍ରୋଗ୍ରାମ ଅଛି। ଅଷ୍ଟ୍ରେଲିଅନ୍ ମାନେ Abel Janszoon Tasman ନାମକ ଜନୈକ ଡଚ ଯେକି ୧୬୪୨ରେ ଜାଭାରୁ ଆସି ଅଷ୍ଟ୍ରେଲିଆର ଦକ୍ଷିଣରେ ଭୂମିଖଣ୍ଡେ ଆବିଷ୍କାର କରିଥିଲେ। ସେ ଅଷ୍ଟ୍ରେଲିଆ ଡଚଙ୍କ ଉପରେ ପ୍ରଭାବ ବିସ୍ତାର କରିଛନ୍ତି। ସେଠାରେ ବାସ କରିଥିବା ଡଚ ହଲାଣ୍ଡ ଆସିଲେ ତାଙ୍କୁ ଲାଗେ ହଲାଣ୍ଡରେ ଅତ୍ୟଧିକ ସରକାରୀ ନିୟନ୍ତ୍ରଣ, ଦୋକାନ ବଜାର ଅଳ୍ପ ସମୟ ଖୋଲା, କଳାଗୋରା ଭେଦ ସଂକୀର୍ଣ୍ଣ ସ୍ଥାନଭାଗ ଇତ୍ୟାଦି ଇତ୍ୟାଦି।

ନିୟୁଜିଲାଣ୍ଡ ମଧ୍ୟ Abe Tasman ଙ୍କ ଦ୍ୱାରା ଆବିଷ୍କୃତ ହୋଇଥିଲା, କିନ୍ତୁ ସେ ସେଠାରେ ପଦାର୍ପଣ କରି ନଥିଲେ। ଇଂରେଜମାନେ ଏହି ଦ୍ୱୀପରେ ବାସ କରି ନିଜର କରିନେଲେ। ତଥାପି Tasman ଙ୍କ ସ୍ମୃତିରେ ନାନା ଉତ୍ସବ ଏଠାରେ ପାଳିତ ହୁଏ।

ଆମେରିକାରେ ଡଚମାନେ ୧୬୦୯ରେ ବସତି ସ୍ଥାପନ କରିଥିଲେ, ୧୬୬୪ରେ ନିୟୁଅର୍କକୁ ଇଂରାଜୀମାନେ କରଗତ କଲେ। ସଂପ୍ରତି ମିସିଗାନ୍ ଷ୍ଟେଟ୍‌ରେ ଅନେକ ଡଚ ଆମେରିକାନଙ୍କୁ ଦେଖିବାକୁ ମିଳେ । ଡଚମାନେ କାନାଡ଼ାରେ ପ୍ରବେଶ କରିଥିଲେ ୧୮୯୦ରେ। ତଥାପି ଏଠାରେ ସେମାନଙ୍କର ଚର୍ଚ୍ଚ ଦେଖିବାକୁ ମିଳେ, ଡଚଙ୍କ ଦୃଷ୍ଟିରେ କାନାଡ଼ା ଲୋକ ଆମେରିକାନଙ୍କ ଠାରୁ କମ୍ ଖୋଲା, ଡଚମାନଙ୍କର ସବୁଠୁ ଅଧିକା ଖୋଲାମନ।

KA Carroll ଆମେରିକୀୟ ଓ ଡଚଙ୍କୁ ତୁଳନା କରି କହନ୍ତି

ନେଦରଲାଣ୍ଡ କାନସାସ୍ ପରି ସମତଳ ଭୂମି ଡଚମାନେ, ନିୟୁଅର୍କ ଲୋକଙ୍କ ପରି  Flat, କାଲିଫୋର୍ନିଆ ବାସୀଙ୍କ ଠାରୁ ଅଧିକ ସୁନ୍ଦର, ସାନଫ୍ରାସିମିସ୍କୋ ପରି ଧାଡ଼ି ଘରେ ବାସ କରନ୍ତି। mainl ର ଲୋକଙ୍କ ପରି ପରିଷ୍କାର ପରିଚ୍ଛନ୍ନ ନିୟୁଅର୍ଲିଅନବାସୀଙ୍କ ଭଳି ଉତ୍ସବ ପାଳନ କରନ୍ତି। ୱାସିଂଟନ୍ ପାଗ ଭଳି ନେଦରଲାଣ୍ଡ ଶୀତଳ। ଡଚମାନେ montana ବାସୀଙ୍କ ଭଳି ଅନୁଗତ ଏବଂ ୱାସିଂଟନ୍ ଅଧିବାସୀଙ୍କ ଭଳି ଅଭିଯୋଗ ପ୍ରବଣ।

ଆମେରିକା ଏକ ବିରାଟ ଧନୀ ଦେଶ, ହଲାଣ୍ଡ କ୍ଷୁଦ୍ର ମାତ୍ର ପ୍ରଗତିଶୀଳ। ଦୁଇ ଦେଶ ମଧ୍ୟରେ କିଭଳି ତୁଳନା କରାଯାଇପାରେ ?

ଆମେରିକା କାନାଡ଼ା ଅଷ୍ଟ୍ରେଲିଆ ଭଳି ନୂତନ ପୃଥିବୀକୁ ଡଚ୍‌ମାନେ ଆଦରି ନେଇଛନ୍ତି, ତଥାପି ସେମାନଙ୍କ ଦୃଷ୍ଟିରେ ଏମାନେ ଧୀର, ସ୍ଥିର, ସହଜରେ କଥାଟିକୁ

ଗ୍ରହଣ କରି ନିଅନ୍ତି, ଅଭିଯୋଗ ବା ପ୍ରତିବାଦ କରି ଜାଣନ୍ତି ନାହିଁ। ଡଚମାନେ ସିଧାସଳଖ କଥା କହନ୍ତି, କାନାଡ଼ା ଲୋକଙ୍କୁ ପଚାରି ଦିଅନ୍ତି 'କେତେ ରୋଜଗାର କରୁଛ ?' ସେମାନେ ଏ ପ୍ରଶ୍ନରେ କ୍ଷୁବ୍ଧ ହୋଇ ଭାବନ୍ତି ଡଚମାନେ ଅପରିମାର୍ଜିତ ରୂଢ଼।

ଡଚମାନେ ମଧ୍ୟ ନୂଆ ଦେଶକୁ ଗଲେ ସେଠାକାର ଚାଲି ଚଳଣ ସହ ମିଶିଯିବାକୁ ସମୟ ନିଅନ୍ତି। ଥରେ ଜଣେ ଡଚ ଗର୍ଭବତୀ ମହିଳା ଆମେରିକାର ଡାକ୍ତର ପରାମର୍ଶ କରିବାକୁ ଯାଇଥିଲେ, ଡାକ୍ତର ପାଖ ଘରେ ପୋଷାକ ବଦଳାଇବାକୁ (Undress ହେବାକୁ) କହିଲେ। ମହିଳାଟି ସଂପୂର୍ଣ୍ଣ ଉଲ୍ଲଗ୍ନ ହୋଇ ପେଟ ମାଡ଼ି ଶୋଇ ରହିଲା। ଡାକ୍ତର କିଛି ସମୟ ପରେ ରୋଗୀକୁ ଉଲଗ୍ନ ଦେଖି ବିସ୍ମିତ। ବ୍ୟଧିଟିଏ ପାଖରେ ଥିବା ଗାଉନ୍ ପିନ୍ଧିବାକୁ କହିଲେ, ସ୍ତ୍ରୀ ୧ଲୋକଟି ଭାବିଲେ ପିଠି ମାଡ଼ି ପେଟ ଦେଖାଇ ଶୋଇଲେ ବୋଧହୁଏ ସୁବିଧାଜନକ ହେବ। ତାହା କଲା। ଡାକ୍ତର ଭାବିଲେ ଡଚ ମହିଳା ଅତି ଉଦାର, ଲଂଗଳା ହୋଇଚାଲିବାକୁ କୁଣ୍ଠା କରନ୍ତି ନାହିଁ। ଆମେରିକାନ ବାବୁ ସାଇକେଲ ନଚଢ଼ି ହେଲମେଟ୍ ପିନ୍ଧି ମଟରସାଇକେଲ ରେ ଯିବା ଅଯଥା ଖର୍ଚ୍ଚବହୁଳ ଜଣାଯାଏ ଡଚମାନଙ୍କୁ। ଡଚମାନେ ଯେଉଁଠି ବସବାସ କରନ୍ତି ସେଠାକାର ନାମ ପଛରେ ହଲାଣ୍ଡ ଶବ୍ଦ ଯୋଡ଼ି ଦିଅନ୍ତି। ନିୟୁର୍କର ଛୋଟ ସହରଟିର ନାମ ଅଛି ଗିଲ୍‌ଡରଲ୍ୟାଣ୍ଡ (ଗିଲଡ଼ର ଥିଲା ଡଚମୁଦ୍ରା)।

## ଟିଲବର୍ଗର ପଥପ୍ରାନ୍ତେ

'ହସି ହସି ବିଦେଶିନୀ କୁହେ ଯାବେ କଥା
ମନର ସଂଶୟ ଲିଭେ, ହୃଦୟର କଥା।'

ହଲାଣ୍ଡର ମାଟି ଉଦାର ଉନ୍ମୁକ୍ତ। ଭାଷା କିନ୍ତୁ ଅବୋଧ, ରୋମାନ ଅକ୍ଷର, ମାତ୍ର ଭାଷା ଦୁଷ୍କର। ଛୋଟ ରାଜ୍ୟର ଗର୍ବ ବହୁତ। ଇୟରୋପର ଇତିହାସ ପରସ୍ପରକୁ ସଂଦେହ ଚକ୍ଷୁରେ ଦେଖିବାକୁ ଶିଖାଇଛି,ଏକ ଅନୁନ୍ନତ ପ୍ରକୃତି ସର୍ବସ୍ୱ ଦେଶକୁ ଆଧୁନିକ ସ୍ତରକୁ ଆସିବାକୁ ସ୍ୱଳ୍ପ ସମୟ ଲାଗିଥିଲା। ଏସିଆ ଆଫ୍ରିକା ତୁଳନାରେ ସୁଦୀର୍ଘ ଐତିହ୍ୟ ନାହିଁ। ବିସ୍ତୃତ ବର୍ଣ୍ଣିଳ ଭୂଖଣ୍ଡ ନାହିଁ, ନଦୀ ହ୍ରଦ ସମୁଦ୍ର ଘେରା ଦ୍ୱୀପଗୁଡ଼ିକ ପୂର୍ବ ଭୂଖଣ୍ଡର ପରୀ କାହାଣୀ ଶୁଣି ପ୍ରଲୁବ୍ଧ ଚିତ୍ତରେ ନୌକାଯାତ୍ରା କରିଥିଲେ ଅଜଣା ଅଦେଖା ଦେଶକୁ, ଆବିଷ୍କାର କଲେ ଜନବହୁଳ ଭାରତ, ଚୀନ, ଜନବିରଳ ଆମେରିକା, ଅଷ୍ଟ୍ରେଲିଆ, କାନାଡ଼ା, ଆଫ୍ରିକା। କେଉଁଠି ବ୍ୟବସାୟ ତ, କେଉଁଠି ସାହସ ଯୁଦ୍ଧ କୌଶଳ, କେଉଁଠି ଜଟିଳ କୂଟନୀତି ପ୍ରୟୋଗ କରି ନିଜର ଶାସନାଧୀନ କରିଦେଲେ ଦୂରଭୂଖଣ୍ଡକୁ। ଇଂରାଜୀ ଫରାସୀ ବଡ଼ ଚତୁର, ହଲାଣ୍ଡବାସୀ ସାହାସୀ କଠିନ ପରିଶ୍ରମୀ। ଉପନିବେଶ ସ୍ଥାପନ ଓ

ଶାସନ ଅଧିକାର ପାଇଁ ଖଣ୍ଡଯୁଦ୍ଧ, ଦୀର୍ଘ ସମର। ପରିଣାମ ଐଶ୍ୱର୍ଯ୍ୟର ବଣ୍ଟନ, ପାରସ୍ପରିକ ଘୃଣା ବିଦ୍ୱେଷ।

ଏଇଥିପାଇଁ ବୋଧହୁଏ ଅଧିକାଂଶ ୟୁରୋପୀୟ ମାନଙ୍କର ମନ ଖୋଲା ନଥାଏ। ଚୁପ୍‌ଚାପ୍, ଅଚିହ୍ନା ନୂଆ ଲୋକଠାରୁ ଦୂରତା, ମାପିଚୁପି କଥା। ସେମାନଙ୍କ ମଧ୍ୟରେ ଡଚମାନେ କାଳେ ଅଧିକ ମେଳାପୀ, ତଥାପି କଳାଗୋରା ବିଭେଦର ସଂକ୍ରାମକ ରୋଗ ଛୁଇଁଥିବ ନିଶ୍ଚୟ। ଭାଷା ତ ଇଂରାଜୀ ନୁହେଁ, କିମିତି ବା ଆଳାପ ଆଲୋଚନା ହେବ ?



ଟିଲବର୍ଗସ୍ଥ ପୃଥ ଘରେ ଲେଖକ

ରାସ୍ତାରେ ବେଳେବେଳେ ଏକୁଟିଆ ବା ସ୍ୱାମୀ ସ୍ତ୍ରୀ ହାତକୁ ଧରି ଚାଲୁଥିଲାବେଳେ ମନ ହୁଏ ସେମାନଙ୍କ ଦେଶ ଜାତି ପରିବାର କଥା କିଛି ପଚାରିବି। ଏପରି ପ୍ରଚେଷ୍ଟାର ଅଭିଜ୍ଞତା ଆମେରିକାରେ ସୁଖକର ହୋଇ ନଥିଲା। ହଲାଣ୍ଡରେ ତାର ପୁନରାବୃତ୍ତି ନ ହେଉ।

ମଧ୍ୟାହ୍ନ ସମୟ ସୂର୍ଯ୍ୟକିରଣର ମୃଦୁ ତାପ । ଦେହକୁ ଦେଉଥାଏ ଆରାମ, ମଲ୍ ନିକଟସ୍ଥ ଏକ ବାସ ଷ୍ଟପେଜ ନିକଟସ୍ଥ ଲମ୍ବାବେଞ୍ଚରେ ବସିପଡ଼ିଲି। ବାସକୁ ଅପେକ୍ଷା କରଛି ଏଠାରେ। ଚାହୁଁ ଚାହୁଁ ଦୁଇଟି ସୁନ୍ଦରୀ ତରୁଣୀ ଆସିଲେ। ମନେହେଲା ସେମାନେ ମୋ ଆଡ଼କୁ ଚାହିଁ ମୁରୁକି ହସିଲେ, ଆଖିରେ ଜଣେଇଲେ ଅଭିବାଦନ। ବସ ଆସିବା ଡେରି, ସେମାନଙ୍କ କଳାକେଶ, ଗୋଲାପୀ ଦେହ ଦେଖି ଭାବିଲି, ଭାରତୀୟ କିମ୍ବା ଏସିଆ ଲଳନା, ବାହା ହୋଇଛନ୍ତି ୟୁରୋପୀୟଙ୍କୁ। ପଚାରିଲି, Do you know English? ଉତ୍ତର ଆସିଲା Little

ତେଣୁ ପଚାରିଲି What is your husband?

Dutch or other European?

ଉତ୍ତର ଥିଲା : 'ସୁମାରିଆନ'

ମୋ ବୋହୂ ସୁମାରିଆନ୍ ପରିବାର ସହ ଘନିଷ୍ଠ ସଂପର୍କ, ଅଙ୍କଲ ଆଣ୍ଟି ତା ବସକୁ ଆସନ୍ତି, ଖୁସିଗପ ଖାନାପିନା ହୁଏ। ସେମାନଙ୍କ ପୂର୍ବପୁରୁଷ ବିହାର ଆଫ୍ରିକାର ସୁମାରିନକୁ ଯାଇଥିଲେ। ସୁମାରିନ୍ ଡଚ କଲୋନୀ ଥିଲା। ହିନ୍ଦି ଭାଷା ଏବେବି କହନ୍ତି, ତେଣୁ ହିନ୍ଦିରେ କଥାବାର୍ତ୍ତା ଆରମ୍ଭ କଲି :

ଆରମ୍ଭ କଲି "ମୁଁ ପ୍ରଫେସର ଥିଲି, ଗପ କବିତା ଲେଖେ, ତେଣୁ ଜାଣିବାକୁ ଚାହୁଁଛି ଦ୍ୱିଧା ନ ଥିଲେ ଉତ୍ତର ଦେବେ", ସମ୍ମତି ପାଇ ପଚାରିଲି

'ତୁମର ସ୍ୱାମୀ ଡଚ କି ?'

ହସି ହସି ତରୁଣୀଟି ଉତ୍ତର ଦେଲା 'ମିଶାମିଶି' ବୁଝିନେଲି ତରୁଣଟିର ବାପ ବୋଧହୁଏ ଡଚ ଥିଲେ । ପର ପ୍ରଶ୍ନ ଥିଲା, ସାଥୀ ଝିଅଟି କିଏ ?

ଉତ୍ତର "ଆମେ ଦି' ଭଉଣୀ"।

'ସୁରିନାମ ଯାଉଛ ନା ?' ଉତ୍ତର, 'ବାପା ମାଆ ଅଛନ୍ତି ବର୍ଷେ ଦି' ବର୍ଷରେ ଥରେ ଯାଉଁ।'

ପରବର୍ତ୍ତୀ ପ୍ରଶ୍ନ ଥିଲା "ଏଠାକାର ଲୋକେ ତ ଘନ ଘନ ଡିଭୋର୍ସ କରନ୍ତି, ତୁମେ ପସନ୍ଦ କର କି ? ଡିଭୋର୍ସ ଶବ୍ଦ ବୁଝିପାରିଲେ ନି, ଛାଡ଼ପତ୍ର କହିଲି, ବୁଝିଗଲେ, ଉତ୍ତର



ଟିଲବର୍ଗରେ ଲେଖକ

ପେଲେ "ଆମକୁ ଭଲ ଲାଗେନି, ଆମର ବିବାହ ୨୫ ବର୍ଷ ହେଲା ହେଲାଣି ବି' ପୁଅ ଅଛନ୍ତି। ବେଶ ଖୁସିରେ ଅଛୁଁ।" ତୁମର ଡଚ ଗାର୍ଲ ଫ୍ରେଣ୍ଡ ଥିବ, ସେମାନେ ଛାଡ଼ପତ୍ରକୁ କି ଦୃଷ୍ଟିରେ ଦେଖନ୍ତି ? ପ୍ରଶ୍ନଟି ଠିକ୍ ଭାବେ ବୁଝିପାରିଲେ ନାହିଁ; ତେଣୁ ପଚାରିଲି ଡଚ ସ୍ତ୍ରୀ କି ପୁରୁଷ ଛାଡ଼ପତ୍ର ଦେଲାବେଳେ ଦୁଃଖ ପାଏନି ?

ଉତ୍ତର ଥିଲା, ଦୁଃଖ ଆସେ କିଛି ସମୟ ପାଇଁ । ପର ପ୍ରଶ୍ନ ଥିଲା 'ତୁମେ ମୁସଲମାନ' ?

ଉତ୍ତର ଥିଲା 'ହିନ୍ଦୁ', ପଚାରିଲି 'କ'ଣ ପୂଜା କର ?

ଉତ୍ତର : 'ଲକ୍ଷ୍ମୀ, କୃଷ୍ଣ, ଶିବ।'

ପର ପ୍ରଶ୍ନ ଥିଲା, 'ଏଠାରେ ବିଭିନ୍ନ ଧର୍ମର ଲୋକ ଅଛନ୍ତି, କଳା,ଗୋରା, ବ୍ରାଉନ୍, ଏମାନଙ୍କ ଭିତରେ ବିଦ୍ୱେଷ ଥାଏକି' ? ଉତ୍ତର ଥିଲା, 'ନା, ଚିହ୍ନା ପରିଚୟ ହେଲେ ସଂପର୍କ ନିବିଡ଼ ହୋଇଯାଏ ?'

ଶେଷରେ ପଚାରିଲି, 'ତୁମକୁ ସୁରିନାମ ଭଲ ଲାଗେ ନା ଏ ଦେଶ ଭଲ ଲାଗେ ?'

ଆଶାନୁରୂପ ଉତ୍ତର : 'ସୁରିନାମ ଆମ ଜନ୍ମଭୂମି, ଭଲତ ନିଶ୍ଚୟ ଲାଗିବ, ଏଠାରେ ମଧ ଆନନ୍ଦରେ ଅଛୁ'। ବେଶ ସୁନ୍ଦର ଏ ସହର।'

ବସ୍ ଆସିଗଲା, ଘରକୁ ଫେରିବାକୁ ବସ୍ ଧରିଲେ। ଅଳ୍ପ ସମୟ ପାଇଁ ଦେଖାସାକ୍ଷାତ୍ ସେମାନଙ୍କ ପୂର୍ବପୁରୁଷ ବିହାର ଓ ଉତ୍ତରପ୍ରଦେଶରୁ ଯାଇଥିଲେ ସୁରିନାମ, ସମ୍ଭବତଃ ଏବେ ବି ଗାଁ ସହିତ ସଂପର୍କ ଅଛି, ଦିଲ୍ଲୀ, ବମ୍ବେ ନାମ ଶୁଣିଛନ୍ତି, କଲିକତା କି ଭୁବନେଶ୍ୱର ଅଜଣା। ଓଡ଼ିଆ ବୋଲି ଜାଣିପାରନ୍ତୁ କି ନାହିଁ ମୁଁ ତ ଭାରତୀୟ Indian । ମୋ ମାଟିର ସଂସ୍କୃତି ଜୀଇ ରହିଛି ସୁରିନାମରେ, ଏହାତ ଗର୍ବ ଆନନ୍ଦର ବିଷୟ।

ଦୁଇ ଦିନ ତଳେ, ମୋ ପୁଅ ବସାର ଏକ ମାଇଲ୍ ଦୂରରେ ଗୋଟିଏ ଡଚ ଦମ୍ପତି କ୍ରେଚ୍‌ରେ ପିଲାଟିକୁ ଧରି ଘର ଘର ବୁଲୁଥାନ୍ତି, ଭାବିଲି ଗୋଟିଏ ବାଳାଶ୍ରମ (orphanage) ପାଇଁ ସମ୍ଭବତଃ ଅର୍ଥ ସଂଗ୍ରହ, କରୁଛନ୍ତି। ହାତରେ କିଛି ଛପାକାଗଜ। ପାଖକୁ ଯାଇ ପଚାରିଲି, "ଆପଣ ଇଂରାଜୀ ବୁଝନ୍ତି ? ସମ୍ମତ ସୂଚକ ଉତ୍ତର ଆସିବାରୁ ପ୍ରଚାରିଲି। କୌଣସି orphanage ପାଇଁ ଅର୍ଥ ସଂଗ୍ରହ କରୁଛନ୍ତି କି ? ଉତ୍ତର ଥିଲା ନାସ୍ତିବାଚକ। ମୋ ହାତକୁ ଛପାକାଗଜଟି ବଢ଼ାଇ ଦେଲା ପୁରୁଷଟି, ଡଚରେ ଲେଖା, ଇଂରାଜୀ ଲେଖା ମାଗିବାରୁ ସ୍ତ୍ରୀଟି ଛୋଟ ଇଂରେଜୀ ଲେଖା କାଗଜଟିଏ ବଢ଼େଇ ଦେଲା। ପୁରୁଷଟି ଇଂରାଜୀରେ କହିଲା, 'ଟିଲାବର୍ଗରେ International Congress ହେଉଛି ଅଗଷ୍ଟ ମାସରେ। ସେହି ନିମନ୍ତ୍ରଣ ପତ୍ର ବାଣ୍ଟି ବୁଲୁଛୁ।' ମୁଁ ପ୍ରଶ୍ନ ପଚାରି ଜାଣିଲି ଯେ ପୁରୁଷଟି ସୁଇମିଂ ମାଷ୍ଟର, ସ୍ତ୍ରୀଟି ଇଞ୍ଜିନିୟର୍। ପୁରୁଷ ଡଚ, ସ୍ତ୍ରୀ, ପୂର୍ବତନ ସୋଭିଏଟ୍ ୟୁନିୟନ୍‌ର

ଏକ ପ୍ରଦେଶର। ମୋର ଅନ୍ୟ ଏକ ପ୍ରଶ୍ନର ଉତ୍ତର ମିଳିଥିଲା' ସେମାନେ କେଥୋଲିକ କି ପ୍ରୋଟେଷ୍ଟାଣ୍ଟ ନୁହନ୍ତି, ସେମାନେ ଖ୍ରୀଷ୍ଟାନ୍ calvinist, ସେଣ୍ଟ କାଲ୍‌ଭିନ୍‌ଙ୍କ ଦର୍ଶନରେ ଅନୁପ୍ରାଣିତ। ଯିଶୁଙ୍କ ବାଇବେଲର ବାଣୀ ପ୍ରଚାର ତାଙ୍କର ଧର୍ମ।

କାଲଭିନିଷ୍ଟମାନେ ସାଂପ୍ରତିକ ଘଟଣାବଳୀରେ ମର୍ମାହତ, ପ୍ରଦୂଷଣ, ସଂତ୍ରାସବାଦ, ଅଣୁଯୁଦ୍ଧ ଏ ସୁନ୍ଦର ପୃଥିବୀକୁ ଧ୍ୱଂସ କରିଦେବାକୁ ବସିଛି। ଏହାକୁ ଧ୍ୱଂସମୁଖରୁ ରକ୍ଷା କରିବାକୁ ହେଲେ ଈଶ୍ୱର ଖ୍ରୀଷ୍ଟଙ୍କ ଆଶୀର୍ବାଦ ଭିକ୍ଷା କରିବାକୁ ହେବ, ବାଇବେଲରେ କଥିତ ଅଛି ନୋହା Noah ଙ୍କ ସମୟରେ ପୃଥିବୀ ଏପରି ଏକ ଧ୍ୱଂସର ସମ୍ମୁଖୀନ ହୋଇଥିଲା।

'The world of that time suffered destruction when it was deluged with water' ଈଶ୍ୱର ଅଧର୍ମୀ ଲୋକଙ୍କୁ ଦଣ୍ଡ ଦେଲେ, ଧର୍ମପ୍ରାଣ ନୋହା ଓ ଅନ୍ୟ ସାଥୀ ସାତଜଣ ବଂଚି ରହିଲେ, ଈଶ୍ୱର ବିଶ୍ୱାସୀ ଏହି ସାତଜଣଙ୍କ ସାହାଯ୍ୟରେ ନୂତନ ପୃଥିବୀ ସୃଷ୍ଟି ହେଲା। ଯିଶୁଖ୍ରୀଷ୍ଟ କହନ୍ତି 'ସୈତାନଙ୍କ କବଳରୁ ପୃଥିବୀ ରକ୍ଷା ପାଇ ଶାନ୍ତିର ପୃଥିବୀ ଗଢ଼ି ଉଠିଥିଲା' ଯିଶୁ ସାବଧାନ କରି କହିଥିଲେ, ନୋହାଙ୍କ ପୃଥିବୀର ଶେଷ ଦିନ ମାନଙ୍କରେ Nathrn will against nation and kingdom against kingdom' ମହାମାରୀ, ଦୁର୍ଭିକ୍ଷ ବ୍ୟାପି ଯିବ, ଭୂମିକମ୍ପ ହେବ - ୧୯୨୦ରେ ଚୀନରେ ୨ ଲକ୍ଷ ଲୋକ, ୧୯୨୩ରେ ଜାପାନରେ ୯୯୩୦ ଲୋକ, ୧୯୩୯ ରେ ତୁର୍କୀ ରେ ୩୨୭୦୦ ଲୋକ ୧୯୭୦ରେ ପେରୁରେ ୬୬୮୦୦ ଲୋକ ୧୯୭୬ରେ ଚୀନରେ ୨୪୦୦୦ ଲୋକ ଭୂକମ୍ପର ଶିକାର ହୋଇଥିଲେ। ବାଇବେଲ ମତରେ ଦୁଷ୍କୃତିର ପୃଥିବୀ ଧ୍ୱଂସ ହେବ, ମାତ୍ର ନୂତନ ପୃଥିବୀ, ପବିତ୍ର ନ୍ୟାୟଶାନ୍ତି ପୂର୍ଣ୍ଣ ବଂଚି ରହିବ, He does the with that of god remain for ever; ଏହି ଆସ୍ଥା ଆଶ୍ୱାସନା ଆତ୍ମପ୍ରତ୍ୟୟର ବାର୍ତ୍ତା ପ୍ରଚାର ପାଇଁ ଖ୍ରୀଷ୍ଟାନ କଂଗ୍ରେସ ଅନୁଷ୍ଠିତ ହେବ ଅଗଷ୍ଟ ମାସରେ, ସାଦର ନିମନ୍ତ୍ରଣ। watch tower ନାମକ ସଂସ୍ଥା ଏହି ମହତ କାର୍ଯ୍ୟ କରିଚାଲିଛି - ଅଷ୍ଟ୍ରେଲିଆ କାନାଡ଼ା ଆଫ୍ରିକା ଇୟୁରୋପ ଭାରତ (ପୁନେ) ପ୍ରଭୃତି ଦେଶ ମହାଦେଶରେ ଏହାର ସଂଗଠନ ଅଛି।

ଉଚ୍ଚ ଶିକ୍ଷିତ ଡଚ ତରୁଣ - ରୁଷୀୟ ତରୁଣୀଙ୍କ ଠାରୁ ଏ କଥା ଶୁଣି ମୋର ଭାବାନ୍ତର ଜାତ ହେଲା, ବିଜ୍ଞାନ ସତେ କ'ଣ ଧର୍ମ ଈଶ୍ୱର ଇହ ପରଜନ୍ମ ଏକ ଅଦୃଶ୍ୟ ଶକ୍ତି ଉପରେ ବିଶ୍ୱାସକୁ ସମୂଳେ ଲୋପ କରିପାରିବ ? ଆମ ମାଳିକା ଗୀତା, ଉପନିଷଦରେ ଠିକ୍ ଏକଥା ନାହିଁକି , 'ଯଦା ଯଦସ୍ୟ ଧର୍ମସ୍ୟ ଗ୍ଲାନି ର୍ଭବତି ଭାରତ'... ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ'

# ସଂଧ୍ୟା-ସକାଳ

ଗ୍ରୀଷ୍ମଋତୁ ଜୁଲାଇରୁ ଅକ୍ଟୋବର, ନେଦରଲାଣ୍ଡରେ ସଂଧ୍ୟା, ମନମାନେନି ବିଶ୍ୱାସ କରି ହୁଏନି, ଅପରାହ୍ନ (ସଂଧ୍ୟା) ୭ଟା ହେଲେ ସାଂଧ୍ୟଭ୍ରମଣରେ ଅଭ୍ୟାସବଶତଃ ବାହାରି ପଡ଼େ, ଏକା ଏକା। ଶ୍ରୀମତୀ ମୋ ସଂଗେ ତାଳ ଦେଇଚାଲି ପାରିବେ ନାହିଁ, ବାର୍ଦ୍ଧକ୍ୟ ଓ କମରବିଂଧା ରୋଗ ତାଙ୍କୁ ଆକ୍ରାନ୍ତ କଲାଣି, ମୁଁ ରହିଛି ପୂର୍ବ ଭଳି, ଯୁବସୁଲଭ, ପ୍ରଶସ୍ତ ରାସ୍ତା, ବସ୍, ସାଇକେଲ ପଦଯାତ୍ରୀଙ୍କ ପାଇଁ ସ୍ୱତନ୍ତ ସଉକ। ଦୁଇ ପାଖରେ ଦିତାଲା ଠୁଁ ଚାରିତାଲା ପର୍ଯ୍ୟନ୍ତ ଘର, ଏକ ମାଇଲ ଅନ୍ତରରେ ମଲ୍ ବା ବଡ଼ବଜାର। ଆମେରିକାରେ ବିନା ଗାଡ଼ିରେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଇହୁଏନି, ଏଠାରେ ଚାଲି ଚାଲି ଯାଇହେବ। କିଛି ବାଟ ଗଲେ ଘର ଶେଷରେ ପାର୍କ, ଚିତ୍ତବିନୋଦନ, ବିଶ୍ରାମ ଓ ପିଲାଙ୍କ ଖେଳ ପାଇଁ। ମୁଁ ବସିପଡ଼େ ଗୋଟିଏ ପାର୍କରେ, ପିଲାଏ ନାନାପ୍ରକାର ଖେଳ-ଖେଳୁଥିବେ, ମାଆ ବାପା କିଛି ଦୂରରେ ଲନ୍‌ରେ ଛିଡ଼ା ହୋଇ ପିଲାଙ୍କ ମନୋରଂଜନରେ ନିଜେ ରଂଜିତ ହେଉଥିବେ, ପାର୍କର ଏକ ଉଚ୍ଚ ଜାଗାରେ ଲତାକୁଞ୍ଜ, କେତୋଟି ବେଞ୍ଚ ସୁରମ୍ୟ ଫୁଲଗଛ, ବାସନା ନାହିଁ, ଆକର୍ଷଣ ଅଛି, ମତୁଆଲା ହେବାର ସମ୍ଭାବନା ନାହିଁ, ସୁନ୍ଦର ଦୃଶ୍ୟରେ ଆନନ୍ଦିତ ହେବାର ସୁଯୋଗ ଅଛି। ମଣିଷ ସୃଷ୍ଟି ଲତାକୁଞ୍ଜକୁ ଲଗାବେଞ୍ଚଟି ଉପରେ ବସିଲି, ସଂଧ୍ୟା, କହୁଥିଲେ ବି ଅଂଧାର ନାହିଁ, କେତେବେଳେ ବାଦଲରେ ସୂର୍ଯ୍ୟ ଲୁଚିଯାଉଛନ୍ତି ତ ଆଉ କେତେବେଳେ ତାଙ୍କର ଉଜ୍ଜ୍ୱଳ ଆଲୋକ ଦିବା ରୂପ ଝଲସେଇ ଦେଉଛି। ଏକା ବେଞ୍ଚରେ ବସି ଭାବୁଛି। କାହିଁ ଯମୁନା କୂଳ ନୀପମୂଳ ଲତାକୁଞ୍ଜ ରାଧାକୃଷ୍ଣଙ୍କ ଦୋଳି, କାହାନ୍ତି କେଦାରଗୌରୀ, ରୋମିଓ, ଜୁଲିଏଟ୍, ଏଣ୍ଟୋନି କ୍ଲିଓପାଟ୍ରା ବିଗତ ଯୌବନରେ ପୁରୁଣା ଦିନକୁ ମନେ ପକାଉଛି, ସମ୍ବଲପୁର-ଭବାନୀପାଟଣା ପ୍ରକୃତିର ଘନଘଞ୍ଚ ସବୁଜ ବନାନୀ, ଆଜି ନୃଶଂସ ଭାବେ ଧ୍ୱଂସ କରାଯାଉଛି, ଅଭାବ ଅନଟନ, ଘୃଣା, ଦ୍ୱେଷର ଭାବନା ଗଳ୍ପ, କବିତାରେ। ପ୍ରେମ ଅଭିସାର ନିଷିଦ୍ଧ, ଶାନ୍ତିର ମାୟା ମୋହ ସ୍ୱର୍ଣ୍ଣ ଉଭେଇ ଯାଉଛି - ଆଧୁନିକତା, ଅତ୍ୟାଧୁନିକତା, ରସହୀନ, ଶୁଷ୍କ ମୁଣ୍ଡବ୍ୟଥା, ଅନୁଚିନ୍ତା।

ବିଗତଦିନର ସୁନ୍ଦରୀ ରମଣୀର ସାହଚର୍ଯ୍ୟ, ଅଧ୍ୟାପକୀୟ ଶୈଳୀରେ ଛନଛନମନ ସୁଶ୍ରୀତନ୍ୱୀର ତରୁଣୀଙ୍କୁ ସହପାଠୀଙ୍କ ସଂଗେ ବଣଭୋଜିରେ ମାତିଥିବା ମନେ ପକାଇ ଗୁଣୁଗୁଣୁ ଗାଇଲି :

'Shall I compare thee to a summer's day
Thou art more lovely and more temperate'

Sometimes too hot the eye of heaven shines
But thy eternal summer shall not fade.

ଆହାଃ କି ରୋମାଞ୍ଚକର ଭାବ, ସତେ କ'ଣ ସାରା ଜୀବନ ଧରି ହୁଏ ସେକ୍ସପିଅରଙ୍କ ଭାବନା ପରି ?

ଟିଲବର୍ଗ ସହରରେ ହଜିଲା ଦିନର ସକାଳ, ପାହାନ୍ତା ପହର, ବୟସ ଭାରରେ ଦରଜ ଦେହ ଛାଟି ପିଟି ହେଉଛି, ପାଖରେ ନାତି, କୈଶୋର ଅତିକ୍ରମ କରିବାକୁ ଯାଉଛି ସାନ ନାତିଟି ଶୈଶବ ଅତିକ୍ରାନ୍ତ କରିବା ଉପରେ। କିଛି ସମୟ ସଂଧ୍ୟାରେ ମୋ ବିଛଣାରେ ଗଡ଼ାଗଡ଼ି କରି ଧାଇଁ ଯିବ ମାଆଶେଯକୁ। କେତେଦିନ ଅବା ଆଉ ମାଆର କୋଳ, ସ୍ତ୍ରୀ ଏକା ମୋ ସାଂଗରେ ଯାଇଥିଲେ ହୁଏତ ପାଖରେ ଶୋଇଥାନ୍ତା ? ତଫାତ୍ ବା କ'ଣ ହୋଇଥାନ୍ତା ? ବୟସର ଦାବିତ ମାନି ନେବାକୁ ହୁଏ ? ପାହାନ୍ତର ସୁଲୁସୁଲିଆ ପବନରେ ଲାବଣ୍ୟବତୀର ରସ ଆସ୍ୱାଦନ କରିବାକୁ ଆଉ କ'ଣ ମନ ବଳେ। ଯାହା ନାହିଁ ବାଳକାଳେ ତାହା ନାହିଁ କାଳେବେଳେ, ଯାହା ହରାଇଛ ଯୌବନ ଗଲାପରେ ଆଉତ ଫେରି ଆସେନା। ଉଦ୍ଦାମ ପ୍ରେମ ପରିବର୍ତ୍ତେ ନାରୀ ଦେହର କୋମଳ ସ୍ପର୍ଶର ମୃଦୁ ଉଷ୍ଣତାରେ ହିଁ ସୀମିତ ରହେ ଆନନ୍ଦ, ତାହା ବି ଅମୂଲ୍ୟ। ମନେ ପଡ଼ିଗଲା, ବେନ ଜନସନ୍ଙ୍କ ଚେତାବନୀ

Doing a filthy pleasure is and short
... Let us together closely lie and kiss
... This has pleased doth please, long will please.

କିଛି ସମୟ ଗଡ଼ପଡ଼ ହୋଇଛି ଶୁଣିବାକୁ ପାଇଲି, କୁଆ କା, କା, ରାବ, କୁମ୍ଭାଟିଆ କି ଅନ୍ୟ କେଉଁ ପକ୍ଷୀର କୋ, କୋ କୋଅ ଶବ୍ଦ, ମଧୁର ତାନ କାନରେ ମୋର ଗୁଞ୍ଜରି ଉଠିଲା, "ରାତି ପାହିଲାଣି ରାବଇ କାଉ, ଉଠ ଉଠ ମଠ ନ କର ଆଉ"। ଆଉ କିଛି ସମୟ କାନପାତି ଶୁଣିବାକୁ ବିଛଣାରେ ପଡ଼ି ରହିଲି, ପ୍ରକୃତିର ନିର୍ଦ୍ଦେଶ, କାଉ କରିଗଲା ତା କାମ, କା, କା ବନ୍ଦ ହେଲା, ପକ୍ଷୀର ମଧୁର କାକଳି ଶୁଣାଗଲାଣି, ମୁଁ ଉଠି ପଡ଼ିଲି, ନିତ୍ୟ ନୈମିତିକ କାର୍ଯ୍ୟ ତାଡ଼ନାରେ।

ସୁପରିକଳ୍ପିତ ସହରରେ ପୁରାତନ ପ୍ରାକୃତିକ ଓ ଆଧୁନିକ ଜୀବନର ସମାବେଶ ବେଶ୍ ଉପଭୋଗ୍ୟ, ଭୁବନେଶ୍ୱର ଭଳି ଏକ ଗ୍ରାମୀଣ ସହରରେ ବି ଏ ମଧୁର ସମନ୍ୱୟ ନାହିଁ, ପକ୍ଷୀର କାକଳି, କାଉର 'କା କା', ନିୟମିତ ଶୁଣାଯାଏନା, ଗଛକାଟି ଘରଭାଙ୍ଗି ପ୍ରଗତିର ମୁଖା ପିନ୍ଧା ଚାଲିଛି।

# ବାଗ୍‌ଦତ୍ତାଙ୍କ ଗହଣେ

'Black hair complexion Latin, Jewallid eyes
down cast, the slobs beside her feasts'

ବୁଲଗାରିଆର ଝିଅ, ହଲାଣ୍ଡର ପୁଅ, ମୋ ପୁଅର ଗବେଷଣା ବେଳର ସହପାଠୀ, ସ୍ନେହୀ ମଜାଦାର ତରୁଣ ତରୁଣୀ, ସୁଖର ସଂଧାନରେ ମିଳନ, ଭବିଷ୍ୟତରେ ବିବାହିତ ଜୀବନର ସୁନେଲି କଳ୍ପନା। ତେବେ ଏକ ସଂଗରେ ଅଛନ୍ତି। ସଂଧ୍ୟାରେ ଏ ଯୁଗଳ ମୂର୍ତ୍ତି ଦୁହିଁଙ୍କୁ ଅତିଥି ରୂପେ ପୁଅ ଘରେ ପାଇ କେତେ ଯେ ଆନନ୍ଦିତ ହେଲି ବିଦେଶରେ, ବର୍ଣ୍ଣନା କରିପାରିବିନି। ତରୁଣ ତରୁଣୀଙ୍କ କଥାରେ କୋମଳତା, ଆନ୍ତରିକତା ଭରି ରହିଥାଏ। ଝିଅଟିର କଳା କେଶ, ସୁନେଲି ଦୀର୍ଘ ଚେହେରା, ତୀଖ ନାକ, ନର୍ତ୍ତିତ ଚକ୍ଷୁ ମୋର ଭାରତୀୟ ଦୃଷ୍ଟିକୁ ଉଲ୍ଲସିତ କରୁଥାଏ। ପୁଅଟି ବେଶ ହସଖୁସିର, ହାସ୍ୟ ପ୍ରିୟ। ଖୋଲା ମନରେ ବିନା ସଂକୋଚରେ କଥାବାର୍ତ୍ତା କରୁଥାଏ ଝିଅଟିଏ ବାପା ତାର ବୁଲଗୋରିଆରେ, ଗୋଟିଏ ଛୋଟ କାରଖାନାରେ କୁଶଳୀ ଶ୍ରମିକ, ମାଆ ସ୍କୁଲ ଶିକ୍ଷୟିତ୍ରୀ, ଘର ଗ୍ରାମାଞ୍ଚଳରେ, ଋଷ ମଧ କରନ୍ତି। ନା, ତାର ମାଲିନା, କେଡ଼େ ମଧୁର, କହୁଥାଏ ବୁଲଗେରିଆ ବା ପୂର୍ବତନ ସୋଭିଏତ୍ ୟୁନିୟନ୍‌ରେ ପୁଅମାନେ କାୟିକଶ୍ରମ କରିପାରିବେ ଜାଣି ସରକାର ଅଳ୍ପପାଠ ପଢ଼ିଲା ପରେ ଉତ୍ପାଦନ କାର୍ଯ୍ୟରେ ନିଯୁକ୍ତ କରି ଦିଅନ୍ତି। ମହିଳାମାନଙ୍କ ଉପରେ ପିଲାମାନଙ୍କୁ ଶିକ୍ଷା ଦେବା ଦାୟିତ୍ୱ ପଡ଼େ। ତାଙ୍କ ଦେଶରେ ସ୍ୱଳ୍ପ ଶ୍ରମ ବିଶିଷ୍ଟ କାମ, ଅଧ୍ୟାପନା, ଓକିଲାତି, ଅଫିସ୍ କାମରେ, ମହିଳା ଅଧିକ। ସେମାନେ ଉଚ୍ଚ ଶିକ୍ଷା ପ୍ରାପ୍ତ। ନାରୀମାନେ ମାତୃବତ ସ୍ନେହ ଦେଇ ପିଲାଙ୍କୁ ପାଠ ପଢ଼ାଇ ପାରିବେ ବୋଲି ସମ୍ଭବତଃ ସରକାର ସେମାନଙ୍କୁ ଏ କାର୍ଯ୍ୟରେ ନିଯୁକ୍ତ କରନ୍ତି। ମୁଁ କହିଲି, ଝିଅଟି ମୋ ମତକୁ ସମର୍ଥନ କଲା। କଥା ପ୍ରସଙ୍ଗରେ ଜାଣିବାକୁ ପାଇଲି ସୋଭିଏତ୍ ୟୁନିୟନ୍‌ର ପତନ ପରେ ଯାହା କିଛି ପରିବର୍ତ୍ତନ ଘଟିଛି ତାହା ବିଶେଷ ଆଖିଦୃଶିଆ ନୁହେଁ। ଅର୍ଥନୀତି କ୍ଷେତ୍ରରେ କିଛିଟା ଉନ୍ନତି ଘଟିଛି, ପୁଞ୍ଜିବାଦୀ ମୁକ୍ତ ଅର୍ଥନୀତି ଓ ଗଣତାନ୍ତ୍ରିକ ପଦ୍ଧତିକୁ ନୂତନପିଢ଼ିର ଲୋକେ ଭଲ ପାଉଛନ୍ତି, ବାହାରକୁ ଯିବାର ସ୍ୱାଧୀନତା ଉପଭୋଗ କରୁଥିବାରୁ। ପୂର୍ବକାଳର ଲୋକଙ୍କ ଏ ପର୍ଯ୍ୟନ୍ତ ସାମ୍ୟବାଦୀ ବ୍ୟବସ୍ଥା ପ୍ରତି ଆଦର ରହିଛି। ଝିଅର ବାପା ଏ ବ୍ୟବସ୍ଥାର ସମର୍ଥକ। ଝିଅଟି ଯାଏ ଗାଁକୁ ତାର ବାପମାଆଙ୍କ ସ୍ନେହ, ତାକୁ ଆକର୍ଷି ନିଏ। ସ୍ପଷ୍ଟବାଦିନୀ ଝିଅଟି ଠାରୁ ମୋ ମନର କୌତୁହଳ ମେଣ୍ଟାଇବା ପାଇଁ ଦାଂପତ୍ୟ ଜୀବନର ସ୍ଥିରତା, ଛାଡ଼ପତ୍ର ହେଲେ ମନରେ ସ୍ଥିତି, ଦୁଃଖ ଶୋକ, ଭାବପ୍ରବଣତା କଥା ପଚାରିଲି। ବିନା ଦ୍ୱିଧାରେ ମାଲିନା କହି ଚାଲିଲା ଏକସଂଗେ ରହିବା ଅସହ୍ୟ

ହେଲେ, ବା ଶାନ୍ତିପ୍ରଦ ନ ହେଲେ, ସହଜରେ ଛାଡ଼ପତ୍ର ହୋଇଯାଏ। କିନ୍ତୁ ନାରୀ ସୁଲଭ ବା ମଣିଷ ସୁଲଭ ମାନସିକ ଯନ୍ତ୍ରଣା ରହେ, କିଛି କାଳ ପର୍ଯ୍ୟନ୍ତ ମନରେ ପ୍ରବେଶ କରେ, ଅତୀତର ମଧୁର ସ୍ମୃତି। ପରିସ୍ଥିତିର ତାଡ଼ନାରେ ବିଚ୍ଛେଦ, ତେବେ ବିଚ୍ଛେଦର ସ୍ୱାଭାବିକ ସାମୟିକ ଦୁଃଖାନୁଭୂତି ଥାଏ। ଯେତେହେଲେ ମଣିଷତ ! ଯାହା ନାରୀ କ୍ଷେତ୍ରରେ ସତ୍ୟ ତା ପୁରୁଷ କ୍ଷେତ୍ରରେ ମଧ୍ୟ ସତ୍ୟ। ଝିଅଟି ମତରେ ଉପାର୍ଜନ କରିବାର ସାମାର୍ଥ୍ୟ ଓ ସୁଯୋଗ ଥିବାରୁ ୟୁରୋପ ଆମେରିକାରେ ଛାଡ଼ପତ୍ରର ପ୍ରଚଳନ ଅଧିକ।

ପୁଅଟି ଆମ କଥାବାର୍ତ୍ତା କିଛି ଶୁଣୁଥାଏ, ମୋ ପୁଅ ସଂଗରେ ସେ ଆଳାପ କରୁଥାଏ। ପୁଅ ଇଞ୍ଜିନିୟର, ଝିଅ କମ୍ପ୍ୟୁଟର ସାଇନ୍ସର ଉଭୟ ଡକ୍ଟରେଟ୍ ପାଇଛନ୍ତି ଟିଲ୍‌ବର୍ଗ ବିଶ୍ୱବିଦ୍ୟାଳୟରୁ।

ପୁଅଟି ଠାରୁ ଜାଣିବାକୁ ପାଇଲି ହଲାଣ୍ଡରେ ମଧ୍ୟ ଝିଅମାନେ ଅଧିକ ସଂଖ୍ୟାରେ ଉଚ୍ଚ ଶିକ୍ଷିତ, ଉଚ୍ଚ ପଦବୀରେ ଅଧିଷ୍ଠିତ। ସେମାନେ ବୁଦ୍ଧିମତୀ, ଭବିଷ୍ୟତ ପ୍ରତି ସାବଧାନୀ। ପୁଅମାନଙ୍କ ବେପରୁଆ ଭାବ ଏ ଅବସ୍ଥା ସବୁ ଦେଶରେ ସୃଷ୍ଟି କରିଛି। ପୁଅଟି ଠାରୁ ଜାଣିଲି ଯେ ହଲାଣ୍ଡର ଗ୍ରାମ ବୋଲି ସେପରି ସ୍ୱତନ୍ତ୍ର ସ୍ଥିତି କିଛି ନାହିଁ। ସର୍ବତ୍ର ଛୋଟ ସହର, ତେବେ ଋଷ କାମରେ ଦାୟିତ୍ୱ ଯେଉଁମାନେ ଦେଇଛନ୍ତି ସେମାନେ ଗ୍ରାମାଞ୍ଚଳ ବା ଛୋଟସହର ଶେଷ ମୁଣ୍ଡରେ ରହନ୍ତି। ଝିଅମାନେ ବଡ଼ ବଡ଼ ସହରରେ ରହୁଥିବାରୁ ଋଷରେ ଲିପ୍ତ ଯୁବକ ପକ୍ଷେ ଜୀବନସାଥୀ ପାଇବା କଷ୍ଟକର ହେଉଛି, ବିବାହ ପାଇଁ ଋଷୀ ଯୁବକ ବିଜ୍ଞାପନ ଦେଉଛି। ହଲାଣ୍ଡର ସାମାଜିକ ନିରାପତ୍ତା ବ୍ୟବସ୍ଥାରେ ସୁନ୍ଦର ବିଳାସ ପ୍ରିୟ ତରୁଣୀ କାହିଁକି ଛୋଟ ସହରରେ ରହି କଠିନ କାମ କରୁଥିବା ତରୁଣ ପାଖରେ ରହିବ ? ପୁଅଟିଠାରୁ ଜାଣିଲି ବୟସ୍କ ଲୋକଙ୍କ ଘରେ ପୁଅ ବୋହୂ ନାତିନାତୁଣୀ ଏକ ସଂଗେ ରହିବା ଦେଖାଯାଉନି। ଏ ଦେଶରେ ଗୋଟିଏ ଅଲିଖିତ ନିୟମ ଅଛି। ଅଠର ବର୍ଷ ହେଲେ ପୁଅ ଝିଅ ଅନ୍ୟତ୍ର ପୃଥକ ଭାବେ ନିଜ ନିଜର ସାଥୀ ବାଛି ରହିବେ, ଉତ୍ସବାଦିରେ ବା ସମୟେ ସମୟେ ବାପା ମାଆ, ଜେଜେ ଦାଦିମା ପାଖକୁ ଆସି କିଛି ସମୟ କଟାଇ ଯିବେ। ଜୀବନରେ ସୁଖ ପାଇଁ ବଂଧନ। ଶିଶୁଙ୍କ ଦାୟିତ୍ୱ ହିଁ ବୈବାହିକ ଜୀବନର ପରମ କର୍ତ୍ତବ୍ୟ। ସହାସ୍ୟ 'ବଦନରେ କରମର୍ଦ୍ଦନ କରି ବିଦାୟ ନେଲେ ରାତି ୧୧ଟାରେ । କମ୍ପ୍ୟୁଟର ସାଇନ୍ସରେ ଡକଟ୍‌ରେଟ୍ କରିଥିବା ଅନ୍ୟ ଏକ ତରୁଣ କ୍ୱେଟରୁ। ତାର ବାପା କେତେ କଷ୍ଟରେ ପଳାଇ ଆସି ହଲାଣ୍ଡରେ ରହନ୍ତି। ପିଲାଟି ଚୁପ୍‌ଚାପ, ରୁଗ୍‌ଣ। କିନ୍ତୁ ସୁନ୍ଦର, ଅଳ୍ପକଥାବାର୍ତ୍ତା କରୁଥାଏ, ପଛରେ ଆସି ଆଗେ ବିଦାୟ ନେଲା, ଆମେ ରାତ୍ରି ଭୋଜନ କରିବୁ ଜାଣିପାରିଲା, ବୋଧହୁଏ।

# ଦେନବଶର ଗଳିରେ

**Small is beautiful : କ୍ଷୁଦ୍ର ହିଁ ସୁନ୍ଦର**

ସମାଜ ବିଜ୍ଞାନ ସୁମୋଖେରଙ୍କ 'Small is Beautiful' କ୍ଷୁଦ୍ର ସୁନ୍ଦର ବହିଟି ପଢ଼ିଥିଲି, ଉତ୍ପାଦନ ଶକ୍ତି ବଢ଼ାଇବା ସହ କର୍ମନିଯୁକ୍ତିର ପ୍ରସାର ଘଟାଇହେବ – ଏହି ଚମତ୍କାର କାରିଗରୀ ଚିନ୍ତା ମୋଭଳି ଅନେକ ଅର୍ଥଶାସ୍ତ୍ରର ଛାତ୍ରଙ୍କୁ ଆକର୍ଷି ନେଇଥିଲା। ବାସ୍ତବ କ୍ଷେତ୍ରରେ ଛୋଟ ଜିନିଷ ଛୋଟ ବିଷୟ ଏତେ ଯେ ହୃଦୟସ୍ପର୍ଶୀ ହୁଏ, ତାହା ପୂର୍ବେ କେବେ ଅନୁଭବ କରି ନଥିଲି। ଆଜି ହଲାଣ୍ଡର ଏକ ପୁରାତନ ସହର ଦେନବଶ୍‌କୁ ଦେଖି ସେହି ଅଭାବନୀୟ ଅନୁଭବ ମନରେ ଜାତ ହୋଇଥିଲା, ଦେନବଶ୍ ସହରର ପୂରାନାମ Hertogenbosh ସ୍ଥାନୀୟ ଲୋକେ କହନ୍ତି ସହରଟି ଚତୁର୍ଦ୍ଦଶ ଶତାବ୍ଦୀରେ ସୃଷ୍ଟି ହୋଇଥିଲା, ଷୋଡ଼ଶ ସପ୍ତଦଶ ଶତାବ୍ଦୀ ବେଳକୁ ନେଦରଲାଣ୍ଡ କୃଷି ପଶୁପାଳନ ଓ ବାଣିଜ୍ୟରେ ୟୁରୋପରେ ପ୍ରସିଦ୍ଧି ଲାଭ କରିଥିଲା, ଏହି ଛୋଟ ସହରଟି ନୌବାଣିଜ୍ୟର ପେଣ୍ଠ ଜାଗା ଥିଲା, ଏହି ସମୟରେ ଫ୍ରାନ୍ସ ଇଟାଲିରୁ କେଥୋଲିକ୍ ମାନେ ଆସି ଏଠାରେ ଧର୍ମ ପ୍ରଚାର କରିଥିଲେ।

ଆମଷ୍ଟାରଡ଼ାମରୁ ପୁଅ ସଂଗେ ଫେରୁଥିଲି ଟିଲବର୍ଗକୁ ଟ୍ରେନ୍‌ରେ, ଦେନବଶରେ ଟ୍ରେନ୍ ବଦଳେଇବାକୁ ହେବ। ପୁଅ ପ୍ରସ୍ତାବ ଦେଲା ଏହି ସୁନ୍ଦର ସହରଟିକୁ ବୁଲି ଦେଖିବାକୁ। ରେଳଷ୍ଟେସନ୍‌ରୁ ଓହ୍ଲାଇ ଗୋଟିଏ ଫର୍ଲିଙ୍ଗ୍ ଗଲାପରେ କେନାଲ, ପୋଲ, ନୌକାବିହାର ପାଇଁ ଯାତ୍ରୀ ସମାବେଶ ଦେଖିଲି। ଝିପି ଝିପି ବର୍ଷା ପଡୁଥାଏ। ଛତା ଧରି ଆଗେଇ ଚାଲିଲୁଁ, ପୁରୁଣା ନୂଆ କୋଠା ଧାଡ଼ି ଧାଡ଼ି ଲଗାଲଗି ହୋଇ ରହିଛି। ବର୍ଷା ଜୋରରେ ହେବାରୁ ଗୋଟିଏ ସୁପରମାର୍କେଟ୍ ପ୍ରବେଶ ଦ୍ୱାରରେ ଛିଡ଼ା ହେଲୁ – ରାସ୍ତାକୁ ବଢ଼ି ଆସିଥିବା, ପାରାପେଟ୍ ତଳେ ନାରୀ ପୁରୁଷ ଛୋଟ ପିଲା, ଘନବର୍ଷାକୁ ଏଡ଼ାଇବା ପାଇଁ ଅପେକ୍ଷା କରିଛନ୍ତି। ମେଘ ଛିଟିକା ଦେହରେ ପଡୁଥାଏ, ମନେପଡ଼ିଯାଉଥାଏ ବଂଧୁ ଶଶିଭୂଷଣ ବିଶ୍ୱାଳଙ୍କ କବିତା ପଂକ୍ତି –

ମେଘ ସବୁ ବର୍ଷିଯାଏ ନୀଳ ରୋମାଂଚର
ଯେତିକି ଡେରିଲେ କାନ
ତେଣେ ଶୁଭେ ମେଘର ମହ୍ଲାର।

ଅନେକ ସ୍ତ୍ରୀ ଲୋକଙ୍କ ସହିତ ସୁନ୍ଦର କ୍ଷୁଦ୍ରକାୟ ୪ଟି ସ୍ତ୍ରୀଲୋକ ଆମ ପାଖକୁ ଲାଗି ଠିଆ ହୋଇଥାନ୍ତି, କନକ ଗୋରୀ, ମଲ୍ଲୀ କଢ଼ ନାକ, ଶରୀର ଅନୁପାତରେ ବର୍ତ୍ତୁଳ ସ୍ତନ, କୋମଳାଙ୍ଗୀ, ଜବାଧରୀ, ବୟସ ବାରି ହେଉନଥାଏ, ତେବେ ଆଖି ଓଠ ଓ କଥାବାର୍ତ୍ତାରୁ ସେମାନେ ଯେ ଉଦ୍ଦାମ ଯୌବନର କବଳରେ ତା ଅନୁଭବ କରିହେଉଥାଏ।

ଶୁଣିଥିଲି ଥାଇଲାଣ୍ଡର ଲୋକ ସୁନ୍ଦର ମାତ୍ର ଅଳ୍ପ ଉଚ୍ଚ, ଜାପାନୀଙ୍କ ଭଳି ଦେଖାଯା'ନ୍ତି। ନାକ କିନ୍ତୁ ଚେପଟା ନୁହେଁ। ପୁଅ ଠାରୁ ପଚାରି ବୁଝିଲି ଏମାନେ ଥାଇଲାଣ୍ଡର ମହିଳା।

ପତ୍ରପତ୍ରିକା ଓ ବଂଧୁମାନଙ୍କ ଠାରୁ ଜାଣିଥିଲି, ଥାଇଲାଣ୍ଡରେ ଅନେକ ମହିଳା ରୂପ ଜୀବୀ, ସୁନ୍ଦର ରୂପ ସହିତ ଦାରିଦ୍ର୍ୟ ମିଶିଗଲେ ହିନ୍ଦୁ ଅର୍ଥରେ ସତୀତ୍ୱ ଆପଣାଛାଏଁ ଦୂରେଇ ଯାଏ। ଦାରିଦ୍ର୍ୟ ପାଇଁ ହେଉ ବା ପ୍ରାକୃତିକ ଐତିହାସିକ କାରଣ ଯୋଗୁଁ ହେଉ ଥାଇଲାଣ୍ଡରେ ରୂପବ୍ୟବସାୟର ପ୍ରବଳତା ସୁବିଦିତ। ଛୋଟ ଦ୍ୱୀପ, ସମୁଦ୍ର କୂଳ, ଚିତ୍ତବିନୋଦନ ପାଇଁ ବହୁ ବିଦେଶୀଙ୍କ ଆଗମନ – ଅର୍ଥ ଉପାର୍ଜନ ପାଇଁ ଏକ ସହଜ ପନ୍ଥା। ସଖି କଣ୍ଢେଇ ଗଢ଼ିଟି, କଅଁଳ ଦେହ, ଲାବଣ୍ୟଭରା ମୁହଁ ଚିରକିଶୋରୀର ବୟସ, କୋଳରେ ବସାଇ ଗେହ୍ଲା କରିବାକୁ ଲୋଭହେବ, ସୁକୁମାର ଖେଳନା ସତେ। କ୍ଷୁଦ୍ର ଯେ କେତେ ରମଣୀୟ ହୋଇପାରେ ତାର ନମୁନା ଥାଇଲାଣ୍ଡ ରମଣୀ, ଏମାନେ ଏହାର ସୌନ୍ଦର୍ଯ୍ୟର ପ୍ରାକ୍‌ସୂଚନା ଦେଲେ ପରା।

କିଛି ବାଟ ଆଗେଇ ଗଲୁ। ପୁରୁଣା ଏକ କେଥୋଲିକ୍ ଚର୍ଚ୍ଚ ୧୬୭୦ ଖ୍ରୀଷ୍ଟାବ୍ଦରେ ସ୍ଥାପିତ, ଚର୍ଚ୍ଚର ଘଣ୍ଟାରୁ ସୂଚନା ମିଳିଲା – ଆଉ କିଛି ବାଟ ଗଲାପରେ ଏକ ଖୋଲା ଚତ୍ୱର, ପକ୍କା ତିଆରି, ଶେଷ ଭାଗରେ କେନାଲଟିଏ କମ୍ ଓସାର, କେନାଲର ଦୁଇ ଧାରରେ ପୁରୁଣା ନୂଆ କୋଠା କେନାଲର ଛୋଟ ଛୋଟ ନାଆରେ ଯାତ୍ରୀମାନେ ବୁଲୁଛନ୍ତି, ମଝିରେ ମଝିରେ ଦୁଇ ପାର୍ଶ୍ୱରେ ଗୃହ, ଘରକୁ ସଂଯୋଗ କରୁଛି ପୋଲ, ଉଚ୍ଚ ପିଲାର ଦେଇ କେନାଲକୁ କଭର କରି କିଛି ଘର ତିଆରି ହୋଇଛି, ବାସଗୃହ ଓ ଦୋକାନଘର। ସପ୍ତଦଶ ଅଷ୍ଟାଦଶ ଶତାବ୍ଦୀରେ ପୋର୍ସେଲିନ୍ ଓ ଅନ୍ୟାନ୍ୟ ମୂଲ୍ୟବାନ ଦ୍ରବ୍ୟର ବ୍ୟବସାୟ ଚାଲୁଥିଲା। ଛୋଟ ନାଆ ବା ଜାହାଜରେ, ଧନୀସଂଭ୍ରାନ୍ତ ଘରର ଦ୍ୱାର କେନାଲକୁ ଲାଗି। ବ୍ୟବସାୟୀ ଘର ମଧ୍ୟ ନାଆରୁ ସହଜରେ ଘର ଭିତରକୁ ଜିନିଷ ଉଠାଇ ଦିଆଯାଉଥିଲା। କଲିକତା କଟକ ସହରର ଗଳିପରି ଅଣଓସାରିଆ, ମାତ୍ର ପରିଷ୍କାର ପରିଚ୍ଛନ୍ନ, ମଝିରେ କେନାଲପାଣି, ନଈ ନାଳ ପାଣି ପବନ ସହ ବଂଧୁ ଭଳି ମଣିଷ ବଞ୍ଚି ରହିବାର ଜୀବନ୍ତ ସନ୍ତକ । ପୁରାତନ ଘର, ପରିବାରର ବାସଗୃହ ଓ ପାନ୍ଥଶାଳା ଦେଖି ମନେପଡ଼ିଗଲା, କବି ଲାଙ୍ଗଫେଲୋଙ୍କ କବିତା :

'As ancient is this hostelry
As any in the land may be
Built in the old colonial day
When men lived in grander way with ampler hospitality"

ଗଛନାଳ ହ୍ରଦ ଘେରା ଏହି ଛୋଟ ସହରଟିରେ ଆତିଥ୍ୟର ଅଭାବ ଏବେ ବି ନାହିଁ। ପୁରାତନ କୋଳରେ ଆଧୁନିକତାର ସମ୍ଭାର, ବର୍ତ୍ତମାନ ଫେରାଇ ନେଉଛି ଅତୀତକୁ, ବିକାଶର ବର୍ଣ୍ଣିଳ ଆଭା ମନରେ ଆଣି ଦେଉଛି ବିଗତ ଦିନର ରୋମାଞ୍ଚ, ବୀରତ୍ୱର ଉଦ୍ଦୀପନା ସହ ସୌନ୍ଦର୍ଯ୍ୟପିପାସା ଗୁନ୍ଥା ହୋଇଛି ହଲାଣ୍ଡ ମାଟିରେ।

# ସ୍ୱପ୍ନ ଦେଖେ ବିଦେଶରେ

ମନ ଯେତେବେଳେ ଉଛନ୍ନ ହୁଏ ସ୍ୱଦେଶରେ ଛାଡ଼ି ଆସିଥିବା ସାଂଗସାଥୀମାନଙ୍କ ସହ ମିଶିବା ପାଇଁ, ବାସ୍ତବତାର ପ୍ରତିବଂଧକ ଥିଲେ ସ୍ୱପ୍ନରେ ତା ସଂଘଟିତ ହୁଏ। ମାତ୍ର ଦେଢ଼ମାସ ହେଲା ଭୁବନେଶ୍ୱର ଛାଡ଼ି ଆସିଛି। କେତେ ନୂଆ ସୁନ୍ଦର ଚିନ୍ତାର ବାହାରେ ଥିବା ସ୍ଥାନ ମଣିଷ ଓ ପ୍ରକୃତିର କୀର୍ତ୍ତି ଓ କୃତି ଦେଖି ଅଭିଭୂତ ହେଉଛି, ତଥାପି କାହିଁକି ବେଳେ ବେଳେ ମନ ଅସ୍ଥିର ହେଉଛି ସାଂଗମାନଙ୍କ ସହ ମିଶିବାକୁ। କାହା ସହିତ ଆଲୋଚନା କାହା ସହିତ ଯୁକ୍ତି କାହା ସହିତ ରାସ୍ତା ଚାଲି କି ପ୍ରକାର ଯେ ଆନନ୍ଦ ଦିଏ, ଦେହ ମନରେ •ସହଜ ଫୁର୍ତ୍ତି ଭରିଦିଏ ତା ବର୍ଣ୍ଣନା କରିହୁଏନି; ମାତ୍ର ଗଭୀର ଭାବେ ତା'ର ଅନୁପସ୍ଥିତି ଅନୁଭବ କରିହୁଏ। ଯୁକ୍ତରାଷ୍ଟ୍ର ଆମେରିକାରେ ଥିଲାବେଳେ ଜଣେ ଦି'ଜଣଙ୍କୁ ଫୋନ୍ କରୁଥିଲି; ଏବେ ଲେପ୍‌ଟାପ୍ ସାହାଯ୍ୟରେ ଫୋନ୍ କରିବାରେ ଅଳ୍ପ ଖର୍ଚ୍ଚ, ତେଣୁ ଅନେକ ଅଧିକ ସାଂଗମାନଙ୍କୁ ଫୋନ୍ କରୁଛି। ଅତି ପ୍ରିୟ ଲୋକଟି ଭୁବନେଶ୍ୱରଠୁଁ ଦୂରରେ ଫୋନ୍‌ରେ କଥାବାର୍ତ୍ତା ସୀମିତ। ସ୍ୱପ୍ନରେ କେଉଁ ସାଂଗ କେତେ ବେଳଯାଏଁ ଦେଖାଯିବ ତା'ତ ନିୟନ୍ତ୍ରଣର ବାହାରେ। ପୁଣି ସ୍ୱପ୍ନରେ ଅଜବ କଥା, ଲୋକ ଚାନ୍ଦବାଲିର, ଦେଖି ଯିବା ସାହସପୁରରେ, କେଉଁ ବଂଧୁ ଭାଇ ବାପା ଇହଧାମ ଛାଡ଼ି ଚାଲିଗଲେଣି, ତଥାପି ସ୍ନେହର ହାତ ବଢ଼ାଇ ଦେଉଛନ୍ତି। ବୟସ ହେଲେ ପିଲାବେଳର କଥା, ମନେପଡେ, ଦେହ ମନ ଅଚଞ୍ଚଳ ଆଗକୁ ଯିବାକୁ ଅଧୀର ନ ହେଲେ ସ୍ମୃତି ବିଜଡ଼ିତ ହୁଏ। ଖେଳ ସାଥୀ, ହୃଦୟର ସାଥୀଙ୍କୁ ତୁମେ ମନେ ପକାଉଥିଲା ବେଳେ ସେମାନେ କ'ଣ ସେତିକିବେଳେ ମନେ ପକାଉଥାନ୍ତି, ଟେଲିପାଥିକ ଯୋଗାଯୋଗ ନା ଫ୍ରୟେଡ଼୍‌ଙ୍କ ଅବଦମିତ ଇଚ୍ଛାର ପରିପୂରଣ ସ୍ୱପ୍ନରେ ଘଟେ ? ତତ୍ତ୍ୱ ବିଶ୍ୱାସଯୋଗ୍ୟ ହେଉ ନ ହେଉ, ସ୍ୱପ୍ନ ତ କିଛି ସମୟ ପାଇଁ ସତ୍ୟ ହୁଏ, ମଧୁର ପରିବେଶ ସୃଷ୍ଟି କରେ, ଅପ୍ରାପ୍ତିକୁ ପ୍ରାପ୍ତି ଓ ବିଚ୍ଛେଦକୁ ମିଳନରେ ରୂପାନ୍ତରିତ କରେ। ହୃଦୟର କଥା, ସୁବିଧା ସମୟ ଥିଲା, 'ତୁମେ ଆସିଇ ନି' ଭଳି ମିଠା କଥାର ଶିହରଣ ଦେହରେ ଖେଳାଇ ଦିଏ। ଅତି ପ୍ରିୟଠାରୁ ଦୂରରେ ରହିବାରେ ଥାଏ ମଧୁର ବ୍ୟଥା। କିଏ ଜଣେ ଉପନ୍ୟାସିକ ଲେଖିଥିଲେ : "love needs passion, marriage needs steady comfort" ବିବାହିତ ଜୀବନ ବା ପାରିବାରିକ ଜୀବନ-ସ୍ତ୍ରୀ ପିଲା, ପୁଅ ଝିଅ ନାତିନାତୁଣୀ ଜୀବନରେ ଅବିରତ ସୁଖର ସୁଅ ଛୁଟାଇଥାଆନ୍ତି। ତେବେ ରୋମାଞ୍ଚକର ଉଦ୍‌ବେଳନ ସେଥିରେ ନଥାଏ। ପ୍ରେମ ଓ ବିବାହ – ବିବାହ ଓ ପ୍ରେମ ଉଭୟର ସମନ୍ୱୟ ଜୀବନକୁ କରେ ମଂଜୁଳ। ବିଦେଶରେ ସ୍ୱଳ୍ପ ଦିନର ରହଣି। କାହୁଁ ମିଳିବ ସତପ୍ରେମର ଶିହରଣ। ସ୍ୱପ୍ନ ଦିଏ ସେପରି ଉତ୍ତେଜନା ଅବଶ୍ୟ କ୍ଷଣିକ ପାଇଁ।

# ଚାରିଟି ପୁଅ, ଗୋଟିଏ ଝିଅ

ପୁଅର ବସା ନିକଟରେ ପାର୍କଟିଏ। ମଧ୍ୟାହ୍ନରେ ସହର ପରିକ୍ରମା ଛଳରେ ଯାଇଥିଲି ନିକଟସ୍ଥ ପାର୍କକୁ। ପାର୍କରେ ମଧ୍ୟାହ୍ନରେ ବେଶି ପିଲା ନଥାନ୍ତି। ୩/୪ଟି ପିଲା ଗୋଟିଏ ତରୁଣ ଓ ଜଣେ ୪୦/୪୫ ବର୍ଷର ଲୋକ ବସିଛନ୍ତି ପାର୍କର ଗୋଟିଏ କୋଣରେ ବୁଢ଼ାବୁଢ଼ୀ ଦି'ଜଣ ଫୁଲଗଛ ଲଗାଉଛନ୍ତି, ଗଛ ମୂଳରେ ପାଣି ଦେଉଛନ୍ତି, ସମ୍ଭବତଃ ପାଖ ଘରର ଲୋକ, ହବି ରୂପେ ଉଦ୍ୟାନ କାମ କରୁଛନ୍ତି, ମୁଁ ପାର୍କରେ ବୁଲାବୁଲି ସାରି ଲୋକଟି ପାଖକୁ ଯାଇ ପଚାରିଲି: Do you know English? ସେ ହଁ କହିଲା, ମୋର ଆଗ୍ରହ ହେଲା ତା ଦେଶ ଓ ପରିବାର କଥା ପଚାରିବାକୁ। ମୁଁ ଇଣ୍ଡିଆରୁ ଆସିଛି କହିଲି, କଥା ପ୍ରସଙ୍ଗରେ କହିଲି ମୋ ପୁଅ ଏଠାରେ ଜଣେ Economist, ମୁଁ କିଛିଦିନ ରହି ମୋ ଦେଶକୁ ଚାଲିଯିବି। ସେ ପଚାରିଲା ହଲାଣ୍ଡ କିପରି ଲାଗୁଛି? ମୁଁ କହିଲି ଖୁବ୍ ଭଲ୍, ଆମେରିକା ଠାରୁ ମୋତେ ଅଧିକ ଭଲ ଲାଗୁଛି।

ପରିବାର ପ୍ରସଂଗରେ ଜାଣିବାକୁ ଚାହିଁ ପଚାରିଲି, 'ଆପଣଙ୍କ ବାପା ମାଆ ଅଛନ୍ତି ନା? ସେ ଉତ୍ତର ଦେଲେ, 'ବାପା ୧୯୮୨ରୁ ମରିଯାଇଛନ୍ତି, ମାଆ ବୃଦ୍ଧାଶ୍ରମରେ।' ମୋର ନାନା ପ୍ରଶ୍ନରେ ସେ ଅକୁଣ୍ଠିତ ଚିତ୍ତରେ ଉତ୍ତର ଦେଉଥିଲେ। ତାଙ୍କ ଠାରୁ ଜାଣିଲି, ପୁଅ ଝିଅ ବଡ ହୋଇଗଲେ ସେମାନେ ପୃଥକ ହୋଇ ରୁହନ୍ତି। ବାପା ମାଆ ମାନେ ବି ତାହା ଚାହାନ୍ତି, ବୃଦ୍ଧାବସ୍ଥାରେ ମଧ ସ୍ୱତନ୍ତ୍ର ରହିବାକୁ ଭଲ ପାଆନ୍ତି। ତେବେ ଛୁଟିଦିନ ମାନଙ୍କରେ ପୁଅବୋହୂମାନେ ସେମାନଙ୍କ ପିଲାଙ୍କ ସହ ମାଆ ବାପାଙ୍କ ପାଖକୁ ଯାଆନ୍ତି କିମ୍ବା ବାପା ମାଆ ପୁଅ ବୋହୂଙ୍କ ଘରକୁ ଆସି କିଛିଦିନ ନାତିନାତୁଣୀଙ୍କ ସହ ରହି ଫେରିଯାଆନ୍ତି। ଲୋକଟି ଠାରୁ ଜାଣିଲି ଯେ କେତେକ ସ୍ଥାନରେ ବିଶେଷତଃ ଗ୍ରାମାଞ୍ଚଳରେ ବାପମାଆମାନେ ବିବାହିତ ପୁଅ ବୋହୂଙ୍କ ସହ ଏକ ସଂଗରେ ମଧ ରହୁଛନ୍ତି।

ଛାଡ଼ପତ୍ର ସଂବନ୍ଧରେ ପ୍ରଶ୍ନ ପଚାରି ଜାଣିବାକୁ ପାଇଲି ଯେ ମନମିଳୁ ଥିବା ପର୍ଯ୍ୟନ୍ତ ଏକ ସଂଗେ ରହନ୍ତି ସ୍ୱାମୀ ସ୍ତ୍ରୀ। ପୃଥକ ହୋଇଗଲେ ଛୋଟ ପୁଅ ଝିଅ ବାପା ପାଖରେ ନୋହିଲେ ମାଆ ପାଖରେ ରହନ୍ତି। ମାଆ ଅନ୍ୟକୁ ବିବାହ କଲେ ନୂତନ ସ୍ୱାମୀର ଇଚ୍ଛା ଉପରେ ପୁଅ ଝିଅଙ୍କ ରହିବା ନିର୍ଭର କରେ। ତେବେ ଅନେକଙ୍କ କ୍ଷେତ୍ରରେ ନୂତନ ସ୍ୱାମୀଟି ପୂର୍ବଜ ସନ୍ତାନଙ୍କୁ ମଧ ଗ୍ରହଣ କରିନିଏ। ପିଲା ମାଆ ପାଖରେ ମାଆର ନୂଆ ସ୍ୱାମୀ ପାଖରେ ଥିଲେ ନୂଆ ସ୍ୱାମୀର ମତ ନେଇ ପିଲାର ନିଜ ବାପା ତାଙ୍କୁ ଦେଖା କରିପାରନ୍ତି। ପିଲାଙ୍କ ପ୍ରତି ଯତ୍ନ ନେବା ଏ ଦେଶର ଲୋକଙ୍କର ପ୍ରଧାନ କର୍ତ୍ତବ୍ୟ, ଏହାକୁ ପାଳନ କରିବା କ୍ଷେତ୍ରରେ ସମାଜର ମଧ ଦାୟିତ୍ୱ ରହିଛି। କେତେକ କ୍ଷେତ୍ରରେ କୁଣ୍ଠିତ ବାପା ମାଆ ହେଲେ ଚର୍ଚ୍ଚର ନନମାନେ ପିଲାର ଲାଳନପାଳନ ଦାୟିତ୍ୱ ନେଇଥାନ୍ତି।

ପେନ୍‌ସନ୍ ବ୍ୟବସ୍ଥା ସଂବନ୍ଧରେ ଜାଣିବାକୁ ପାଇଲି ୬୪ ବର୍ଷ ପରେ ଅବସର ନିଆଯାଏ। ସରକାର କିମ୍ବା କଂପାନୀ ଠାରୁ ପେନସନ୍ ମିଳେ। ସ୍ୱାମୀ ମୃତ୍ୟୁ ପରେ ସ୍ତ୍ରୀ ଫେମିଲି ପେନ୍‌ସନ୍ ପାଏ। ପ୍ରତ୍ୟେକ ଯୁବକ ଯୁବତୀକୁ ଚାକିରି ଦେବାକୁ ସରକାର ବାଧ୍ୟ ନୁହେଁ, ତେବେ ଚାକିରି ବା ନିଯୁକ୍ତି ନ ମିଳିଲେ ବେକାରୀ ଭତ୍ତା ମିଳେ। ବୃଦ୍ଧାଶ୍ରମ ସଂବନ୍ଧରେ ଜାଣିବାକୁ ପାଇଲି ଯେ ଯେଉଁମାନେ ଏଠାରେ ରହନ୍ତି ଏପାର୍ଟମେଣ୍ଟ ଭଡ଼ା ବାବଦ ମାସକୁ ୭୦୦ ଇରୋ ଅର୍ଥାତ୍ ୫୬୦୦ ଟଙ୍କା ଭଡ଼ା ଦିଅନ୍ତି ଏବଂ ଖାଇବା ବାବଦ ରେଷ୍ଟୁରାଣ୍ଟକୁ ଦିନକୁ ୮/୯ ଇରୋ ଦିଅନ୍ତି। ସବୁ ମିଶିଲେ ଜଣେ ଲୋକ ପାଇଁ ପ୍ରାୟ ୧୦୦୦ ଇରୋ ଦୁଇ ଜଣ ବୁଢ଼ାବୁଢ଼ୀଙ୍କ ପାଇଁ ମାସକୁ ୧୩୦୦ ଇରୋ ଦେବାକୁ ପଡ଼େ।

ଲୋକଟି ସ୍କୁଲ ଶିକ୍ଷକ, ଖୋଲା ମନରେ କଥା କହୁଥାଏ। ପିଲା ତିନିଟି ଖେଳ ସାରି ଆସିଲେ, ଗୋଲଗାଲିଆ ସୁନ୍ଦର ପିଲା ୭ ରୁ ୧୨ ବର୍ଷ ଭିତରେ, ଇଂରାଜୀ ଜାଣନ୍ତି। ବାପା କଥା ପ୍ରସଂଗରେ କହିଥାଏ: 'ମା' ଚାଲିଗଲେ, ବି ମୁଁ ମୋର ପିଲାଙ୍କୁ ଛାଡ଼ିବି ନାହିଁ।' ବାପାର କେତେ ସ୍ନେହ ସନ୍ତାନଙ୍କ ପ୍ରତି। ପିଲା ତିନିଟି ଝିଅ ବୋଲି ଭାବିଥିଲି, ପଚାରିଲି ଏମାନେ ସବୁ ଝିଅ ? ବାପା କହିଲେ, ନା' ପୁଅ। ପାଖରେ ଠିଆ ହୋଇଥିବା ସାନ ପିଲାଟି ହସି ହସି କହିଲା 'In our house we are four boys, only one girl, mother'. ଆମ ଘରେ ଆମେ ଚାରିପୁଅ, ଗୋଟିଏ ମାତ୍ର ଝିଅ, ମାଆ। ଆନନ୍ଦିତ ହେଲି ପିଲାର କୌତୁକିଆ କଥାରେ, ସ୍ନେହୋଲ୍ଲାସ୍‌ରେ ପିଲା ତିନିଟି ଓ ଭଦ୍ର ଲୋକର କରମର୍ଦ୍ଦନ କରି ବିଦାୟ ନେଲି।

## ଅନ୍ୟ ଏକ ଦିନର କଥା

ମୋ ପୁଅ ବସାଠାରୁ ଏକ ମାଇଲ ଦୂରରେ ଓେଷ୍ଟର୍ଣ୍ଣ ମାର୍କେଟ୍ ନିକଟରେ ବଡ଼ ଚିଲ୍‌ଡ୍ରେନସ ପାର୍କ, କୃତ୍ରିମଝରେ, ତଳୁ ଉପରକୁ ପାଣି ଉଠୁଛି। ମଧ୍ୟାହ୍ନରେ ଗୋଟିଏ ବେଞ୍ଚ ଉପରେ ସେଠାରେ ବସିଛି। ତିନି ଜଣ ଲୋକ କଥାବାର୍ତ୍ତା ହୋଇ ମୋ ସାମ୍ନାରେ ଗଲେ, ଜଣେ 'ସଲାମ ଆଲେକମ୍' କହି ଅଭିନନ୍ଦନ ଜଣାଇଲା, ଭାବିଲା ବୋଧହୁଏ ମୁଁ ବଂଗଳା ଦେଶ ମୁସଲମାନ, ବଂଗାଳି ଭଳି ଦିଶୁଛି। ଏଠାରେ ଅନେକ ମୁସଲମାନ ଅଛନ୍ତି। କିଛି ସମୟ ପରେ ଆଉ ଜଣେ ହୃଷ୍ଟପୁଷ୍ଟ ଗୋରା ବୁଢ଼ା ଲୋକଟିଏ ମୋ ସାମୁନେ ଚାଲିଯାଉଥିଲା, ରହିଯାଇ ହେଲୋ କହିଲା, ମୁଁ ପ୍ରତ୍ୟୁତ୍ତରରେ ହେଲୋ କହିଲି। ସେ କ'ଣ ପଚାରିଲା ମୁଁ ଇଂରାଜୀରେ କହିଲି, 'I am an Indian' ସେ କହିଲା, 'I am Dutch' ଇଂରାଜୀ ଜାଣନ୍ତି,

ଛିଡ଼ା ହୋଇ ପଡ଼ି ପଚାରିଲି, କେଉଁଠି ରହନ୍ତି ? ସଂଗରେ କିଏ ଅଛନ୍ତି ? ଉତ୍ତର ଦେଲେ ମୁଁ ମୋର ନିଜ ଘରେ ଏହି ପାଖରେ ଅଛି, ଏକୁଟିଆ, ସ୍ତ୍ରୀ ମରିଯାଇଛନ୍ତି; ୭ଟି ପୁଅ ଝିଅ ୨୬ଟି ନାତି ନାତୁଣୀ, ବାହାରେ ଏହି ସହରରେ ଅଛନ୍ତି। ମୋର ଏକ ପ୍ରଶ୍ନର ଉତ୍ତରରେ କହିଲେ, 'ହଁ ସେମାନେ ମଝିରେ ମଝିରେ ଆସନ୍ତି, ମୋର ଭଲ ମନ୍ଦ ବୁଝନ୍ତି। ଗୋଟିଏ ଝିଅ ଆସି ମୋ ଘର ସଫା କରି ଦେଇଯାଏ ପ୍ରତି ସପ୍ତାହରେ, ନିଜେ ରାନ୍ଧି ଖାଏ, ବେଳେବେଳେ ବଜାରରୁ କିଣି ଆଣେ।" କୌତୁହଳୀ ହୋଇ ପଚାରିଲି, "ନାତିନାତୁଣୀ ଆପଣଙ୍କୁ ଖୁବ୍ ଭୁଲ୍ ପାଆନ୍ତି ନା ? ତାଙ୍କର ଉତ୍ତର ଥିଲା 'ସେହିଭଳି' ବୟସ ତାଙ୍କର ୮୨। ଅନ୍ୟ ଏକ ପ୍ରଶ୍ନର ଉତ୍ତରରେ କହିଲେ, 'ମୁଁ ଫିଲ୍‌ପ୍ କଂପାନୀରେ କାମ କରୁଥିଲି, ୨୫ ବର୍ଷ ହେଲା ପେନସନ୍ ପାଉଛି ଯଥେଷ୍ଟ। ସମୟ କିମିତି କାଟନ୍ତି ପଚାରିବାରୁ କହିଲେ 'ଖବରକାଗଜ' ପଢେ, ବୁଲାବୁଲି କରେ, Romance ଉପନ୍ୟାସ ପଢ଼େ, ବେଳେ ବେଳେ କବିତା ପଢ଼େ, କିଛି ସମୟ କଥାବାର୍ତ୍ତା ପରେ ସେ ହାତଘଣ୍ଟାକୁ ଦେଖି କହିଲେ, ୧୨ଟା ୩୦ ହେବାକୁ ଯାଉଛି Eating ସମୟ ହେଲାଣି।' ମୁଁ କରମର୍ଦ୍ଦନ କରି ବିଦାୟ ଦେଲି। ନିଃସଂଗ ଜୀବନରେ ରାସ୍ତା ବଜାର ପାର୍କରେ ବୁଲି ଗପସପ କରିବାରେ ତ ଆନନ୍ଦ ମିଳେ - ବଂଚିବାର ପାଥେୟ।

## ସଂଧ୍ୟାରେ ସୁଜାନ - ଝିପିଝିପି ବର୍ଷା

ସବୁଦିନ ପରି ସଂଧ୍ୟା ସାତଟାରେ ବୁଲି ଯାଇଥିଲି ପାର୍କକୁ। ଓ୍ୱାଟର ଫାଉଣ୍ଟେନ ନିକଟସ୍ଥ ବେଞ୍ଚ୍ ଉପରେ ଭାବୁଛି ଦୂରରେ ଛାଡ଼ି ଆସିଥିବା ସଂାଗ ସାଥୀଙ୍କ କଥା। ଝିପିଝିପି ବର୍ଷା ପଡ଼ିଲା। ପାର୍କ କଡ଼ ତୁର୍କୀ କଲୋନୀକୁ ଗଲି ପାରାପେଟ ତଳେ ମେଘ ଟୋପା ଏଡ଼ାଇ ଦେବାକୁ। ବର୍ଷା ବନ୍ଦ ହୋଇଗଲା। କଲୋନୀର ଶେଷ ମୁଣ୍ଡ ପର୍ଯ୍ୟନ୍ତ ଗଲି, ଲାଲ ରଂଗ ର ଲମ୍ୱା ଘରଟି ଦେଖି ଭାବିଲି ସ୍କୁଲ ହୋଇଥିବ । ଏହି ନିକଟସ୍ଥ ସ୍କୁଲରେ ମୋ ସାନ ନାତି ଶୁଭମ ପଢ଼େ। କୌତୁହଳୀ ହୋଇ ସ୍କୁଲ ପାଖକୁ ଗଲି, ସ୍କୁଲ ସାମ୍ନା ଗୃହ ଲମ୍ୱ ହୋଇ ଠିଆ ହୋଇଛି। ଗୋଟିଏ ଘରର ଦ୍ୱାର ସାମ୍ନାରେ ଠିଆ ହୋଇଛି ସୁନ୍ଦରୀ ଅଳ୍ପ ବୟସୀ ରମଣୀଟିଏ । ପାଖରେ କେତୋଟି ପିଲା ଖେଳୁଛନ୍ତି, ଇଂରାଜୀରେ ପଚାରିଲି, ଏହି ଲାଲ ଘର ସ୍କୁଲ କି ? ସେ ଉତ୍ତର ଦେଲେ ଇଂରାଜୀରେ ହଁ, ଛୋଟ ପିଲାଙ୍କ ସ୍କୁଲ। ତାର ଇଂରାଜୀ କଥା ଶୁଣି ତା ସହ ଇଂରାଜୀରେ କଥାବାର୍ତ୍ତା ହେବାକୁ ମନ ବଳିଲା। ମୋର ପ୍ରଶ୍ନର ଉତ୍ତର ଦେଇ ସେ କହିଲା, ସେ ଏଠାରେ ଏକୁଟିଆ ତିନିଟି ସନ୍ତାନ ସହ ରହେ। ସ୍ୱାମୀକୁ ଛାଡ଼ପତ୍ର ଦେଇଛି। ହଲାଣ୍ଡ ସରକାରଙ୍କ ପେନସନ୍‌ରେ ଚଳୁଛି। ମୋର

ଆଗ୍ରହ ହେଲା ଜାଣିବାକୁ ସେ ପୁନଃ ବିବାହ କରିବାକୁ ଋହେଁ କି ? ତାର ଉତ୍ତର ଥିଲା, ତିନିଟି ସନ୍ତାନ ବଡ଼ ହେଲା ପରେ ସେ ମନଯୋଗୀ ସାଥୀଟେ ପାଇଲେ ବିବାହ କରିପାରେ। କଥାବାର୍ତ୍ତାରୁ ଜଣାଗଲା - ପ୍ରଥମ ସ୍ୱାମୀ ସହ ୯ ବର୍ଷ ରହିବା ପରେ ତାଙ୍କୁ ସେ ବିଦାୟ ଦେଲା, ଅନ୍ୟ ନାରୀ ସହିତ ପ୍ରେମ କରି ତା ସହ କଳିକଜିଆ କରିବାରୁ। ସେ ଦ୍ୱିତୀୟ ସ୍ୱାମୀ ଗ୍ରହଣ କରିଥିଲା। ମାତ୍ର ତା'ର ମାନସିକ ରୋଗ ହେବାରୁ ତାକୁ ମଧ୍ୟ ଛାଡ଼ପତ୍ର ଦେଇଛି। ଦୁଇ ଦୁଇଟି ଛାଡ଼ପତ୍ର ପରେ ସେ ସତର୍କ ହୋଇଯାଇଛି, ଭଲ ସାଥୀ ନ ପାଇଲେ ଏକଲା ଖୁସିରେ ରହିଯିବ। ସ୍ତ୍ରୀ ଲୋକଟି ବିନା କୁଣ୍ଠାରେ ମୋ ପ୍ରଶ୍ନର ଉତ୍ତର ଦେଉଥିବାରୁ ମୁଁ ପଋରିଲି, Are you not feeling any urge to mix with man? ସେ ମୋ ପ୍ରଶ୍ନ ଠିକ୍ ଭାବେ ବୁଝି ନ ପାରିବାରୁ ମୁଁ ପଋରିଲି Don't you think of having sex? sleep with man?' ସେ ଉତ୍ତର ଦେଲା, I have not only body, I have a head' ଏକାକୀ ଜୀବନଯାପନ କରିପାରୁଛି, ଯେବେ ମନଲାଖି ପୁରୁଷ ଯୋଟିବ, ଦେଖାଯିବ। ମୁଁ ଭାବିଲି ସେ କେଥୋଲିକ୍ ହୋଇଥିବ। ପଋରିବାରୁ ସେ କହିଲା ନା, ତାର ଧର୍ମ ଢେହୋବ। ତାର ବାପା ଯୁଗୋସ୍ଲୋଭିଆରୁ ଆସି ଜର୍ମାନୀରେ କାମ କରୁଥିଲେ। ବାପା ସୁନ୍ଦର ସ୍ୱାସ୍ଥ୍ୟବାନ ଥିବାରୁ ଡଚ ସ୍ତ୍ରୀ ଲୋକଟି ତାଙ୍କ ମନ ନେବାକୁ ଚେଷ୍ଟା କରି ପ୍ରେଗ୍ନାଣ୍ଟ ହୋଇଗଲା। ବାପା ଆଉ ଅରାଜି ହେଲେନି । ତାକୁ ବିବାହ କରି ଏ ପର୍ଯ୍ୟନ୍ତ ସଂଗରେ ଅଛନ୍ତି, ଯଦିଓ ତା'ର ମାଆ ଏତେ ସୁନ୍ଦରୀ ନୁହେଁ। ମୁଁ କହିଲି ଡଚ ସ୍ତ୍ରୀ ଲୋକତ ଗୋରୀ ସୁନ୍ଦରୀ, କାହିଁକି ତୁମ ବାପା ଆକୃଷ୍ଟ ହେଉ ନଥିଲେ ? ସେ ଉତ୍ତର ଦେଲା ବେଶ୍ ଚତୁରତାର ସହ, 'ଈଶ୍ୱରଙ୍କ ସୃଷ୍ଟିରେ ନାନାରଂଗର ଫୁଲ, ନାଲି ନେଳି ସବୁଜ ମୋର ଯୁଗୋସ୍ଲୋଭିଆ ବାପା ବ୍ରାଉନ କଲରକୁ ଭଲ ପାଉଥିଲେ। ମୁଁ ମଧ୍ୟ ବ୍ରାଉନକଲର୍ ଲୋକଙ୍କୁ ଭଲ ପାଏ। ଡଚଙ୍କ ଧଳା କଅଁରିଆ କେଶ ମୋତେ ଭଲ ଲାଗେନା। ସେ ପୁଣି କହିଲା- ହିନ୍ଦି ସିନେମା ଦେଖିବାକୁ ମୋତେ ଭଲ ଲାଗେ, ହିନ୍ଦି ସିନେମାର ନାରୀମାନଙ୍କର ବେଶଭୂଷା ଶାଢ଼ି, ଅଳଙ୍କାର, କଳାବାଳ, କଳା ଡୋଳା ଖୁବ୍ ଆକର୍ଷଣୀୟ। ମୁଁ ପଋରିଲି ଯୁଗୋସ୍ଲୋଭିଆର ଲୋକେ ଗୀତ ନାଚ ଭଲପାଆନ୍ତି ନା ? କେତେକଲୋକ ଭଲପାଆନ୍ତି ବୋଲି ସେ କହିଲା, ଯୁଗୋସ୍ଲୋଭିଆ ହିନ୍ଦି ସିନେମା ଓ ଗୀତର ବେଶ୍ ଆଦର ବୋଲି ଜଣାଇଲା। ଏଠାରେ ଅନେକ ଡଚ ଘରେ ବୁଦ୍ଧମୂର୍ତ୍ତି ଅଛି। ବୁଦ୍ଧଙ୍କୁ ଦେବତା ବୋଲି ମାନନ୍ତି। ଡଚମାନେ ଧର୍ମ କ୍ଷେତ୍ରରେ ଉଦାର, ମାତ୍ର ଏହି ୫/୬ ବର୍ଷ ହେଲା ମୁସଲମାନଙ୍କ ପ୍ରତି ସେମାନଙ୍କର ଘୃଣା ଦେଖାଯାଉଛି। ନାଁ ତାର ପଋରି ବୁଝିଲି 'ସୁଜାନା' ବୟସ ୩୬, ଅଚ୍ଚ ଉଚ୍ଚ ଉଚ୍ଚତା ନେଇ ସ୍ୱାସ୍ଥ୍ୟ ୟୁରୋପୀୟ ପୋଷାକରେ ବେଶକୋମଳ ଓ ସୁନ୍ଦର ଦିଶୁଥାଏ।

ଝିପି ଝିପି ବର୍ଷା ପୁଣି ଆରମ୍ଭ ହେଲା, ତାଠାରୁ ବିଦାୟ ନେଇ ଆସିଲି କରମର୍ଦ୍ଦନ କଲି ଦୁଇଥର, କଅଁଳ ହାତ, ମୁଣ୍ଡରେ ଈଷତ କଳା କେଶ, ମଥାରେ ହାତ ରଖି ଆଶୀର୍ବାଦ କଲି, କହିଲି, ବୟସ୍କ ଭାରତୀୟମାନେ ସାନଙ୍କୁ ଏହିପରି ଆଶୀର୍ବାଦ କରନ୍ତି। ମୋ ଆଶୀର୍ବାଦରେ ସ୍ନେହ ଓ ପ୍ରଶଂସା ମିଶିଯାଇଥାଏ।

## ମୁଁ ତାଙ୍କୁ ଭଲ ପାଏ, କିନ୍ତୁ...

ଥଣ୍ଡା ପବନ ବହୁ ନଥାଏ, ଓ୍ୱେଷ୍ଟର୍ନ ପାର୍କକୁ ବାହାରିଲି ସଂଧ୍ୟାରେ। ଓଷ୍ଟେର୍ନ ପାର୍କକୁ ଗଲେ ମନେପଡ଼ି ଯାଏ ସୁଜାନ କଥା। ସ୍ୱାମୀ ପରିତ୍ୟକ୍ତା ଦୁଃଖିନୀ ୟୁଗୋସ୍ଲୋଭିଆ ନାରୀଟିଏ। ଛୋଟ ପିଲାଙ୍କ ସ୍କୁଲ ପାଖରେ ତା'ଘର। ଆଜି ବି ଦେଖା ମିଳିଲା ନାହିଁ। ଫେରିଆସୁଛି ପାର୍କ ଦେଇ, ବେଞ୍ଚ ଉପରେ ଏକୁଟିଆ ବସିଛି ସୁନ୍ଦରୀ ରମଣୀଟିଏ, ହାତରେ ପ୍ରତ୍ରିକାଟିଏ। ଭାବିଲି ସୁଶିକ୍ଷିତା ହୋଇଥିବ। ପଚାରିଲି ଇଂଲିସ ଜାଣ? ଉତ୍ତର ଥିଲା, Yes to some extent' ଛିଡ଼ା ହୋଇଥାଏ,ପଚାରିଲି ତୁମେ କ'ଣ ଡଚ, ନା ମୁଁ ଟର୍କିସ, ତୁର୍କିର, ପାଖରେ ରୁହ? ହଁ, ଏଠାରେ ଟିଲବର୍ଗ ସହରରେ ନା ପରିବାର ସହ ଏକଲା, କିଛି ଦୂରରେ ୭/୮ ବର୍ଷର ଝିଅଟେ ଖେଳୁଥାଏ। ପାଖକୁ ଆସିଲା, ସ୍ତ୍ରୀ ଲୋକଟି କହିଲା, ଏ ମୋ ଝିଅ। ବାପା ମାଆ ହଲାଣ୍ଡର ଅନ୍ୟ ସହରରେ। ଆଉ କିଏ ସଂଗରେ ଅଛି? ସ୍ୱାମୀ ଏୟାରସର୍ଭିସ୍‌ରେ କାମ କରନ୍ତି। Weekend ରେ ଆସନ୍ତି। 'ତୁମ ସ୍ୱାମୀ କ'ଣ ଡଚ? ହଁ ଡଚ, ମାତ୍ର ଇସଲାମ୍ ଧର୍ମ ଗ୍ରହଣ କରିଛନ୍ତି'। ସ୍ତ୍ରୀ ଲୋକଟିର ବୟସ ୩୫/ ୪୦ ଭିତରେ ହେବ। ଗୋଲ ମୁହଁ, ନୀଳ ଆଖି, ସୁନ୍ଦର ସ୍ୱାସ୍ଥ୍ୟ, ଅତି ମୋଟା ନୁହେଁ କି ପତଳା ନୁହେଁ, ଥଣ୍ଡା ପାଇଁ ବୋଧହୁଏ ସୁଇଟର ଜେକେଟ୍ ପିନ୍ଧିଥାଏ, ସମୁନ୍ନତ ସ୍ତନ, ମାତ୍ର ଘୋଡ଼େଇ ହୋଇ ରହିଥାଏ। ସ୍ତ୍ରୀ ଲୋକଟି ନିଶ୍ଚୟ ଭଦ୍ର, କହିଲା, ବସିଯାଆନ୍ତୁ। ବେଞ୍ଚ୍ ଉପରେ ଏକୁଟିଆ, ଜାଗା ଥାଏ, ବସିଗଲି ବେଞ୍ଚରେ, ଅନ୍ଧାର କ୍ରମେ କ୍ରମେ ମାଡ଼ି ଆସୁଥାଏ। ପାର୍କରେ ଆଉ କେହି ନଥାନ୍ତି, ଜଣେ ଅଧେ ଲୋକ ସେଇବାଟ ଦେଇ ଯାଉଥାଏ। ଏକାବେଞ୍ଚରେ ବସିବାରୁ ମନେ ହେଲା ସତେ ଯେମିତି ପୂର୍ବ ପରିଚିତ। ଆତ୍ମୀୟତା ବଢ଼ିଗଲା, ପାଖ ପରିବାରର କଥା। ପଚାରି ବସିଲି, 'କେଉଁଠି ଜନ୍ମ ହୋଇଥିଲ?' ସେ କହିଲା, 'କୋଏରିସ୍‌ରେ' 'ବାପା କ'ଣ କରୁଥିଲେ? 'ବାପା ଜଣେ Priest କୋରାନ୍ ପଢ଼ନ୍ତି' ବଡ଼ ଉଦାର। ମୁଁ ପଚାରିଲି ଟର୍କିସ ସ୍ତ୍ରୀ ଲୋକ ମୁଣ୍ଡରେ କଭର ଦେଇଥାନ୍ତି, ତୁମେ କାହିଁକି ଦେଇନାହଁ" ? ସେ ଉତ୍ତର ଦେଲା 'ବାପା ପ୍ରିଷ୍ଟ ଦେଲେ ମଧ ବଡ଼ ଉଦାର ପ୍ରକୃତିର ଲୋକ। ସେ କହନ୍ତି, ଇସଲାମ୍ ଧର୍ମ ହୃଦୟରେ ଥାଏ, ପୋଷାକ

ପତ୍ରରେ ନଥାଏ, ତାଙ୍କର ସ୍ୱାଧୀନ ମନୋଭାବ ଆମକୁ ସେପରି କରି ଦେଇଛି, 'ମୁଁ କହିଲି, ତୁର୍କୀର କାମାଲପାଶ ସେ ଦେଶର ମୁସଲମାନଙ୍କ ମନରୁ ରକ୍ଷଣଶୀଳତା ହଟାଇ ଦେଇଥିଲେ। ସ୍ତ୍ରୀ ଲୋକଟି କାମାଲପାଶାଙ୍କୁ ଜାଣିପାରିଲା, କହିଲା, ସେ ତୁର୍କୀର ମହା ମାନିଷୀ ଥିଲେ। ମୁଁ ପଚାରିଲି ମୁସଲମାନ ସ୍ତ୍ରୀ ଲୋକମାନେ ତ ବେଶୀ ପିଲା ଜନ୍ମ କରିବାକୁ ଚାହାନ୍ତି, ତୁମେ କ'ଣ ଗୋଟାକରେ ସନ୍ତୁଷ୍ଟ ? ପୁଅଟିଏ ଚାହଁ ନା ? ତାର ଉତ୍ତର ଥିଲା ପ୍ରଥମେ ଚାହିଁଥିଲି ପୁଅଟେ, ଝିଅ ହେଲାପରେ ଆଉ ସେପରି ପ୍ରବଳ ଇଚ୍ଛା ନାହିଁ ? ଝିଅ ଜନ୍ମ ବେଳେ ଗୋଟିଏ ସଂକ୍ରାମକ ରୋଗ ହୋଇଥିଲା, ପିଲା ପେଟରେ ଥିବାରୁ ବିଶେଷ କ୍ଷତି କଲା ନାହିଁ ବୋଲି ଡାକ୍ତର କହିଲେ ଯୌନରୋଗ ମାତ୍ର ଏଡ଼ସ୍ ନୁହେଁ। ଏହା ସ୍ୱାମୀଙ୍କ ଠାରୁ ଆସିଥିଲା। ଏବେ ଭଲ ଥିଲେ ବି ପିଲା ଜନ୍ମ କରିବାକୁ ଚାହୁଁନି। ମୁଁ କୌତୁହଳୀ ହୋଇ ପଚାରିଲି ;'ଏବେବି ସ୍ୱାମୀ ତୁମର ଅନ୍ୟ ଆଡ଼େ ଯାଉଛନ୍ତି ? ଅନ୍ୟକୁ ଭଲ ପାଉଛନ୍ତି ? ପାଉଥିବେ, ତାଙ୍କର ସ୍ୱଭାବ ସେପରି, ଅଠର ବର୍ଷ ହେଲା ତାଙ୍କ ସଂଗରେ ମିଶିଛି। ତାଙ୍କ ସ୍ୱଭାବ ଜାଣିଛି। ମୁଁ-ତାଙ୍କୁ ଭଲ ପାଇ ବାହା ହୋଇଥିଲି। ସେ ଦେଖିବାକୁ ବେଶ୍ ସୁନ୍ଦର, ସ୍ନେହୀ ମଧ। ମାତ୍ର ନାରୀ ପ୍ରତି ଦୁର୍ବଳତା ତାଙ୍କର ପ୍ରବଳ, ମୁଁ ସିଧାସଳଖ ପଚାରିଲି, 'ଅନ୍ୟ ସ୍ତ୍ରୀ ଲୋକ ସହ Sex କରନ୍ତି ?' Does he sleep with other women? 'କରୁଥିବେ' ମୁଁ ତାଙ୍କ ମୁହଁରୁ ଜାଣିପାରେ।' ମୁଁ ସହାନୁଭୂତିର ସହ କହିଲି ତୁମ ମନରେ ବଡ଼ ଦୁଃଖ ଯନ୍ତଣା ହେଉଥିବ। ତୁମେ ତାଙ୍କ ଉପରେ ରାଗ ନାହିଁ ? ସେ ଉତ୍ତର ଦେଲା 'ରାଗେ ଦୁଃଖ ହୁଏ, ତଥାପି କ'ଣ କରିବି ଭଲ ପାଇ ବାହା ହୋଇଥିଲି। ଖୁବ୍ ଭଲ୍ ସ୍ନେହୀ ଲୋକ, ନିଜକୁ କଣ୍ଟ୍ରୋଲ କରି ପାରୁନାହାଁନ୍ତି। 'ତୁମେ ତାଙ୍କୁ ଡିଭୋର୍ସ୍ କରିବା କଥା ଭାବୁନା ? ଏଠାକାର ଲୋକ ତ ମନ ନ ମିଳିଲେ ଡିର୍ଭୋସ କରି ଅନ୍ୟ ଜଣକୁ ବାହା ହେଉଛନ୍ତି। ସେ ଉତ୍ତର ଦେଲା ଆମ ଧର୍ମରେ ନାରୀମାନେ ସେପରି ଚିନ୍ତା କରିବାକୁ ନିଷେଧ କରାଯାଉଛି। ମନରେ ସେ ଚିନ୍ତା ଆସିନାହିଁ' ମୁଁ ପଚାରିଲି, 'ସ୍ୱାମୀ ଅନ୍ୟ ନାରୀ ଉପଭୋଗ କରୁଛି, ତୁମେ ଏକୁଟିଆ, ତୁମ ମନରେ ଇଚ୍ଛା ହେଉନି ପୁରୁଷ ସହ ମିଶିବାକୁ ?' ସେ ଟିକିଏ ଲାଜେଇ ଗଲା, ବିନା କୁଣ୍ଠାରେ କହିଲା, 'ଇଚ୍ଛା ହେଲେ ମଧ ନିଜକୁ ନିୟନ୍ତ୍ରଣ କରି ଦେଉଛି"। ଗୋଟିଏ ସମୟରେ ଡିଭୋର୍ସ କଥା ଚିନ୍ତା କରିଥିଲି, ସେ ପ୍ରାୟ ଦୁଇବର୍ଷ ଘରକୁ ଆସି ନଥିଲେ। ମୋ ବାପା ୨୦୦୬ରେ ଏକ ସାଂଘାତିକ ଦୁର୍ଘଟଣାରେ ପଡ଼ିଲେ, ସେତେବେଳେ ମୋ ସ୍ୱାମୀ ଆସି ତାଙ୍କର ବହୁତ ସେବା କରି ତାଙ୍କୁ ଭଲ କଲେ। ସେହି ଦିନ ଠାରୁ ତାଙ୍କ ପ୍ରତି ମୋର ସ୍ନେହ ଅନୁରକ୍ତି ବଢ଼ିଗଲା।' ମୋର ଗୋଟିଏ ପ୍ରଶ୍ନରେ ସେ କହିଥିଲା, 'କିଛିଦିନ ତଳେ ସେ ଗୋଟିଏ କଂପାନୀରେ ହେୟାର ଡ୍ରେସ୍‌ର ରୂପେ କାର୍ଯ୍ୟ କରୁଥିଲା। କଂପାନୀ ବନ୍ଦ ହୋଇଯିବାଠାରୁ ସେ କିଛି କାମ କରୁନି। ଚାକିରି ଖୋଜୁଛି।" ଚଳୁଛି କିମିତି ପଚାରିବାରୁ ସେ କହିଲା ମୋର ସ୍ୱାମୀ

ପ୍ରତି ମାସଟଙ୍କା ଦିଅନ୍ତି, ସପ୍ତାହ ଶେଷରେ ଆସୁଛନ୍ତି 'ମୁଁ ପଚାରିଲି ସେ ଆସିଲେ ତୁମ ପାଖରେ ଶୁଅନ୍ତି ନା ? ତୁମର Sexual relation ହୁଏନା ? ସେ କହିଲା, ସିଏ ଚାହାଁନ୍ତି, ମୁଁ କିନ୍ତୁ ସହମତ ହୁଏନା । ତା କଥାରେ ବିସ୍ମିତ ହେଲି, କହିଲି ତୁମେ ତାଙ୍କର ସ୍ତ୍ରୀ ତୁମର କର୍ତ୍ତବ୍ୟ ହେଉଛି ତାଙ୍କୁ ସନ୍ତୁଷ୍ଟ କରିବା, ସ୍ନେହ ଦେଇ ହୃଦୟ ଜୟ କରିବା' । ସେ ଉତ୍ତର ଦେଲା, ତାଙ୍କୁ ମୁଁ ସ୍ନେହ କରେ, କିନ୍ତୁ ସେ ନାରୀ ସଂପର୍କିତ ସ୍ୱଭାବ ଛାଡୁ ନଥିବାରୁ ମୁଁ ଦେହ ଦିଏନା । ମୁଁ ପୁଣି ପଚାରିଲି 'ସେ ଘରକୁ ଆସିଲେ ତୁମକୁ ଆଲିଙ୍ଗନ embrace କରନ୍ତି ନାହିଁ? କିସ୍ ଦିଅନ୍ତି ନାହିଁ? 'ହଁ କରନ୍ତି, ଆଜି ତ ଆସିଥିଲେ, ସେ ସେୟା କଲେ ଏବଂ ଚାହିଁଲେ - ମୁଁ ରାଜି ହେଲିନି' । ନାରୀ ହିସାବରେ ପୁରୁଷର ସ୍ପର୍ଶ ପାଇଲେ ତୁମର ଆବେଗ ବଢ଼େନି ? ଇଚ୍ଛା ଜାତ ହୁଏନି ? ସାମାନ୍ୟ ହସି ଉତ୍ତର ଦେଲା, 'ହୁଏ ତଥାପି ଦୂରେଇ ଦିଏ' ତା କଥାରୁ ମନେ ହେଲା ରୋଗ ଭୟରେ ସେ ଯୌନ ସଂପର୍କ ସ୍ୱାମୀ ସହିତ ରଖୁନି । ଝିଅଟି ଥିବାରୁ ସ୍ୱାମୀ ତାର କର୍ତ୍ତବ୍ୟକୁ ସଂପାଦନ କରୁଛି । ଭଲ ପାଇ ବାହା ହୋଇଥିବାରୁ ଅତୀତ ପ୍ରେମର ମଧୁରସ୍ମୃତି ଏ ପର୍ଯ୍ୟନ୍ତ ବି ତାକୁ ଆଚ୍ଛନ୍ନ କରି ରଖିଛି । ଏତେ ଖୋଲାମନ, ସ୍ପଷ୍ଟକଥା ସ୍ତ୍ରୀ ଲୋକଟିର, ମୋତେ ଅଭିଭୂତ କରିଦେଲା । ପାର୍କ ଜନଶୂନ୍ୟ ଅଂଧାରିଆ, ତା କରମର୍ଦ୍ଦନ କରି ପାପୁଲିରେ ଚୁମା ଦେଲି । କ'ଣ ଭାବି ସେ ପଚାରିଲା, 'ଆଉ କେବେ ଦେଖା ହେବ ?' କାଲି ମଧ୍ୟାହ୍ନରେ ଆସିପାରେ - କହି ବିଦାୟ ନେଲି, ପଛରୁ ଶୁଭୁଥାଏ କଅଁଳ ସ୍ୱର । ବାୟେ ।

## ପରୀମାନଙ୍କ ଘେରରେ

ସେଦିନ ଫେରିବାବେଳେ ପାର୍କରୁ ଆଧୁନିକା ତୁର୍କୀ ରମଣୀ ନେନାଫ ପଚାରିଥିଲା 'କାଲି ଆସିବେ ନା ?' ତାପରଦିନ ସଂଧ୍ୟାରେ ଜେନଫା ବସିବା ସ୍ଥାନକୁ ଗଲି ସେ ଆସି ନଥିଲା । ରମ୍‌ଜାନରେ ବ୍ୟସ୍ତ ଥିବ ବୋଧହୁଏ । ସେ କହୁଥିଲା ତାକୁ ଭାରତୀୟ ଲୋକ ଭଲ ଲାଗେ । ସେମାନେ ସ୍ନେହୀ, ମେଳାପୀ, ଭାରତ ସହିତ ତୁର୍କୀସ୍ଥାନ ଓ ମୁସଲିମ୍ ସଂପ୍ରଦାୟର ସଂପର୍କ ପୁରାତନ । ବିଦେଶରେ ଅନ୍ତରଂଗ ଭାବଆଦାନପ୍ରଦାନ ପାଇଁ ମନ ବ୍ୟାକୁଳ ହୁଏ । ଜେନାଫକୁ ନ ଦେଖି ନିକଟସ୍ଥ କୃତ୍ରିମ ଫାଉଣ୍ଟେନ ପାଖରେ ଥିବା ବେଞ୍ଚ ଉପରେ ବସିଲି । କିଛିକ୍ଷଣ ପରେ ସେଠାରୁ ଉଠି ଅନ୍ୟତ୍ର ଯିବା ଆରମ୍ଭ କରିଛି, ଚାରିଟି ବାଳିକା ୮ ବର୍ଷରୁ ୧୨ ବର୍ଷ ବୟସର ବୁଦାବାଡ଼ ପଛପାଖ ଢିପରୁ ଉଠି ଆସିଲେ । କହୁଥାନ୍ତି 'ଆମେ ଇଂରାଜୀ ଜାଣୁ' ମୁଁ କହିଲି Alright, I am from India, ସେମାନେ କହିଲେ We are Turkey ସେମାନଙ୍କ ଭିତରୁ ଜଣେ କହିଲା ଓଃ,ଐଶ୍ୱରିଆ ଦେଶର । ମୁଁ ପଚାରିଲି, ତୁମେ ଐଶ୍ୱରିଆ ହେବ ? ଝିଅଟିଏ ଉତ୍ତର ଦେଲା "I am fond of Aisoria"

ମୁଁ ପଚାରିଲି ଅମିତାଭବଚନକୁ ଜାଣ ? ତାଙ୍କ ଭିତରୁ ଜଣେ କହିଲା ଆମେ ସାରୁଖାଁକୁ ଜାଣୁ। ସେମାନେ ହିନ୍ଦି ଫିଲମ୍ ଟିଭିରେ ଦେଖନ୍ତି। ଝିଅଗୁଡ଼ିକ ମୋତେ ଘେରି ଠିଆ ହୋଇଥାନ୍ତି। ଏକକୁ ଆରେକ, ସୁନ୍ଦର, କଳା କେଶ, ସୁନା ରଂଗର ଦେହ, ତୀଖ ନାକ, ଜଣେ ମୋ ଘନ କେଶକୁ ଚାହିଁ କହିଲା, So much hair. ବୃଦ୍ଧମାନଙ୍କ ମୁଣ୍ଡରେ ଏତେ ବାଳ ସେମାନେ ବୋଧହୁଏ ଦେଖି ନଥିଲେ। ମୁଁ ପଚାରିଲି ତୁମ grand pa ପାଖରେ ଅଛନ୍ତି ? ତାଙ୍କ ଭିତରୁ ଜଣେ କହିଲା, ମୋର ଗୋଟିଏ ଗ୍ରାଣ୍ଡଫାଦର ଅଛି। ହଲିଡ଼େ କରୁଛନ୍ତି ଟର୍କି ରେ। ସେମାନଙ୍କ ମଧ୍ୟରୁ ସାନ ଝିଅଟି ମୋ ଦେହକୁ ଲାଗିକି ଛିଡ଼ା ହୋଇଥାଏ। ମୁଁ ତାକୁ କୋଳେଇ ଦେଲି, ଝିଅଟି ନାମ ପଚାରିଲି, ଜଣଙ୍କ ନା ଅହଲ୍ୟା, ଝିଅମାନେ ତାଙ୍କ ତୁର୍କୀ ଭାଷାରେ କ'ଣ କହି ହସୁଥାନ୍ତି। ମୋର ପ୍ରଶ୍ନରେ ସବୁଠୁ ବଡ଼ ଝିଅଟି କହିଲା, ସେ ଗୀତ ଜାଣେନା, ନାଚ ଜାଣେ। ସେମାନଙ୍କ ପିଠି ଥାପୁଡ଼େଇ ଦେଲି, ମନେ ହେଲା ସେମାନେ ସବୁ ମୋ ନାତୁଣୀ, ବୁଢ଼ା ଜେଜେ ବାପାଙ୍କୁ ନେଇ ଖେଳୁଛନ୍ତି, ହସ ଖୁସି ହେଉଛନ୍ତି, ମାନବୀୟ ସ୍ନେହର ସ୍ୱତଃ ପରିପ୍ରକାଶ। ସେଠି ଭାଷା, ଜାତି, ଦେଶର ପ୍ରଭେଦ ନଥାଏ। ଶିଶୁର କୌତୁହଳ କୈଶୋରର ସ୍ୱତଃସ୍ଫୁର୍ତ୍ତ ଆବେଗ, ନିର୍ମଳ ଆନନ୍ଦର ଉତ୍ସ। ପ୍ରାକ୍‌ଶେଷ ଦିନରେ ହଲାଣ୍ଡର ସ୍ୱର୍ଗୀୟ ଉପହାର।

## (Utrecht) ଉତ୍‌ରେକକୁ ଯାତ୍ରା

ପୁଅର ସାଂଗ ପଦାର୍ଥ ବିଜ୍ଞାନର ଅଧ୍ୟାପକ ମିଶ୍ରଙ୍କ ଘରକୁ ଯାଇଥିଲୁ ଉତ୍‌ରେକ୍। ଆମଷ୍ଟାରଡ଼ାମର ନିକଟ। ହଲାଣ୍ଡର ଏକ ପୁରାତନ ସହର। ସହରଟି ଖ୍ରୀଷ୍ଟାବ୍ଦ ୪୮ରେ ରୋମ୍ ସମ୍ରାଟ କ୍ଲଡ଼ିଅସ୍ **(Claudius)** ଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା। ବର୍ତ୍ତମାନର ଡୋମ୍‌ସ୍କାରର ଗୋଟିଏ ସ୍ଥାନରେ ରୋମାନମାନେ ଗୋଟିଏ ଦୁର୍ଗ ନିର୍ମାଣ କରିଥିଲେ। ୬୩୦ ମସିହାରେ ଫ୍ରାନ୍କ ସୈନିକଙ୍କ ପାଇଁ ଏଠାରେ କାଠର ଗୋଟିଏ ଚର୍ଚ୍ଚ ନିର୍ମାଣ କରାଯାଇଥିଲା। ୬୯୫ ମସିହାରେ ସେଣ୍ଟମାର୍ଟିନ ଚର୍ଚ୍ଚ ନିର୍ମାଣ କରିଥିଲେ ଉଇଲପୋର୍ଡ଼। ୧୦୨୩ରେ କେଥେଡ୍ରା ଅପା ଏଡେଲ୍‌ବୋଲଡ୍ ନିର୍ମିତ ହୋଇଥିଲା। ୧୨୫୩ରେ ଅଗ୍ନିରେ ଚର୍ଚ୍ଚଟି ଧ୍ୱଂସ ହୋଇଯିବାରୁ ୧୨୫୪ରେ ବର୍ତ୍ତମାନର ଗୋଥିକ ଚର୍ଚ୍ଚର ଭିତ୍ତିସ୍ଥାପନ କରାଯାଇଥିଲା। ଗୋଲାକାର କଠିନ ପଥରର ରୋମାନ ଚର୍ଚ୍ଚସ୍ଥାନରେ ହାଲୁକା ଗମ୍ବୁଜର ଗୋଥିକ ଚର୍ଚ୍ଚ ତିଆରି କରାଗଲା। ୧୬୭୫ରେ ଘୂର୍ଣ୍ଣିବାତ୍ୟାରେ ଚର୍ଚ୍ଚଟି ଭାଙ୍ଗି ପଡ଼ିବାରୁ ପୁନଃନିର୍ମିତ ହେଲା।

ଡୋମକାର୍କ ଚର୍ଚ୍ଚର ବର୍ଣ୍ଣିଳ ଇତିହାସ ଉତ୍ଥାନ ପତନର କଥା ସମସ୍ତଙ୍କୁ ମୁଗ୍ଧ କରେ। ୧୫୮୦ରେ ରୋମାନ କେଥୋଲିକ୍‌ମାନଙ୍କୁ ନିଷେଧ କରାଯାଇ ୧୫୮୧ରୁ

ପ୍ରୋଟେଷ୍ଟାଣ୍ଟମାନଙ୍କୁ ଅନୁମତି ଦିଆଗଲା, କାଲ୍‌ଭିନିଷ୍ଟଙ୍କ ଦ୍ୱାରା। ୧୬୭୨ରେ ଫରାସୀ ଲୋକେ ଡୋମକାର୍କ ଅଧିକାର କରି ରୋମାନ୍ କାଥୋଲିକ୍ ସେବା ପ୍ରବର୍ତ୍ତନ କଲେ। ୧୬୭୩ରେ, ଫ୍ରାନ୍ସ ଲୋକଙ୍କ ପଳାୟନ ପରେ କାଲଭିନିଷ୍ଟ ମାନେ ଅଧିକାର କଲେ। ବର୍ତ୍ତମାନର ବ୍ରୋଞ୍ଜ ଦ୍ୱାର ୧୯୯୬ରେ ନିର୍ମିତ। ଚର୍ଚ୍ଚ ଦେହରେ ଆଧୁନିକ କାରୁକାର୍ଯ୍ୟ, ୧୯୮୨ରେ କରାଯାଇଛି। ଖ୍ରୀଷ୍ଟଙ୍କ ୪ ପ୍ରକାର ରୂପ ଅଙ୍କାଯାଇଛି। ଚର୍ଚ୍ଚ ଦେହରେ ଖ୍ରୀଷ୍ଟଙ୍କ ୪ ପ୍ରକାର ଚିତ୍ର ଦେଖିବାକୁ ମିଳେ। ସାମ୍ନାରେ ସେଣ୍ଟମାର୍ଟିନଙ୍କ ମୂର୍ତ୍ତି।

ଘୂର୍ଣ୍ଣିବାତ୍ୟା ପୂର୍ବେ ଗୀର୍ଜାର ଲମ୍ବ ଥିଲା ୯୯.୫୮ ମିଟର ପତନ ପରେ ୫୦ ମିଟର। ଉଚ୍ଚତା ୩୧.୪୦ ମିଟର ବିଷ୍ଟୋନ ପର୍ଯ୍ୟନ୍ତ, ଛାତ ପର୍ଯ୍ୟନ୍ତ ଉଚ୍ଚତା ୪୧.୬୦ ମିଟର, ମୋଟ ଓସାର ୪୦ ମିଟର, ପ୍ରଧାନ ଚର୍ଚ୍ଚକୁ ଲାଗି ଥିଲା। ପୁରାତନ ମୋନାଷ୍ଟ୍ରି ପୃଥକ କରାଯାଇଛି। ସାମ୍ନାରେ ପ୍ରଶସ୍ତସ୍ଥାନ, ପାଖକୁ ଲାଗି କିଛି ଦୂରରେ ସୁନ୍ଦର ରେଷ୍ଟୁରାଣ୍ଟ, ମେରୀଙ୍କ ସୁନ୍ଦର ମାର୍ବଲମୂର୍ତ୍ତି ଓ ଜନୈକ ସମ୍ରାଟଙ୍କ ବ୍ରୋଞ୍ଜ ମୂର୍ତ୍ତି ଚତୁପାର୍ଶ୍ୱସ୍ଥ ଯାତ୍ରୀମାନଙ୍କୁ ସହଜରେ ଆକର୍ଷଣ କରିନେଉଛି।

ଉତ୍ରେକ ସହର ଭିତରେ ବହୁଧାରା ହୋଇ କେନାଲ ବହିଯାଇଛି। କେନାଲର ଦୁଇଧାରରେ ପୁରାତନ ନୂତନ କୋଠାଘର, କେନାଲରେ ନୌକା ବିହାର ବେଶ ଉଦ୍ଦୀପନାମୟ। କୂଳରେ ବସି ଲୋକେ ଋପାନ କରିବା ସହ ରମଣୀୟ ଦୃଶ୍ୟ ଓ ଶୀତଳ ପବନ ଉପଭୋଗ କରନ୍ତି।

ମୁକ୍ତ ଚିନ୍ତା ନିର୍ମଳପ୍ରେମର ମଣିଷ ହଲାଣ୍ଡବାସୀ, ଡଚମାନେ ଭାବନ୍ତି :

"People who are here
dream of a world without war
where fathers can laugh
where mothers can sing.
where children can play.

ଡୋମକାର୍କ ଚର୍ଚ୍ଚର ପ୍ରିଷ୍ଟମାନେ ପ୍ରାର୍ଥନା କରନ୍ତି, ହେ ଈଶ୍ୱର ପୃଥିବୀ ଏତେ ଅନ୍ଧକାରରେ, ତୁମର ଆଲୁଅ ଆମ ଉପରେ ପକାଅ, ତୁମର କଥା ଆମେ ଶୁଣୁ - ଆମକୁ ଶାନ୍ତି ଦିଅ।

## ଟିଲବର୍ଗ ୟୁନିଭରସିଟ୍ :

ଟିଲବର୍ଗ ୟୁନିଭରସିଟ୍ ମାତ୍ର ୩୦ ବର୍ଷର ପୁରୁଣା। ତଥାପି ଇୟୁରୋପରେ ଏହାର ସ୍ଥାନ ପଞ୍ଚମରେ। କେତେଗୁଡ଼ିଏ ବିଭାଗର ମାନ ଖୁବ୍ ଉଚ୍ଚରେ ଥିବାରୁ ଏପରି ଖ୍ୟାତି ଅର୍ଜନ କରିଛି। ସୁନାମ ଅର୍ଜନ କରିଥିବା ବିଭାଗ ଭିତରେ Economis, Law & International

Business ଅନ୍ୟତମ। ଏହାର Institute of Development Studies ର ମଧ୍ୟ ସୁନାମ ଅଛି। ପୁତ୍ର ଅମରେନ୍ଦ୍ର ଏହି ବିଶ୍ୱବିଦ୍ୟାଳୟରୁ Development Economics, ଜଗତୀକରଣର ପ୍ରଭାବ ଉପରେ ପି.ଏଚ.ଡ଼ି. କରିଛି। ତାର ସୁପରଭାଇଜର ହେଉଛନ୍ତି ପ୍ରଫେସର Thij Ten Raa, ସ୍ନେହୀ ସୁନ୍ଦର ଭଦ୍ରବ୍ୟକ୍ତି, ଦିଲ୍ଲୀରୁ NCAR ରେ ପୁଅ Economist ଥିଲାବେଳେ ତାଙ୍କ ସହ ସାକ୍ଷାତକାର ହୁଏ ଏବଂ ତାଙ୍କ ଅନୁକମ୍ପାରୁ ଫେଲୋସିପ୍ ପାଇ ସେ ଗବେଷଣା ପାଇଁ ଏଠାକୁ ଆସେ। ଗବେଷଣା କରୁ କରୁ ଚାକିରି କରି ଏଠାରେ ସପରିବାର ରହିଛି। ସ୍ଥାନର ଓ ଲୋକମାନଙ୍କର ଆକର୍ଷଣ ଓ ଭବିଷ୍ୟତର ଭାବନା ତାକୁ ଦୂରରେ ରଖିଛି। ଏହି ମହାନ ଅନୁଷ୍ଠାନକୁ ମୋର ସମ୍ମାନ ଓ କୃତଜ୍ଞତା ଜଣାଇବାକୁ ସେଦିନ ଯାଇଥିଲି। ବର୍ଷା ହେଉଥାଏ। ଆମେ କେଣ୍ଟିନ୍‌କୁ ଯାଇ କଫି ପିଇଲୁଁ, ଶସ୍ତାରେ ସୁନ୍ଦର କଫି । କେଣ୍ଟିନର ବିଶାଳତା ଓ ସାଜସଜ୍ଜା ଦେଖି ମୁଁ ମୁଗ୍ଧ ହେଲି। Economics Dept.କୁ ଗଲି। ଦୁଃଖର କଥା ପୁଅର ପ୍ରଫେସର Ten Raa ବିଦେଶରେ ଥିବାରୁ ତାଙ୍କ ସହ ସାକ୍ଷାତ୍ ହେଲାନାହିଁ। ଅନ୍ୟ ଜଣେ ଜ୍ଞାନୀ ପ୍ରଫେସର Wim Pelu Pessy ଙ୍କୁ ସାକ୍ଷାତ୍ କଲି।

ଇଣ୍ଡୋନେସିଆର ଲୋକ। ଏଠାରେ ସପରିବାର ଅଛନ୍ତି। ପିଲାମାନେ ପ୍ରତିଷ୍ଠିତ ହେଲେ ଭାରତ ଇଣ୍ଡୋନେସିଆ ସଂବନ୍ଧରେ ନାନା ଆଲୋଚନା ହେଲା, ତ୍ରିଭାନ୍ଦ୍ରମ ଡେଭଲପ୍‌ମେଣ୍ଟ ଇନ୍‌ଷ୍ଟିଚ୍ୟୁଟ୍ ସହ ମିଶି ପ୍ରୋଜେକ୍ଟ କରିଛନ୍ତି। ମୋର ସାହିତ୍ୟ ରଚନା କଥା ପଚାରିଲେ। ତାଙ୍କର ବ୍ୟବହାର ଥିଲା ସ୍ନେହ ଓ ପରିମାର୍ଜିତ। ବିଶ୍ୱବିଦ୍ୟାଳୟ ପରିବେଶ ମନୋରମ ।

## ହଲାଣ୍ଡର କଳା ଓ ସାହିତ୍ୟ

ଗୋଟିଏ ଦେଶର ସାମଗ୍ରିକ ଉନ୍ନତି ଓ ତାର ଅର୍ଥନୈତିକ, ସାମାଜିକ, ସାଂସ୍କୃତିକ ବିକାଶରୁ ଜଣାପଡ଼େ। ସଂସ୍କୃତି ଶବ୍ଦର ଅର୍ଥ ବ୍ୟାପକ - ଦେଶର ଐତିହାସିକ ଜୀବନ ଦର୍ଶନ, ଚିନ୍ତାଧାରା କଳା ସାହିତ୍ୟକୁ ନେଇ ଗଢ଼ି ଉଠିଥିବା ସଂସ୍କୃତି ଯାହା ଗୋଟିଏ ଭୂଖଣ୍ଡର ଅଧିବାସୀଙ୍କୁ ଅନ୍ୟ ଭୂଖଣ୍ଡର ଅଧିବାସୀଙ୍କ ଠାରୁ ସ୍ୱତନ୍ତ୍ର ରୂପ ଚିହ୍ନାଇ ଦିଏ। ହଲାଣ୍ଡର ସ୍ୱତନ୍ତ୍ର ଭାଷା ଅଛି, ଡଚ, ଦେଢ଼କୋଟି ଲୋକଙ୍କ ଭାଷା, କଳା ବା ଚିତ୍ର ଭାସ୍କର୍ଯ୍ୟରେ ବ୍ୟୁତ୍ପତି ଥିବା ଶୁଣିଛି। ତା'ର ମୂଲ୍ୟାୟନ କରିବା ମୋ ପକ୍ଷେ କଷ୍ଟକର। ସାହିତ୍ୟ ପ୍ରତି ମୋର ଅନୁରାଗ ଥିବାରୁ ବିଭିନ୍ନ ଦେଶର ସାହିତ୍ୟ, ଇଂରାଜୀରେ ପଢ଼ି ତାର ମାନ କିଛିଟା ଅନୁଭବ କରିପାରିବି, ତେଣୁ ଡଚ ସାହିତ୍ୟର ଇଂରାଜୀ ଅନୁବାଦ ଖୋଜୁଥିଲି। ହଲାଣ୍ଡ

ବଜାରରେ ସେପରି ଅନୁବାଦ ମିଳୁ ନଥାଏ। ଟିଲବର୍ଗର ସେଣ୍ଟ୍ରାଲ ଲାଇବ୍ରେରୀରେ ଡଚ କବିତାର ଇଂରାଜୀ ଅନୁବାଦ ବହି ମିଳିଲା, ମୋର ସୌଭାଗ୍ୟ ନୋବେଲ ପୁରସ୍କାରର ବିଜେତା ଜେ. ଏମ. କୋଏଜିଙ୍କ ଦ୍ୱାରା ଅନୁଦିତ ଡଚ କବିତା ବହିଟିଏ ପାଇଲି, ତାଙ୍କର ଅଭିମତ ମଧ୍ୟ ପ୍ରଣିଧାନଯୋଗ୍ୟ। ତାଙ୍କରି ମତ ମୁଁ ନିମ୍ନରେ ଉଦ୍ଧାର କରିଛି। ସେ ଲେଖିଛନ୍ତି:-

"ଅନୁଦିତ ହୋଇଥିବା କବିତାଗୁଡ଼ିକ ୧୯୩୦ ଠାରୁ ଏ ପର୍ଯ୍ୟନ୍ତ (୨୦୦୩) ଲେଖୁଥିବା କେତେକ ପ୍ରସିଦ୍ଧ ଡଚ କବିଙ୍କର। ଏମାନେ ଇୟୁରୋପୀୟ ସାହିତ୍ୟ ରଂଗମଞ୍ଚରେ ପ୍ରସିଦ୍ଧି ପାଇବାର ଛଳନା କରନ୍ତି ନାହିଁ। ସ୍ୱଭାବବଶତଃ ଏମାନେ ନିଜକୁ ଏତେ ନ୍ୟୁନ ଭାବନ୍ତି ଯେ ମୋ ଭଳି ଜଣେ ବାହାରର ଲୋକଙ୍କୁ ବିସ୍ମୟକର ଲାଗେ, ଯଦି ଓ ମୁଁ ନେଦରଲାଣ୍ଡୀୟ ଆଫ୍ରିକାନ ସାହିତ୍ୟର କବି, ମୋ ଦେଶର ସାହିତ୍ୟର କୃତି ପାଇଁ ଗର୍ବ କରିବାକୁ ଲଜ୍ଜାବୋଧ କରେ।"

ଡଚ ଗୋଟିଏ କ୍ଷୁଦ୍ର ଭାଷା, ଦେଢ଼କୋଟି ଲୋକଙ୍କ ଭାଷା, ଏହାର ସାହିତ୍ୟ ବେଶୀ ଲୋକ ପଢ଼ନ୍ତି ନାହିଁ, ତେବେ ଏ ସାହିତ୍ୟର ସ୍ପନ୍ଦନ ବିବିଧ। ସପ୍ତଦଶ ଶତାବ୍ଦୀରୁ ନେଦରଲାଣ୍ଡ ଗୋଟିଏ କ୍ଷମତାଶାଳୀ ଦେଶ ରୂପେ ପ୍ରତିପାଦିତ ହୋଇପାରିନି। ରାଷ୍ଟ୍ରଶକ୍ତି କାହିଁକି କଳା ଓ ସାହିତ୍ୟର ନିୟାମକ ହେବ ତାର ସଠିକ୍ କାରଣ ନାହିଁ। ତେବେ ଇୟୁରୋପର ଅନ୍ୟ ଦେଶ ଦ୍ୱାରା ପଛକୁ ଠେଲି ହୋଇ, ଫ୍ରାନ୍ସ, ଜର୍ମାନୀ ଓ ଇଂଲଣ୍ଡ ଦ୍ୱାରା ଆକ୍ରମିତ ହୋଇ ଇତିହାସରେ ଲୁଚିଯିବାର ଆଶଙ୍କା ଏମାନଙ୍କୁ ବାହାର ଜଗତ ଆଗରେ ମୁଣ୍ଡ ଟେକି ଚାଲିବାକୁ ବାଧା ଦେଇଛି। ପୁନଶ୍ଚ ଜାତୀୟ ଜୀବନଧାରା କାଲଭିନିଙ୍କ ଆଦର୍ଶ, ଭଦ୍ରତା, କର୍ତ୍ତବ୍ୟପରାୟଣତା, ନୈତିକ ସାବଧାନତା ଦ୍ୱାରା ଅନୁପ୍ରାଣିତ। ତାହା ଚିନ୍ତାରାଜ୍ୟରେ ସାହସୀ ହେବାରେ ବାଧା ସୃଷ୍ଟି କରିଛି।

ସପ୍ତଦଶ ଶତାବ୍ଦୀର ପ୍ରଥମ ଭାଗରୁ ଭଣ୍ଡେଲ (Vondel), ବ୍ରେଡ଼େରୋ (Bredero), ହୁଏଜେନସ (Huygens) ଓ ହୁଫ୍ଟ (Hooft) ଙ୍କ ସୁବର୍ଣ୍ଣ ଯୁଗ ପରେ ପ୍ରାୟ ୨୦୦ ବର୍ଷ ଧରି ଡଚ ସାହିତ୍ୟ କୌଣସି ସ୍ୱତନ୍ତ୍ରତା ଦେଖାଇପାରିନଥିଲା। ବିଂଶ ଶତାବ୍ଦୀର ଶେଷ ଦଶକରେ ଆଧୁନିକ ସାଂକେତିକତା, ପ୍ରତୀକବାଦ, ନାନ୍ଦନିକବାଦ, ପ୍ରକୃତିବାଦ ଡଚ ସାହିତ୍ୟକୁ ସ୍ପର୍ଶ କଲା ଡଚ ସାହିତ୍ୟ ପ୍ରାଣବନ୍ତ ହେଲା। ବିଂଶ ଶତାବ୍ଦୀର କେତେଜଣ ଖ୍ୟାତନାମା ଲେଖକଙ୍କର ଆବିର୍ଭାବ ହେଲା, ସେମାନଙ୍କ ମଧ୍ୟରେ ଉପନ୍ୟାସିକ ଲାଉସ୍ଇଓପେରସ୍ (Louseouperus) ପ୍ରସିଦ୍ଧ।

Cernt Achter berg (1905-62) ଡଚକଳାକାର ଆଧୁନିକ ବିପ୍ଳବରେ ଅଂଶଗ୍ରହଣ କରିଥିଲେ। ସେ ଦ୍ୱିତୀୟ ମହାଯୁଦ୍ଧ ପୂର୍ବରୁ ସୁନାମ ଅର୍ଜନ କରିଥିଲେ, ତାଙ୍କ କବିତାରେ ବ୍ୟକ୍ତିଗତ ମିଥ, ମୃତ ପ୍ରେମିକାର ସଂଧାନ, ମୃତ୍ତିଙ୍କ ରାଜ୍ୟରେ ପ୍ରବେଶ

ଦେଖିବାକୁ ମିଳେ। Hugiclaus (1935) ୧୯୫୦ ଦଶକରେ ଯୁଦ୍ଧ ପର ସମାଜରେ ନୂତନ ଶୈଳୀର ଉଦ୍‌ଭାବନ କରିଥିଲେ। ସାଇବ୍ରେନ୍‌ ପୋଲେଟ୍‌ (Sibren Polets 1924) ଇୟୁରୋପର ପ୍ରଧାନ ଭାବଧାରାର ଅଂଶୀଦାର, ୧୯୬୦ ଦଶକରେ କବିତାକୁ ସମାଜ ଅଭିମୁଖୀ ଓ ଯମକପୂର୍ଣ୍ଣ କରି, ଭାଷାରେ ଆଧୁନିକତା ଆଣି ଖ୍ୟାତି ଅର୍ଜନ କରିଛନ୍ତି ।

Hansfovery (1933-50) କବିତାରେ ସୁନିର୍ବାଚିତ ଭାଷା ଓ ସନ୍ଧୁ ଭାବନା ପ୍ରୟୋଗ କରିଥିଲେ। ପରବର୍ତ୍ତୀ କାଳରେ ଚିନ୍ତାର ବିରୋଧଭାସ, ହିରାକ୍ଲିଟସ୍‌ଙ୍କ ପ୍ରଶ୍ନବାଚୀ ଜିଜ୍ଞାସାର ଶୈଳୀ ଦେଖିବାକୁ ମିଳିଥିଲା।

ରୁଥର କୋପସାଣ୍ଡ ଘରୋଇ ଆବେଗର ଗଭୀର ଦର୍ଶନକୁ ଗତି କରିଛନ୍ତି। ତାଙ୍କ ଦୃଷ୍ଟିରେ ପ୍ରକୃତିର ଏ ପୃଥିବୀ ସଂକୁଚିତ ହୋଇଆସୁଛି। Ceesnooteboom (1933) ଙ୍କ ଭ୍ରମଣ କାହାଣୀ ଅନେକ ପାଠକ ସୃଷ୍ଟି କରିଛି। କେତେବେ କବିତା କଳାର ଶକ୍ତି ସୀମିତତା ସୂଚାଇ ସ୍ୱତନ୍ତ୍ର ଆଦର ପାଇଛି।

କୋଏଜିଙ୍କ ଅନୁଦିତ ପୁସ୍ତକ Landscape with Rowers ବହି ଓ ଅନ୍ୟ କେତୋଟି ଇଂରାଜୀ ବହିରୁ, ଡଚ କବିତା ଡଚରୁ (ନାତି ସାହାଯ୍ୟରେ) ଓଡ଼ିଆ ଅନୁବାଦ କରିଛି ଓ ପାଠକଙ୍କ ଅବଗତି ନିମନ୍ତେ କେତୋଟି ଉଦାହରଣ ହେଉଛି:

"ଯେଉଁ ଘର ଉପରେ ତୁମର ଦୃଷ୍ଟି ପଡ଼ିଛି
ସେ ଘରକୁ ତୁମେ ନିଷ୍ଚୟ ପଛପଟରୁ ଆସିଥିବ
ପ୍ରତ୍ୟେକ ପରଦା ଦିଆ ଝରକାରେ ତୁମେ ଦେଖିନବ
ଯେହେତୁ ତୁମେ ଶୂନ୍ୟରୁ ଆସି ପହଞ୍ଚିବ।"
(Ballads of the gasfitter, Gerrit Achterberg)

"ଯୁଦ୍ଧ ଜୟ କରିବାକୁ ମୃତ୍ୟୁବରଣ କର
କିମ୍ବା ବୋଳା ଆଦର୍ଶ ପାଇଁ କ୍ଷୁଧାରେ ମର
ବିଷାକ୍ତ ଡ୍ରଗ୍ ଖାଇ ଖୁସି ହୁଏ।"
(Sitren Polet - Self repnting poem)

ବଣ ଭିତରେ ବୁଢ଼ା ଲୋକଟି କବିଙ୍କୁ ସଂଦେହ କରୁଛି
ସେ ଉତ୍ତର ଦିଗକୁ ଚାଲିଛି ନିଜ ଆଖିରେ ବହିଟେ ଲେଖିବ
– ପବନ ଓ ବାଦଲରୁ ଜନ୍ମ ନେବ ପ୍ରେମ
(Cees Nioteboom - Bosho)

"ଲାସା ସ୍ତ୍ରୀଲୋକର ପୋଷାକ ଲାସାର
ସେ ସ୍ଥାନର ଏକ ଅଦୃଶ୍ୟ ଦ୍ରବ୍ୟର ଦୃଶ୍ୟମାନ ରୂପ'
(Hoorrmonium - Anecdote of men by thousand)

"ଯେଉଁ ଘାସ ଉପରେ ଆମେ ଶୋଇଛେଁ
ତା ବେଶ୍ ମୁଲାୟମ୍
ଘାସଖାଲି ଘାସ
ପତାକା ତଳକୁ ନଇଁ ପଡ଼ିଛି
ଯେଉଁ ଘାସ ଉପରେ ଆମେ ଶୋଇଛୁ।
(Hoor toal - Romantic chorus)

କବିତାଗୁଡ଼ିକରେ ପ୍ରକୃତି ପ୍ରତି ଆସକ୍ତି, ଯୁଦ୍ଧ ପ୍ରତି ବିତୃଷ୍ଣା, ଆତ୍ମାସହିତ ଦେହ ପ୍ରକୃତି ଓ ଚଳଣିରେ ନିବିଡ଼ ସଂପର୍କ, ଆଧୁନିକତା ପ୍ରତି ଶ୍ଳେଷ ଇହପରକାଳର ଅବୋଧ କଳ୍ପନା – ଫୁଟି ଉଠିଛି। ସରଳ ମଣିଷର ଆବେଗ ପରିସ୍ଫୁଟ, ମାତ୍ର ଆଶ୍ଚର୍ଯ୍ୟର କଥା ନାରୀ ପ୍ରତି ମୋହ ବା ତୀବ୍ର ଆକର୍ଷଣ, ଯାହା ଭାରତୀୟ କବିତାରେ ମୁଖ୍ୟ, ତାହା ଡଚ କବିତାରେ ବିରଳ। ମୁକ୍ତ ମିଳନ ଏହାର କାରଣ କି ?

## ହଲାଣ୍ଡର କବିତା

# ଦିବାଲୋକରେ ଅବତରଣ

ରୁତଗେର କୋପଲାଣ୍ଡ (୧୯୩୪)

ଏହା ଘଟିବାର ତୁମେ ଦେଖିଲ
ଦିନ ଆଲୁଅରେ ଦେଖିଲ
ତୁମ ଆଖି ଆଗରେ ଲୋକଟାର ଦେହ
ବଂଚି ଥାଉଁ ଥାଉଁ ମାଟିରେ ମିଶିଗଲା।
ଦିନଟି ବେଶ୍ ଉଜ୍ଜ୍ୱଳ
ବସନ୍ତର ଆଲୋକରେ ଏହା ଫେରିଆସୁଛି
ଏହାତ ଥିଲା ପଟଭୂମି
ମାଟି ଆକାଶ ଉଇଲୋ। ଗଛ ଏବଂ ଘାସ
ଦେହଟି ଭାବୁଛି
ତୁମେ ଯଦି ମୋର ନିଜ ଦେହ ହୋଇଥାନ୍ତ
ମୋତେ କେଉଁଠି ଦେଖିଥାନ୍ତ
କେଉଁଠାକୁ ନିଅନ୍ତ
କେଉଁଠି ଛାଡ଼ନ୍ତ
ତୁମକୁ ଛାଡ଼ି ଏହା କିମିତି ରୁହନ୍ତା

କେତେକାଳ, କେତେ  ଗମ୍ଭୀର କେତେ ଏକୁଟିଆ
ତୁମେ ଦେଖ,
ଏହା ଘଟୁଛି
ଦିନର ଆଲୁଅ ବିଛୁରି ପଡ଼ିଛି
ତୁମ ଆଖି ଆଗରେ ଦେହ ସବୁ
ପୁରୁଷ ଓ ନାରୀର
ଏକା ସଂଗେ ମାଟିରେ ମିଶିଯାଉଛି
ଉଜ୍ଜ୍ୱଳ ଦିନ, ଖରାଟାଣ
ବସନ୍ତର ଆଲୁଅରେ ସବୁ ଆସିଯାଏ
ହଁ, ଏହା, ଏହା ତ ଥିଲା ଭୂଦୃଶ୍ୟ
ମାଟି ଆକାଶ ପୋଲାର୍ଡ୍ ଗଛ ଘାସ
ଦେହ ଗୁଡ଼ିକ ଭାବୁଛନ୍ତି,
ତୁମେ ଯଦି ହୋଇଥାଅ ଦେହ
ତାର ଓ ମୋର
କେଉଁଠି ଆମକୁ ପାଆନ୍ତ
କେଉଁଠାକୁ ନିଅନ୍ତ
କେଉଁଠି ଛାଡ଼ନ୍ତ
ତୁମକୁ ଛାଡ଼ି ତାହା କିପରି ରହନ୍ତା
କେତେକାଳ, କେତେ ଗମ୍ଭୀର କେତେ ଏକୁଟିଆ !

( ୨ )

ତୁମେ ଦେଖ, ଏହା ଘଟୁଛି
ବେଶ୍ ତୋଫା ଆଲୁଅରେ ଦେଖ,
ତୁମ ଆଖି ଆଗରେ ଦେହଟି
ମାଟିରେ ମିଶି ଯାଉଛି,
ସଫେଦ ଦିନ, ଅତିଉଜ୍ଜ୍ୱଳ
ସାନ୍ଦ୍ର ଆଲୁଅରେ ଏହା ଆସୁଛି.
ହଁ ଏହା ହିଁ ଥିଲା ପୃଷ୍ଠଭୂମି
ଆକାଶ ମାଟି, ସବୁଜ ଘାସ ଗଛ

ଦେହ, ତୁମେ ଯଦି ମୋର ନିଜ ଦେହ
କେଉଁଠି ମୋତେ ଦେଖିଥାନ୍ତ
କେଉଁଠାକୁ ନେଇଥାନ୍ତ
କେଉଁଠି ଛାଡ଼ନ୍ତ
କ'ଣ ଅଛି ମୋ ମସ୍ତିଷ୍କରେ
ଭୟ ନା ଲାଳସା, ଫେରିବା ନା ବିଦାୟ ନେବା
ମାଟି ପାଇଁ, ମାଟିଠାରୁ, ମାଟିକୁ ।

(୩)

ଦେଖ

ଏହା ଘଟୁଛି,
ଦିନର ଖୋଲା ଆଲୁଅରେ ଦେଖ
ତୁମ ଆଖି ଆଗରେ ଛୋଟ ଦେହଟି
ଝିଅଟିର,
ମାଟିରେ ମିଶି ଯାଉଛି,
ଦିନଟି ଉଜ୍ଜ୍ୱଳ, ପ୍ରଖର ଉଜ୍ଜ୍ୱଳ
ସାନ୍ଦ୍ରଖରାରେ ସବୁ ଫେରି ଆସୁଛି,
ହଁ, ଏହା ଥିଲା ଦୃଶ୍ୟପଟ
ଆକାଶ ମାଟି ଝରଣା ଝରା ଗଛ ଘାସ
ଛୋଟ ଦେହଟି ମୁଁ ଭାବୁଛି
ତୁମେ ସେ ଛୋଟ ଦେହ
ସେ ଝିଅର
ତାକୁ କେଉଁଠି  ପାଇଲ ?
କେଉଁଠାକୁ ନେଉଛ ?
କେଉଁଠି ଛାଡ଼ିବ,
ତୁମକୁ ଛାଡ଼ି ଏହା କିପରି ରହିବ
କେତେ କାଳ, କେତେ ଗଭୀର କେତେ ଏକୁଟିଆ ।

## ଛପିଥିବା ଲୋକ

ହାର୍‌ମୋନମ୍‌

କପୋତୀର ଶବ୍ଦ ପରି
ଛାତ ଉପରେ ଟୁପ୍‌ଟୁପ୍‌ ମେଘ
ବହୁଦିନ ତଳେ ମୋ ଘରେ
କେତେ କପୋତୀ ଥିଲେ
ଶରତ ଆସିଲେ
ମୁଁ ତାଙ୍କୁ ଆଲିଙ୍ଗନ କରେ
ଗ୍ରୀଷ୍ମ ଋତୁକୁ ସ୍ମରଣ କରେ
ଏ ପୃଥିବୀ ଏକ ଗମ୍ବୁଜ
ଏହାର ପବନ ସବୁନୀଳ.
ବର୍ଷା ପଡ଼େ ତା ପାଦ ଦେଶରେ
ଖରା ସବୁ ଶୋଷି ନିଏ
ସକାଳ ହେଲେ କପୋତ ଗୁଡ଼ିକ
ଚାରିପାଶେ ଉଡ଼ି ବୁଲିବେ
ଅନେକ ଉପରେ ବାଦଲ ଭାସିବ
ଶରତ ଋତୁ ପରି କେହି ଘୁରି ବୁଲେନା
ଦୁଃଖର ମୁଖା ପିନ୍ଧି
ଶରତର ଲୋକଟି
ଘାସ ଉପରେ ବସି ହସିବ
ଗମ୍ବୁଜର ଶୀର୍ଷ ଦେଶରୁ ଚିତ୍କାର କରିବ ।

## ଷ୍ଟାଚ୍ୟୁ

ହାର୍ମା ଫ୍ରାଉଡ଼୍ୱାଏଟ

ଆହାଃ କି ସୁନ୍ଦର ଜଳନଗରୀ !
ସୁଉଚ୍ଚ ଦେବଦାରୁ ଗଛ, ବିନା ଅପରାଧରେ ଜଳୁଛି,
ଗୋରା ରକ୍ଷୀମାନେ ମାର୍ବଲ୍‌ ରାସ୍ତାରେ ଚାଲିଛନ୍ତି,
ଷ୍ଟାଚ୍ୟୁ ଗୁଡ଼ିକର କଥା ଗପୁଛନ୍ତି,

ତା ଉପରେ ପଡ଼ିଥିବା ମଞ୍ଜିକୁ ପକ୍ଷୀମାନେ
ଉଡାଇ ନେଉଛନ୍ତି ପାହାଡ଼ ଉପରର ବରଫ ମୁହଁକୁ
କେବେ ଏମାନଙ୍କର ଜୀବନ ଥିଲା ?
କିମିତି ପାଲଟିଗଲେ ଷ୍ଟାଚ୍ୟୁ ?
ଷ୍ଟାଚ୍ୟୁ ହୃଦୟର କଥା ଧରି ରଖିଛି କି କଳ ?
ଜାଣିଛ କି ଷ୍ଟାଚ୍ୟୁର ଆତ୍ମାକୁ ?

## ଡଚ ଜାତୀୟ ସଂଗୀତ

**Naam Loos**

William of Nassau, am I, of Dutch Blood.
Loyal to the fatherland, I will remain until i die.
A prince of Orange, I am free and fearless.
The king of spain, I have always honoured.
My shield and reliance are you, o God my Lord.
It is you on whom I want to rely, never leave me again.
[Grant] that I may remain brave, your servant for always.
And defeat the tyranny, which pierces my heart.

## ଡଚ ଜାତୀୟ ସଂଗୀତ ସଂପର୍କରେ :

ଡଚ ଜାତୀୟ ସଂଗୀତ National Anthem ପୃଥିବୀର ଏକ ପୁରାତନ ଜାତୀୟ ସଂଗୀତ । ୫୭୨ ମସିହାରୁ ଏହା ଏକ ଫ୍ରେଞ୍ଚମେଲୋଡ଼ି ଚାର୍ଲସ୍ (Charles) ରୂପେ ପରିଚିତ । ଏହା ପ୍ରଥମେ ଏଡ୍ରିଆନ୍ ଭୋଲରସଙ୍କ ସଂଗ୍ରହରେ ସ୍ଥାନିତ ହୋଇଥିଲା । ଏହାର ରଚୟିତା ଫିଲିପ୍ସ ଭାନ୍ ମାର୍ନିକ୍ସ ଭାନମିଣ୍ଟ ଆଲଡେଗୋଣ୍ଡେ ବୋଲି ବହୁ ଲୋକବିଶ୍ୱାସ କରନ୍ତି । ମାତ୍ର ଏହି ନାମ ଏ ପର୍ଯ୍ୟନ୍ତ ବିତର୍କିତ ଅଛି । ୧୯୩୨ ମସିହା ପର୍ଯ୍ୟନ୍ତ ଏହା ସରକାରୀ ସ୍ତରରେ ଜାତୀୟ ସଂଗୀତ ରୂପେ ସ୍ୱୀକୃତ ହୋଇନଥିଲା । The wilhelmus ଜାତୀୟ ସଂଗୀତରେ ୧୫ଟି ପଦ ଅଛି । ସ୍ପେନର ଦ୍ୱିତୀୟ ଫିଲିପଙ୍କ ବିରୁଦ୍ଧରେ ସଂଗ୍ରାମ କରିଥିବା ବିପ୍ଳବୀ ନେତା William of Orange ଙ୍କ ନାମରେ ସଂଗୀତର ରଚନା, ଉଇଲିୟମ୍ ସ୍ପେନ ବିରୁଦ୍ଧରେ ଚାଲିଥିବା ୮୦ ବର୍ଷର ସଂଗ୍ରାମର ପ୍ରଧାନ ନେତା ଥିଲେ, ଏବଂ ୧୬୪୮ରେ ଯୁକ୍ତରାଜ୍ୟମାନେ ଆନୁଷ୍ଠାନିକ ଭାବେ ସ୍ୱାଧୀନ ହେଲେ, ଉଇଲିଅମ୍ ସ୍ପେନିସ୍ ନେଦରଲ୍ୟାଣ୍ଡର ଗଭର୍ନର ଥିଲେ, ସେ ସ୍ପେନ ବିରୁଦ୍ଧରେ ଖଡ୍ଗଉତ୍ତୋଳନ କରିଥିଲେ ।

୧୫୩୦ରେ ତାଙ୍କୁ ହତ୍ୟା କରାଯାଇଥିଲା। ଏହି କବିତାର ଶବ୍ଦଗୁଡ଼ିକ ବାଇବେଲ ପଦ (Psalms) ପରି ପ୍ରତୀୟମାନ ହୁଏ। ସଂଗୀତରେ ଥିବା ୧୫ଟି ପଦ ମଧ୍ୟରୁ ପ୍ରଥମ ଓ ଷଷ୍ଠପଦ ଜାତୀୟ ସଂଗୀତ ରୂପେ ସରକାରଙ୍କ ସ୍ତରରେ ଗୃହୀତ। ଏହି ଗୀତର ହୃତପିଣ୍ଡ ରହିଛି ଅଷ୍ଟମ ପଦର 'Oh David thou soughtest shelter / from King saul's tyranny. ।

## ହଲାଣ୍ଡର ଖ୍ୟାତି

ଦେଶଟି କ୍ଷୁଦ୍ର ହେଲେହେଁ ଅର୍ଥନୀତି, ସାମାଜିକ ଓ ସଂସ୍କୃତି କ୍ଷେତ୍ରରେ ସେ ଯେ କେତେ ପ୍ରସିଦ୍ଧ ତାର ବିଶ୍ୱବିଖ୍ୟାତ କଳାକାର, ବୈଜ୍ଞାନିକ ଓ ସାହିତ୍ୟିକଙ୍କ ନାମ ତାଲିକାରୁ ଜଣାଯିବ। ଆକାରରେ ଛୋଟ, ଜନସଂଖ୍ୟା ମାତ୍ର ଏକ କୋଟି ୭୦ ଲକ୍ଷ, କିନ୍ତୁ ତାର ମୁଣ୍ଡପିଛା ବାର୍ଷିକ ଆୟ ୨୦୦୮ ମସିହାରେ ବିଶ୍ୱରେ ଅଷ୍ଟାଦଶ ସ୍ଥାନରେ ଥିଲା। ଯୁକ୍ତରାଷ୍ଟ୍ର ଆମେରିକାର ମୁଣ୍ଡପିଛା ଆୟ ବାର୍ଷିକ ଆନ୍ତର୍ଜାତିକ ମୁଦ୍ରା ଡଲାରର କ୍ରୟଶକ୍ତି ସମାନତା P.P.P) ଭିତ୍ତିରେ ୪୬୯୭୭, ଇଂଲାଣ୍ଡର ୩୬୧୩୦, ଜର୍ମାନୀର ୩୫୯୪୦ ଫ୍ରାନ୍ସର ୩୪୪୦୦, ହଲାଣ୍ଡର ୪୦୮୫୦, ଚୀନର ୬୦୨୦, ଭାରତର ୨୯୬୦। ହଲାଣ୍ଡରେ ଏ ପର୍ଯ୍ୟନ୍ତ ପଦାର୍ଥବିଦ୍ୟା, ରସାୟନ ବିଦ୍ୟା, ଚିକିତ୍ସା ବିଜ୍ଞାନ ଅର୍ଥନୀତିରେ ୧୮ ଜଣ ନୋବେଲ ପୁରସ୍କାର ବିଜେତା ହୋଇଛନ୍ତି। ଚିତ୍ରକଳା ଓ ସଂଗୀତ ନାଟକ ଓ ନୃତ୍ୟ ଜଗତରେ ହଲାଣ୍ଡବାସୀ ବେଶ୍ ଖ୍ୟାଦି ଅର୍ଜନ କରିଛନ୍ତି। ବିଭିନ୍ନ କ୍ଷେତ୍ରରେ ବିଶ୍ୱରେ ସୁଖ୍ୟାତି ଅର୍ଜନ କରିଥିବା ଡଚମାନଙ୍କ ନାମ ନିମ୍ନରେ ପ୍ରଦତ୍ତ ହେଲା।

**Literatere : ସାହିତ୍ୟ**

Joost Van den Vondel - Poet & playwriter Gerbranad Adbiensz Bredero - Poet  କବି, ନାଟ୍ୟକାର

Tieter Canels zoon Hooft Historian poet  କବି

Hanne Frank - Autobigraphic (The Diary of a Young girl)

**Painting : ଚିତ୍ରକଳା**

Frans Hals
Hendrick Avercamp
Hendric Terbruggla
Jane Van Goyel
Vincent Vongogh

**Famous Dutch Writers** - ସାଂପ୍ରତିକ  ପ୍ରସିଦ୍ଧ ଡ଼ଚ ଲେଖକ

**Current**
Vijtifegers,
Hans Lodeizeh
Lucebert
Jules Deelder
Rutyer keopland
**Scientist**
Aotam Curry - Internet Pioneer
Theo Vangogh -Film Director
Anthory Fokker - Aviation Scientist.
Andre Rieu ; Violinst
**Dutch Nobel Award**
Tobjas Michacl Carel Asser - 1991, Peace
Nicol Bloembergen - 1981, Physics
Paul J Crutzen - 1995, Chemistery
Peter Debye - 1936 Chemistery
Christiaan Eigkman - 1929, Medicine
Willam Einthoven - 1924, medicine
First Noble Prize
Jacobust Hearicus Van Hoff - 1901 , Chemistry
Gerardus 'T Hooft- 1919, Physics
Tjalling Koopmans - 1975, Economic science
Hendrick Lorentz - 1902, Physic
Simon Van der Meer - 1984 physics
Jan Timbergen -
Nikolaas Tinbergen - 1973, Medicine
Martinus J.G Veltman - 1999, Physics
Johanco Didesic Van der Waals - 1910, Physis
Pieter Zeeman - 1902, Physics (Zeeman effect)
Frits Zernikl - 1953, Physics

## ଡଚ ଶବ୍ଦ ନାନା ଅର୍ଥ, ନାନା ପ୍ରୟୋଗ

Beat the Putch : ର ଅର୍ଥ: ଅସାଧାରଣ କାର୍ଯ୍ୟ ସଂପାଦନ

Dutch Auction : ନିଲାମ ବେଳେ, ଦାମ ନିମ୍ନରେ ରଖିଉଠିବାକୁ ଦେବା

Dutch bargain : ମଦ୍ୟପାନ ବେଳେ ଚୁକ୍ତି

Dutch built : ର ଅର୍ଥ: ଲମ୍ବା ପତଳା ପୁରୁଷ, ଡଚ ପିଣ୍ଡ ଥିବା ସ୍ତ୍ରୀଲୋକ ବଡ଼ pear ଆକୃତି : ପିତା

Dutch Comfort : ସାମାନ୍ୟ ଆରାମ ବା ଆରାମବିହୀନ

Dutch defence : ସମର୍ପଣ

Dutch courage : ଶବ୍ଦରୁ ଜାତ ସାହସ

Dutch generosity : କୃପଣପଣିଆ

Dutch consolation : ତୁମଠାରୁ ଅଧିକ ବିପଦ ଅନ୍ୟମାନେ ଭୋଗୁଛନ୍ତି ।

Dutching : ନଷ୍ଟ ଖାଦ୍ୟକୁ ଗରମ କରି ଖାଦ୍ୟ ଯୋଗ୍ୟ କରିବା

Dutch nightingale : ବେଙ୍ଗ

Dutch talent : ବୁଦ୍ଧି ଖର୍ଚ୍ଚ ନ କରି ବଳରେ କାମ କରିବା

Dutch Treat : ନିଜ ଖର୍ଚ୍ଚଦେଇ ପାର୍ଟିରେ ଅଂଶ ଗ୍ରହଣ କରିବା

Dutch Uncle : କଠୋର ସମାଲୋଚକ ବା ପରାମର୍ଶଦାତା

Dutch Widow : ବେଶ୍ୟା ।

Dutch wife : କୃତ୍ରିମ ଯୌନ ସଂଗୀ Inflatable doll

I am a Dutch man : ମୁଁ ବିଶ୍ୱାସ କରେନା

In dutch : ଅପ୍ରୀତିକର ଅସମ୍ମାନ ଅବସ୍ଥାରେ

Dutch: ଭାଷାର କେତେଗୁଡ଼ିଏ ଶବ୍ଦକୁ ନେଇ ଡଚର Idiom ବା ରୁଢ଼ିପ୍ରୟୋଗ ଅଛି ଯାହା ବେଶ୍ ଆମୋଦଦାୟକ ଭାବ ପୂର୍ଣ୍ଣ ଯଥା -

Be hit by a windmil : ଅର୍ଥ (crazy) ପାଗଳ ହୁଅ,

walk with toy wind mills- Be silly : ବା ଅବାନ୍ତର ହେବା

Official wind mills : ସରକାରଙ୍କ ଉଇଣ୍ଡମିଲ୍

Go on the Ice with wooden shoes : ସଚ୍ଚା କୃଷକ

He does not walk in seven ditches : : ସେ ନିଜର ଯତ୍ନ ନେଇପାରିବ

From the share in to the canal - ଗୋଟିଏ ସମସ୍ୟାରୁ ଆଉ ଗୋଟିଏ ସମସ୍ୟାକୁ, ଅନାବଶ୍ୟକ ସାହାଯ୍ୟ

Come on to calmer water : ଦୁର୍ଯୋଗକୁ ପଛରେ ପକାଅ

Sit in some one's water way:ଅନ୍ୟର ଜାଗାରେ Poach ଅନ୍ୟର ଚର୍ମ ତଳେ ଲୁହ ।

ଅନ୍ୟକୁ ତଳେ ପକାଇ ଦିଅ ।

A crook of the purest water....... ଅତି କୁଟିଳ

As swift as water : ସବୁ ଜାଣିବା ଲୋକ

As fast as water : ବିଜୁଳି ପରିଚଞ୍ଚଳ
pour water into the wine : ମିଳାମିଶା କର
Bring something above water : କିଛି ଆବିଷ୍କାରକର
Swim between two waters : ଦୁଇ ପକ୍ଷ ନେଇ କାମ କର
Carry water to the sea : ଅଯଥା କାର୍ଯ୍ୟ କରିବା
Go straight to the sea : ଖୋଲାମନ, ସିଧାହୁଅ
Go to sea with source : କାହା ସଂଗରେ ସୁଯୋଗ
Put the little flower outside : Go on a spree ଫୂର୍ତ୍ତିରେ ଯାଅ
Place some one in little flowers : ଜଣକୁ ରାଜକୀୟ ସମ୍ମାନ ଦିଅ ।
Oh, on a bike like that : ତୁମେ କ'ଣ କରୁଛ ବୁଝିପାରିଲି
you have to learn it is on old bike : ଗୋଟିଏ ବୟସ୍କ ନାରୀଠାରୁ ଯୌନକ୍ରିୟା ଶିଖ
Hang together like loose sand : ଅତି ଶରଳ, ଅସଂଗତ
Stickncs had in the sand: ସତ୍ୟଠାରୁ ଲୁଚି ରୁହ
The plans have gone into the sand : କୌଣସି କାମ ଠିକ୍ ହୋଇନି
Sand on it : ଭୁଲିଯାଅ ।

## ମୋ ଭାବରାଜ୍ୟରେ ହଲାଣ୍ଡ

"It is better for me
In the rushes of autumn wind
To embrance autumn, without turning
To remember summer" (Hermenin 1957)

ହଲାଣ୍ଡର ଗ୍ରୀଷ୍ମଋତୁ ଶେଷ ହୋଇଆସୁଛି, ପିଲାଙ୍କର ସ୍କୁଲ ଛୁଟି ଶେଷ । ଅଳ୍ପଦିନ ପରେ ଶରତର ଆଗମନ । ମୋର ଏଠାରେ ରହଣି ଶେଷ ହୋଇଆସୁଛି । ମାତ୍ର ଦୁଇ ମାସ ରହଣି । ସେଥିରେ ପୁଣି କିଛି କିଛି ଦିନ ଅନ୍ତରରେ ବର୍ଲିନ ପ୍ୟାରିସ୍ ଲଣ୍ଡନ ଯାତ୍ରା । ଏକଦଫା ବିଦେଶୀ ଯାତ୍ରାରେ ଋରିଟି ଦେଶ, ଇୟୋରୋପର ସମୃଦ୍ଧ ଦେଶ, ଆଧୁନିକ ଇତିହାସର ରଚୟିତା, ଦେଖିବାର ସୁଯୋଗ ଭାଗ୍ୟରେ ଥିଲେ ମିଳେ । ଦେଖିବା, ଅନୁଭବିବା ଭିତରେ ପ୍ରଭେଦ ଯଥେଷ୍ଟ । ବର୍ଲିନ ପ୍ୟାରିସ୍ ଲଣ୍ଡନ ଦେଖିଲି, ମାତ୍ର ସେମାନଙ୍କ ସ୍ପନ୍ଦନ ଅନୁଭବ କରିବାକୁ ସମୟ ସୁଯୋଗ ପାଇନି, ତେଣୁ ସେ ସବୁ ଦେଶ ବିଷୟରେ ବିନା ଅନୁଭବରେ ମନ୍ତବ୍ୟ ଦେବା କେବଳ ବହି ପାଠ ହେବ । ହଲାଣ୍ଡରେ ଅନ୍ତତଃ

ଦୁଇମାସ ରହିଛି, ଏଠାକାର ଆଦିମ ଅଧିବାସୀ ଡଚମାନଙ୍କୁ ଦୂରରୁ ଓ ନିକଟରୁ ଦେଖୁଛି, ସେମାନଙ୍କ ସହ ଆଳାପ ଆଲୋଚନା କରିଛି। ହଲାଣ୍ଡରେ ରହୁଥିବା ଅନ୍ୟ ଦେଶର ଲୋକଙ୍କ ପ୍ରତିକ୍ରିୟା ସଂଗ୍ରହ କରିଛି। ସକାଳ ମଧ୍ୟାହ୍ନ ସଂଧ୍ୟା ଓ ରାତିର ପ୍ରକୃତି ଅବଲୋକନ କରିଛି, ବାଳକ-ବାଳିକା ତରୁଣ ତରୁଣୀ ଓ ବୃଦ୍ଧ ବୃଦ୍ଧାଙ୍କୁ ପର୍ଯ୍ୟବେକ୍ଷଣ କରିଛି। ତେଣୁ କିଛିଟା ଅନୁଭବ କିଛିଟା ସଂଗୃହିତ ତଥ୍ୟକୁ ଆଧାର କରି ହଲାଣ୍ଡ ବିଷୟରେ ମୋର ଧାରଣା ଲେଖିବା ଅପ୍ରାସଂଗିକ ହେବ ନାହିଁ।

ହଲାଣ୍ଡର ପ୍ରକୃତି ପରିବେଶ ସମାଜ ବ୍ୟବସ୍ଥା ଓ ଲୋକଙ୍କ ବ୍ୟବହାର ଏସିଆ ଆଫ୍ରିକା ଭଳି ବିକାଶଶୀଳ ଦେଶର ଯେ କୌଣସି ଲୋକଙ୍କୁ ଆକୃଷ୍ଟ କରିବ। ମୋତେ ଏହା ମୁଗ୍ଧ କରିଛି, ମୋ ଭିତରେ ନାନା ଭାବନା ଆଣି ଦେଇଛି।

ହଲାଣ୍ଡର ଯେଉଁ ଦୃଶ୍ୟ, ଚଳିଚଳଣ, କୃତି କୃତିତ୍ୱ ଓ ଚିନ୍ତାଧାରା ମୋର ହୃଦୟ ସ୍ପର୍ଶ କରିଛି ତାହା ହେଉଛି : (୧) ପ୍ରକୃତି ଓ ପ୍ରକୃତି ପ୍ରେମ (୨) ଉଦାର ଧର୍ମଧାରଣା (୩) ବିଶ୍ୱଭ୍ରାତୃତ୍ୱ (୪) ସୌନ୍ଦର୍ଯ୍ୟ ପିପାସା ଓ କାମାସକ୍ତି, (୫) କାରିଗରୀ କୌଶଳ ଓ ଦୁଃସାହସିକତା (୬) ସାମାଜିକ ନିରାପତ୍ତା। ହଲାଣ୍ଡ ଗୋଟିଏ ଛୋଟ ଦେଶ। ଏକଦା ଏହାର ସ୍ଥଳଭାଗର ଅନେକାଂଶରେ ବଣ ଜଂଗଲ ପୂରି ରହିଥିଲା। ଜନସଂଖ୍ୟା ବୃଦ୍ଧି ଓ ସଭ୍ୟତା, ବିଶେଷତଃ କୃଷି ସଭ୍ୟତାର ବିକାଶ ସଂଗେ ସଂଗେ ବଣ ଜଂଗଲକୁ କାଟି ଚାଷ ଜମିରେ ପରିଣତ କରାଯାଇଥିଲା। ବାଜରା, ମକା ଜାତୀୟ ଶସ୍ୟ ସହ ନାନା ପ୍ରକାର ପନିପରିବା, କୋବି, ବାଇଗଣ, ଶିମ୍ବ ଚାଷ କରାଯାଉଛି। ସମଗ୍ର ଦେଶକୁ ଘେରି ସମୁଦ୍ର, ଦେଶ ଭିତରେ ଛୋଟ ବଡ଼ ଅନେକ ନଦୀ, ନଦୀରୁ ସୃଷ୍ଟି ବହୁ କେନାଲ, ବିଛୁରି ହୋଇପଡ଼ିଛି। ଜଳ ହିଁ ଏମାନଙ୍କ ଜୀବନ-ଜଳରେ ଭାସି ବୁଡ଼ି, ଜଳ ସହ ଖେଳି ଯୁଦ୍ଧ କରି ଜାତିଟି ଦୁର୍ଦ୍ଧର୍ଷ ହୋଇଯାଇଛି। ଚତୁର୍ଦ୍ଦଶ ପଞ୍ଚଦଶ ଶତାବ୍ଦୀରେ ଇୟୁରୋପର ଯେଉଁ ଦେଶର ଲୋକେ ଏସିଆ, ଆମେରିକା, ଆଫ୍ରିକା, ଅଷ୍ଟ୍ରେଲିଆ ଆବିଷ୍କାର କରିବାକୁ ଜଳ ପଥରେ ସମୁଦ୍ରରେ ଜାହାଜ ଭସାଇ ଯାଇଥିଲେ। ସେମାନଙ୍କ ମଧ୍ୟରେ ଇଂରାଜୀ, ଡଚ, ପର୍ତ୍ତୁଗିଜ୍, ଫରାସୀ ଲୋକ ପ୍ରଧାନ। ବହୁ ଦେଶରେ ଡଚମାନଙ୍କର ଉପନିବେଶ ଦ୍ୱିତୀୟ ମହାଯୁଦ୍ଧ ପର୍ଯ୍ୟନ୍ତ ଥିଲା। ଏବେ ଉପନିବେଶ ନ ଥିଲେ ମଧ୍ୟ ସେମାନଙ୍କ ସଂସ୍କୃତି ଓ ପୂର୍ବ ରାଜୁତିର ସ୍ୱାକ୍ଷର ଇଣ୍ଡୋନେସିଆ ଆଫ୍ରିକା ଓ ଲାଟିନ୍ ଆମେରିକା ଅଷ୍ଟ୍ରେଲିଆର କେତେକ ଅଂଚଳରେ ରହିଛି। ସପ୍ତଦଶ ଅଷ୍ଟାଦଶ ଶତାବ୍ଦୀରେ ହଲାଣ୍ଡର ରାଜଧାନୀ ଆମଷ୍ଟାରଡ଼ାମ୍ ଇୟୁରୋପର ପ୍ରସିଦ୍ଧ ବାଣିଜ୍ୟର କେନ୍ଦ୍ର ଥିଲା। ଜଳସେଚନ ଓ ବନ୍ୟା ପ୍ରତିରୋଧରେ ଡଚମାନଙ୍କ ଦକ୍ଷତା ବିଶ୍ୱରେ ଖ୍ୟାତି ଅର୍ଜ୍ଜନ କରିଛି। ଲୋକେ କହନ୍ତି, ଡାଇକ୍ ବାଇକ୍ ଏମାନଙ୍କର ଅତି ଆତ୍ମୀୟ।

ପ୍ରକୃତି ପ୍ରତି ଡଚଲୋକଙ୍କ ଆଦର ଅତୁଳନୀୟ। ଏମାନଙ୍କ ଘର, ସହରରେ ହେଉ ବା ଗ୍ରାମରେ ହେଉ, ନାନାଫୁଲ ଗଛରେ ସଜ୍ଜିତ ହୋଇଥାଏ। ବଂଧୁ ଘରକୁ ଗଲେ ଅଭିବାଦନର ଅବିଚ୍ଛେଦ୍ୟ ଉପହାର ହେଉଛି ଫୁଲତୋଡ଼ା। ମାଟି ନରମ, ଜଳଧାରା ସର୍ବଦା ମାଟି ତଳେ। ତେଣୁ ବିଭିନ୍ନ ପ୍ରକାର ରଂଗିନ ଫୁଲ ଥରେ ଫୁଟି ଅନେକ ଦିନ ପର୍ଯ୍ୟନ୍ତ ସତେଜ ରହେ।

ଫୁଲର ସୁବାସ, ପ୍ରକଟିତ ହୁଏନି, ମାତ୍ର ସୌନ୍ଦର୍ଯ୍ୟ ମନ ମୁଗ୍ଧକରିଦିଏ। ପ୍ରକୃତିର ବର୍ଣ୍ଣନା ଡଚ କାବ୍ୟକବିତାର ଶୋଭା ମଣ୍ଡନ କରିଥାଏ। ସହର ରାସ୍ତାର ଦୁଇ ପାର୍ଶ୍ୱରେ ଧାଡ଼ି ଧାଡ଼ି ଗଛ, ଏମାନଙ୍କ ସୌନ୍ଦର୍ଯ୍ୟ ପ୍ରୀତିର ନମୁନା। ଏମାନେ ପଶୁପକ୍ଷୀଙ୍କୁ କେତେ ଯେ ଭଲ ପାଆନ୍ତି ତାହା ଜଣାପଡ଼େ ପ୍ରତ୍ୟେକ ପରିବାରରେ କୁକୁର, ବିଲେଇ, ନେଉଳ ଥିବା ଦେଖିଲେ। ଡଚମାନେ ସୁନ୍ଦର ଚିତ୍ର ଅଙ୍କନ କରିପାରନ୍ତି, ଦୃଶ୍ୟମାନ କଳା ଓ କବିତା ଭିତରେ ତଫାତ୍ କଣ? ପ୍ରଶ୍ନ କରନ୍ତି "ତୁମ ଭିତରେ କବିର ଜନ୍ମ ହେଉଛି, ଦୃଶ୍ୟ ପାଲଟି ଯାଉଛି କଳ୍ପନା, ତଥାପି ସେ ତୁମ ଭଳି ଭାବୁଛି, ଏବଂ ତା'ର ଆଖି ସେୟା ଦେଖୁଛି।'

କଳା, ଗୋରା ବର୍ଣ୍ଣ ବୈଷମ୍ୟ ଏକଦା ପୃଥିବୀକୁ ବିଦୀର୍ଣ୍ଣ ରକ୍ତାକ୍ତ କରି ଦେଉଥିଲା, ଖ୍ରୀଷ୍ଟାନ ଧର୍ମ ଭିତରେ ନାନା ଗୋଷ୍ଠୀ କେଥୋଲିକ୍ ପ୍ରୋଟେଷ୍ଟାଣ୍ଟ, ପୁଣି ଇସଲାମ ଓ ଖ୍ରୀଷ୍ଟ ଧର୍ମ ମଧ୍ୟରେ ଯୁଦ୍ଧ ବିଗ୍ରହ ଇତିହାସକୁ ବିଭୀଷିକାମୟ କରିଛି। ଏବେ ବି ସେ ବିବାଦର ଅପ୍ରୀତିକର ଘଟଣା ସ୍ଥାନେ ସ୍ଥାନେ ଦେଖାଯାଏ। କିନ୍ତୁ ହଲାଣ୍ଡରେ ଅଧିକାଂଶ ଉଦାରବାଦୀ ପ୍ରୋଟେଷ୍ଟାଣ୍ଟ କେଥୋଲିକ୍ ଓ କାଲ୍‌ଭିନିଷ୍ଟ କେବଳ ଖ୍ରୀଷ୍ଟାନ ସଂପ୍ରଦାୟଭୁକ୍ତ ନୁହଁନ୍ତି - ସମସ୍ତେ ବିନା ବିଦ୍ୱେଷରେ ବାସ କରନ୍ତି।

ଛୋଟ ଦେଢ଼-ଦୁଇ କୋଟି ଜନସଂଖ୍ୟା ଭିତରେ ଅଛନ୍ତି ତୁର୍କୀ, ସୁରନାମୀ, ଚିନା ଇଣ୍ଡୋନେସିଆ, ବଂଗଳାଦେଶୀ, ପାକିସ୍ଥାନୀ ଓ ଭାରତୀୟ। ଏମାନଙ୍କ ଭିତରେ ଥିବା ସଦ୍‌ଭାବ ଅନ୍ୟ ଇୟୁରୋପୀୟ ଦେଶରେ ବିରଳ। ସାରା ପୃଥିବୀରେ ଇଂରେଜ ଓ ଫ୍ରେଞ୍ଚଙ୍କ ଭଳି ଶାସନ କରିବାର ମନୋବୃତ୍ତି ନ ନେଇ, ବ୍ୟବସାୟ ଓ ବସବାସ ପାଇଁ ଯାଇଥିବା ଡଚବାସୀ ସମସ୍ତଙ୍କୁ ନିଜର କରି ନେବା ଶିଖିଛନ୍ତି। ତେଣୁ ଦେଶର ଜାତି ବର୍ଣ୍ଣ ବିଭେଦର ସୂଚନା ମିଳେନା। ବିଶ୍ୱଭ୍ରାତୃତ୍ୱର ଅମ୍ଳାନ ଛବି ମୋର ଦୃଷ୍ଟି ଗୋଚର ହୋଇଛି।

ଈଶ୍ୱର ଓ ପ୍ରକୃତିର ଶ୍ରେଷ୍ଠ ସୃଷ୍ଟି ନାରୀ। ନାରୀର ସୌନ୍ଦର୍ଯ୍ୟଲିପ୍ସା ଓ ନାରୀପୁରୁଷ ପ୍ରେମ ସଭ୍ୟତା, ସଂସ୍କୃତି ଓ ବିଜ୍ଞାନ ବିକାଶର ମୂଳରେ। ଡଚ ନାରୀର ରୂପ, ଦୀର୍ଘ, ଗୋରାବର୍ଣ୍ଣ, ତୀଖ, ନାକ, ସୁଗୋଲ ପିଚା, ବର୍ତ୍ତୁଳ ସ୍ତନ, ସୁନ୍ଦର ଉଜ୍ଜ୍ୱଳ ଆଖି ସୌନ୍ଦର୍ଯ୍ୟର ଗନ୍ତାଘର। ଜିନ୍‌ପେଣ୍ଟ, ଅର୍ଦ୍ଧସ୍ତନାବୃତ୍ତ ପୋଷାକରେ ଲୋଭନୀୟ ଦିଶନ୍ତି କିଶୋରୀ ତରୁଣୀ - ୩୫- ୪୦ ବର୍ଷ ପର୍ଯ୍ୟନ୍ତ, ଜୀବନକୁ ଉପଭୋଗ କରନ୍ତି ସେ ପର୍ଯ୍ୟନ୍ତ। ଯୌବନର

କାମପିପାସା ଓ ସୌନ୍ଦର୍ଯ୍ୟ ବିଦାୟ ନେବା ଠିକ୍ ପୂର୍ବରୁ ବିବାହ ବଂଧନରେ ବାଂଧି ହୋଇ ଯାଆନ୍ତି। ମନ ମିଳିଲେ ବିବାହ ବହୁଦିନ ସ୍ଥାୟୀ ଓ ଶାନ୍ତିପୂର୍ଣ୍ଣ ହୁଏ। ନୋହିଲେ ଛାଡ଼ପତ୍ର। ନାରୀପୁରୁଷ ସମସ୍ତେ କର୍ମଠ ଅର୍ଥ ଉପାର୍ଜନ ପାଇଁ ପ୍ରସ୍ତୁତ। ସମାଜ ବ୍ୟବସ୍ଥା ଏଥିପ୍ରତି ଅନୁକୂଳ, ବିବାହିତ ଜୀବନ ସ୍ଥାୟୀ କି ଅସ୍ଥାୟୀ ହେଉ, ଦେହ ପ୍ରେମର ଶେଷବିନ୍ଦୁରେ ଏମାନେ ପହଞ୍ଚିବାକୁ ଚାହାଁନ୍ତି। ନାରୀଙ୍କ ସହ ସମଯୋଦ୍ଧା ହେବାପାଇଁ ପୁରୁଷ ମଧ ଶକ୍ତିଶାଳୀ। ତେଣୁ ସେମାନଙ୍କ ଦୃଷ୍ଟିରେ Sex is Divine, କାମପ୍ରବୃତ୍ତି ସ୍ୱର୍ଗୀୟ। ତେଣୁ ସେମାନଙ୍କ ଉପନ୍ୟାସରେ (Romance) କାମ କଳାର ବର୍ଣ୍ଣନା ଆମ କାମଶାସ୍ତ୍ରକୁ ବଳି ଯାଇଛି-କାମର ପୂର୍ବରାଗ, ନାରୀ ଭିତରେ ପୁରୁଷର ପ୍ରବେଶର ନିଖୁଣ ଜୀବନ୍ତ ବର୍ଣ୍ଣନା, ଉଭୟ ନାରୀ-ପୁରୁଷର ସଂଗମ ବେଳର ଦେହ ଓ ମାନସିକ ସ୍ଥିତିର ଆବେଶ - ଆକୁଳତା, ପ୍ରାପ୍ତିର ସ୍ୱସ୍ତି ଆମ ସାହିତ୍ୟକୁ ବଳିଯାଇଛି। ଅବଶ୍ୟ ପ୍ରେମରେ ତ୍ୟାଗ, ବିରହ, ବେଦନା ବିଶେଷଭାବେ ସାହିତ୍ୟରେ ରୂପାନ୍ତରିତ ହୋଇନି। ଯୁବକ ଯୁବତୀ ମିଶିବାରେ ଗ୍ଲାନି ନାହିଁ। ଯାହା ପ୍ରାକୃତିକ ସ୍ୱାଭାବିକ ପ୍ରବୃତ୍ତି ତାକୁ ଅବରୁଦ୍ଧ କରିବାର ପ୍ରୟାସ ନ ଥାଏ ଡଚମାନଙ୍କର। ସହରର ବିପଣି ସ୍ଥାନ, ବାସଗୃହ, ରାସ୍ତାଘାଟ, ନିର୍ମାଣରେ ସେମାନଙ୍କ ସୌନ୍ଦର୍ଯ୍ୟଜ୍ଞାନର ପ୍ରମାଣ ମିଳେ। ସହର ଓ ଗ୍ରାମାଞ୍ଚଳର, ପୁରାତନ ଓ ନୂତନର ସହାବସ୍ଥାନ, ଅତୀତକୁ ମନେ ରଖିବାର ଆଗ୍ରହ ସେମାନଙ୍କ ଜୀବନଧାରା ଓ ସମାଜ ବ୍ୟବସ୍ଥାରେ ଦୃଶ୍ୟମାନ ହୁଏ। ଛୋଟ ଭୂଖଣ୍ଡରେ ଖ୍ରୀଷ୍ଟପୂର୍ବର ରୋମାନ ସାମ୍ରାଜ୍ୟରେ ଦୁର୍ଗସ୍ଥଳୀ ଚିହ୍ନଟ କରିବା ସହ ସପ୍ତମ ଶତାବ୍ଦୀରୁ କେଥୋଲିକ୍ ସଂପ୍ରଦାୟର ଧର୍ମପ୍ରଚାରର ସ୍ମୃତି ବାଂଧି ରଖିଛନ୍ତି, ପୁରୁଣା ଚର୍ଚ୍ଚ ସହ ପରିବର୍ତ୍ତିତ ଧର୍ମ ଓ ତତ୍‌ସଂଲଗ୍ନ ନୂଆ ଚର୍ଚ୍ଚ ସହ।

ଅନ୍ୟ ଏକ ଅତୀବ ପ୍ରଶଂସନୀୟ କଥା ହେଉଛି ହଲାଣ୍ଡର ସାମାଜିକ ବ୍ୟବସ୍ଥା, ...ବୁ ଇୟୋରୋପ ଆମେରିକା-ପାଶ୍ଚାତ୍ୟ ଦେଶ ଭଳି ବୟଃପ୍ରାପ୍ତ ହେଲା ପରେ, ପୁଅଝିଅ ...ପା ମାଆ ପୃଥକ ରହନ୍ତି। ବୃଦ୍ଧପିତା ମାତା ଦୂରରେ ରହିଲେ ମଧ ପୁଅଝିଅ, ନାତିନାତୁଣୀ ବେଳେବେଳେ ଛୁଟିଦିନ ମାନଙ୍କରେ ଆସି ସେମାନଙ୍କ ଦୁଃଖସୁଖ ବୁଝି ଯାଆନ୍ତି। ଏପରି ...ବନକୁ ସମସ୍ତେ ଆଦରି ନେଇଛନ୍ତି। ଛୋଟ ସହର ଓ ଗ୍ରାମାଞ୍ଚଳରେ କେତୋଟି ଯୌଥ ...ରିବାର ସମ୍ଭବତଃ ଚାଷ କାମ ପାଇଁ ରହିଥିବା ଶୁଣିଲି। ତେବେ ପାରିବାରିକ ଜୀବନର ...ସ୍ଥାୟିତ୍ୱ ଛାଡ଼ପତ୍ରର କୁପ୍ରଭାବର ନିରାକରଣ ପାଇଁ ମୁଣ୍ଡ ଟେକିଛି ଅସମ୍ଭବ ସନ୍ତାନ ପ୍ରୀତି, ...ଶୁମାନଙ୍କର ବୃଦ୍ଧମାନଙ୍କର ଯତ୍ନ ନେବା ପାଇଁ ବ୍ୟକ୍ତିଗତ ସମାଜ-ଗତ ଆଗ୍ରହ।

ଶିଶୁ ଯେ ସଂପଦ ଏ କେବଳ କଥାରେ ସୀମିତ ନୁହେଁ, ଗଭୀର ଅନୁଭବ, ...ବେଗ ଓ ଦାୟିତ୍ୱବୋଧର କଥା ଡଚବାସୀଙ୍କ ଠାରେ। ନାରୀ ସନ୍ତାନ ଜନ୍ମ ଦେବା ...ରେ ଅନ୍ୟତ୍ର ଚାଲିଗଲେ, ସ୍ୱାମୀ, ଧର୍ମୀୟ ଅନୁଷ୍ଠାନ ଓ ସରକାର ଶିଶୁର ଲାଳନପାଳନ ଶିକ୍ଷାର ବ୍ୟବସ୍ଥା ପାଇଁ ତତ୍ପର ହୋଇଉଠନ୍ତି। ସ୍ୱାମୀ ଓ ମାଆର ଆୟ ଏବଂ ଶିଶୁର

ଆବଶ୍ୟକତାନୁସାରେ ଆଇନଗତ ବ୍ୟବସ୍ଥା କରାଯାଏ ଶିଶୁର ଯତ୍ନନେବାକୁ। ମୁଁ ପଚାରି ବୁଝିଛି ପରିତ୍ୟକ୍ତ ସ୍ୱାମୀଟି ମଧ୍ୟ ପୁଅ ଝିଅକୁ ପାଖରୁ ଛାଡ଼ିବାକୁ ଚାହେଁ ନା ବାସ୍ତବରେ ଈଶ୍ୱର ଦେଖାଦିଅନ୍ତି ଶିଶୁ ରୂପେ। ନିଜର ସୃଷ୍ଟି ପ୍ରତି ସଦା ଆସକ୍ତ ନାରୀପୁରୁଷ।

ହଲାଣ୍ଡ ସରକାରଙ୍କ ବେକାରୀ ଭତ୍ତା ଓ ପେନ୍‌ସନ ବ୍ୟବସ୍ଥା ଆଦର୍ଶ ସ୍ଥାନୀୟ। ଏଥିପାଇଁ ଅବଶ୍ୟ ହଲାଣ୍ଡରେ ଟିକସ ହାର ସର୍ବାଧିକ। ତେବେ ବଂଚି ରହିବାର ଅନିଶ୍ଚିତତା ଓ କଷ୍ଟ ଦୂର କରିବା ପାଇଁ ଏହା ହିଁ ପ୍ରକୃଷ୍ଟ ପନ୍ଥା ବୃଦ୍ଧବୃଦ୍ଧାଙ୍କ ରହିବା ପାଇଁ ଗଢ଼ାଯାଇଛି ସମସ୍ତ ସୁନ୍ଦର ସୁବିଧା ଥିବା ବୃଦ୍ଧାଶ୍ରମ, ସରକାରୀ ବେସରକାରୀ ପ୍ରଚେଷ୍ଟାରେ ଆନନ୍ଦରେ ଜୀବନଯାପନ କରନ୍ତି ପରିଣତ ବୟସରେ ସନ୍ତାନମାନଙ୍କ ଚପାଗ୍ଲଣା ଓ ଅସନ୍ତୋଷର ଦୁଃଖଦ ଆଭାସ ଠାରୁ ଦୂରରେ ରହି।

## ସାଂସ୍କୃତିକ ବିପ୍ଳବର ରଂଗମଞ୍ଚ ଫ୍ରାନ୍ସ

ପୃଥିବୀ ପ୍ରସିଦ୍ଧ ମିଉଜିୟମ୍ ସୁରମ୍ୟ ମନୁମେଣ୍ଟ ୟୁରୋପରେ ସଂସ୍କୃତି, କଳା, ସାହିତ୍ୟ, ସିନେମା, ଟିଭି, ସ୍ଥାପତ୍ୟରେ ଅନବଦ୍ୟ ପରିବର୍ତ୍ତନ ଆଣିଥିବା ଫ୍ରାନ୍ସର ଲୋକସଂଖ୍ୟା ୬୦.୬ ନିୟୁତ ଏବଂ ଆକାର ୫୫,୧୦୦୦ ବର୍ଗ କିଲୋମିଟର।

Asterix comic ବହିରେ ଉଲ୍ଲେଖ ଅଛି ଯେ ଏହି ଭୂଖଣ୍ଡକୁ Celtic Gauls ଖ୍ରୀଷ୍ଟପୂର୍ବ ୧୫୦୦-୫୦୦ ଭିତରେ ପ୍ରବେଶ କରିଥିଲେ ଏବଂ ଖ୍ରୀ.ପୂ. ୫୦ ମସିହାରୁ ପଞ୍ଚମ ଶତାବ୍ଦୀ ପର୍ଯ୍ୟନ୍ତ ରୋମ ଅଧୀନରେ ଥିଲା ରୋମ ସାମ୍ରାଜ୍ୟର ପତନ ପରେ ଫ୍ରାନ୍ସ ଅନେକ ସମ୍ରାଟଙ୍କ ଅଧୀନରେ ଥିଲା। ୧୦୬୬ ମସିହାରେ William the conqueror ଇଂଲାଣ୍ଡକୁ ନିଜ ଶାସନ ଅନ୍ତର୍ଭୁକ୍ତ କରିଥିଲେ। ରିଫର୍ମ (ସଂସ୍କାର)



ପ୍ୟାରିସ୍‌ର ନାଟ୍ରେଡ଼ାମ୍

ଯୁଗରେ କେଥୋଲିକ୍ ଓ ପ୍ରୋଟେଷ୍ଟାଣ୍ଟଙ୍କ ମଧ୍ୟରେ ଯୁଦ୍ଧ ଫ୍ରାନ୍ସକୁ ବିଖଣ୍ଡିତ କରି ଦେଇଥିଲା। ୧୭୮୦ରେ ଫ୍ରାନ୍ସର ଅଧିବାସୀମାନେ ସମ୍ରାଟ Lous XVI ବିରୁଦ୍ଧରେ ବିଦ୍ରୋହ କରିଥିଲେ। ଜୁଲାଇ ୧୪ରେ ପାରସ୍ୟ ଲୋକେ ରାଜଧାନୀ ବାଷ୍ଟାଇଲ୍‌କୁ ଘେରାଉ କରି ବିଶ୍ୱବିଖ୍ୟାତ ଫରାସୀ ବିପ୍ଳବ ସଂଘଟିତ କରିଥିଲେ। ୧୭୯୩ରେ ଲୁଇସ୍ ୧୬ଙ୍କୁ ହତ୍ୟା ଓ ତାଙ୍କର ରାଣୀଙ୍କୁ ଗିଲୋଟିନ୍ କରାଯାଇଥିଲା। ୧୭୯୯ରେ ଜନୈକ ଯୁବକ କର୍ସିକାନ ନେପୋଲିଅନ ବୋନାପାର୍ଟେ ଫ୍ରାନ୍ସର ଶାସନ କ୍ଷମତା ହାତକୁ ନେଇ ଇୟୁରୋପ ଜୟ କରିବାକୁ ଅବିରତ ଉଦ୍ୟମ କରିଥିଲେ। ୧୮୧୫ରେ ଓ୍ୱାଟରଲୁ ଠାରେ ସେ ଯୁଦ୍ଧରେ ବ୍ରିଟିଶ ସେନାପତି ନେଲସନଙ୍କ ଦ୍ୱାରା ପରାଜିତ ହୋଇଥିଲେ। ପରବର୍ତ୍ତୀ କାଳରେ ଫ୍ରାନ୍ସରେ ଗୃହଯୁଦ୍ଧ ଓ ଅସ୍ଥିରତା ଲାଗି ରହିଥିଲା। ପ୍ରଥମ ବିଶ୍ୱଯୁଦ୍ଧରେ ଫ୍ରାନ୍ସ ଯୋଗ ଦେଇ କ୍ରିମିଆନ୍ ଯୁଦ୍ଧରେ ହରାଇଥିବା ଆଲଜାକ୍ ଓ କରେନ୍ ଭୂଖଣ୍ଡ ଫେରିଯାଇଥିଲା ୧୯୧୯ରେ The Trieaty of Verseles ଭର୍ସାଇଲ ଚୁକ୍ତି କରାଯାଇ ଜର୍ମାନୀ ଠାରୁ ଅଜସ୍ର କ୍ଷତିପୂରଣ ଆଦାୟ କରାଯାଇଥିଲା। ତାର ପ୍ରତିଶୋଧ ନେଇଥିଲେ ଆଡ଼ୋଲଫ୍ ହିଟଲ୍‌ର। ବିଭାଜିତ ଫ୍ରାନ୍ସ ଜୁନ ୧୯୪୪ରେ ମିତ୍ରଶକ୍ତିର ବିଜୟ ପରେ ଏକତ୍ରିତ ହେଲା, ଏବଂ ଜେନେରାଲ ଚାର୍ଲ୍ସ ଏହାର ପ୍ରେସିଡ଼େଣ୍ଟ ହେଲେ, ପରବର୍ତ୍ତୀ ୫୦ ବର୍ଷ ଭିତରେ ବହୁତ ରାଜନୈତିକ ଘନଘଟା ଦୃଶ୍ୟମାନ ହୋଇଛି। ଫ୍ରାନ୍ସ ହରାଇଛି ତାର ପୂର୍ବ କଲୋନୀ ଭିଏଟ୍‌ନାମ ଓ ଆଲଜେରିଆ, ସଂପ୍ରତି ପ୍ରେସିଡ଼େଣ୍ଟ ଜେକ୍‌ସ ଚିରାକ୍ ଫ୍ରାନ୍ସର ଶାସନମୁଖ୍ୟ।

ଫ୍ରାନ୍ସ ଇୟୁରୋପର ଲୋକଙ୍କ ମଧ୍ୟରେ ଅଦ୍ଭୁତଭାବେ ସ୍ୱତନ୍ତ୍ର। ଗର୍ବୀ କଠୋର, ଅମଲାତାନ୍ତ୍ରିକ, କାମାସକ୍ତ ଉଗ୍ରଜାତୀୟତାବାଦୀ, ଫେସନ୍‌ବାଲା ଇତ୍ୟାଦି । ଫ୍ରାନ୍ସର ଲୋକମାନେ ନିଜର ଜାତୀୟତା ପାଇଁ ବିଶେଷ ଗର୍ବଅନୁଭବ କରନ୍ତି, ଧର୍ମଠାରୁ ଜାତୀୟତାକୁ ଉଚ୍ଚ ସ୍ଥାନ ଦିଅନ୍ତି। ଏ ଦେଶର ବର୍ତ୍ତମାନ ମୁସଲମାନଙ୍କ ମଧ୍ୟରେ ଧର୍ମ ଓ ଜାତୀୟତା ପ୍ରଶ୍ନ ଦ୍ୱନ୍ଦ୍ୱ ସୃଷ୍ଟି କରିଥାଏ।

ଭଲଟାୟାର ଓ ରୁଷୋଙ୍କ ଦର୍ଶନ ପ୍ରଭାବ ବିସ୍ତାର କରିଥିଲା ଅଷ୍ଟାଦଶ ଶତାବ୍ଦୀରେ ଭିକ୍ଟୋରହ୍ୟୁମୋଙ୍କ କବିତା ଓ ଉପନ୍ୟାସ ପ୍ରଭାବ ଅପ୍ରତିହତ ଥିଲା ଉନ୍ନବିଂଶ ଶତାବ୍ଦୀରେ, Gasla Laubert & Emil Zolae ଲେଖାର ପ୍ରଭାବ ମଧ୍ୟ ଥିଲା ଅତୁଳନୀୟ। Paul Verlaine ଙ୍କ କବିତା ଆଧୁନିକତାର ପ୍ରବର୍ତ୍ତକ ହୋଇଥିଲା। ଦ୍ୱିତୀୟ ମହାଯୁଦ୍ଧ ପରେ ଅସ୍ତିତ୍ୱବାଦର ଯେଉଁ ସ୍ରୋତ ବିଶ୍ୱ ସାହିତ୍ୟରେ ପ୍ରବାହିତ ହେଲା ତାର ଉତ୍ସ ଥିଲେ ଫ୍ରାନ୍ସର ଜାଁପଲ ସାର୍ତ୍ରେ Jean Paul satre ଓ ଆଲବର୍ଟ କାମ୍ୟୁ (Albert Camus)

# ପ୍ୟାରିସ ପରଶେ ମନ ମୋ ସରସେ


ଆଇଫିଲ୍‌ଟାୱାର  ପ୍ୟାରିସ୍ ନଗରର ସ୍ମାରକୀ

ବୟସ ସିନା ୭୫, ମନଟା ଚିରସବୁଜ। ବିଳାସବ୍ୟସନ, ଆମୋଦପ୍ରମୋଦ ପ୍ରିୟ ଉଦ୍ଦାମ ତାରୁଣ୍ୟଭରା ଧରାପୃଷ୍ଠର ଇନ୍ଦ୍ରଭୁବନ ପ୍ୟାରିସ୍ ସହର ଦେଖିବାକୁ ମନ ଉତ୍ସୁକେ। ଜୁଲାଇ ୧୦, ୨୦୦୯ ଅକାଶ ନିର୍ମଳ, ମୃଦୁ ଶୀତର ସକାଳ, ଟିଲବର୍ଗରୁ ଆମେ, ମୁଁ ସ୍ତ୍ରୀ, ସମୁଦୁଣୀ, ପୁଅ-ଯାତ୍ରା କଲୁଁ ଟୋରିଷ୍ଟବାସରେ ପ୍ୟାରିସ ଅଭିମୁଖେ। ବିଶ୍ୱ ଇତିହାସର ତିନିଟି ଯୁଗାନ୍ତକାରୀ ବିପ୍ଳବ – ଫରାସୀ ବିପ୍ଳବ, ଆମେରିକାନ ସ୍ୱାଧୀନତା ସଂଗ୍ରାମ, ରୁଷିଆର ବଲ୍‌ସେଭିକ୍ ବିପ୍ଳବ, ଶହ ଶହ ବର୍ଷ ଧରି ପରାଧୀନ ଥିବା ଭାରତୀୟଙ୍କ ମନରେ ନୂତନ ଭାବ ଓ ଉଦ୍ଦୀପନା ଆଣିଥିଲା। ଆମେରିକା ଭ୍ରମଣରେ ଗଲାବେଳେ ଗୋଟିଏ ପ୍ରକାର ବୈପ୍ଳବିକ ଚିନ୍ତାଧାରା ମୋତେ ଆଚ୍ଛନ୍ନ କରିଥିଲା। ଏବେ ଆଉ ଏକପ୍ରକାର ବୈପ୍ଳବିକ ଚିନ୍ତାଧାରା ସ୍ପର୍ଶ କରୁଛି, ଗଡ଼ଜାତ ଆନ୍ଦୋଳନର ଲୋମହର୍ଷଣକାରୀ ଐତିହାସିକ ସ୍ପନ୍ଦନ ଟାଣି ଆଣୁଛି। ଚତୁର୍ଦ୍ଦଶ ଲୁଇଙ୍କ ବିରୁଦ୍ଧରେ ଫରାସୀ ଜନତାର ଆଗ୍ନେୟ ବିଦ୍ରୋହ, ଜୀବନ ଦର୍ଶନର ପ୍ରବାହ ନୀତି ଓ ନୂତନ ଛନ୍ଦ, ରୁଷୋ, ଭଲଟାୟାର୍ ସାର୍ତ୍ରେଙ୍କ ଅଦ୍ଭୁତ ଅବିସ୍ମରଣୀୟ ଯୁଗ ପରିବର୍ତ୍ତନକାରୀ ଚିନ୍ତାଧାରା ମୋ ହୃଦୟରେ ଉଦ୍‌ବେଳନ ସୃଷ୍ଟି କରୁଥାଏ। ସବୁଜ ଶ୍ୟାମଳ ବିସ୍ତୀର୍ଣ୍ଣ ଫ୍ରାନ୍ସର ଆଧୁନିକ ବିଜ୍ଞାନର ବିସ୍ମୟକାରୀ କୃତି ପ୍ରସ୍ତୁତ ରାସ୍ତାଘାଟ, ସୁନ୍ଦର କୋଠାବାଡ଼ି, ଚର୍ଚ୍ଚ, ହୋଟେଲ, କଳକାରଖାନା ଦେଖି ଦେଖି ଶୀତତାପ ନିୟନ୍ତ୍ରିତ ବାସରେ ନାଚି ତୀବ୍ରଗତିରେ ଯାଉଛନ୍ତି ପ୍ରାୟ ୫୦ ଜଣ ପ୍ୟାରିସ ପରିଭ୍ରମଣକାରୀ ଡଚ, ଚୀନାବାସୀ ଭାରତୀୟ ନେପାଳୀ ମରୋକାନ ଇତ୍ୟାଦି। କାନରେ ଗୁଞ୍ଜରି ଉଠୁଛି 'Man is born free, but everywhere he is in chain' ଉପାଧ୍ୟଭରା ଅର୍ଥନୀତି ରାଜନୀତି ଶ୍ରେଣୀକୁ ମନ ଫେରିଯାଉଛି। ମାନସପଟରେ ଝଲସି ଉଠୁଛି ଅଦେଖା ରୁଷୋଙ୍କ କାଳ୍ପନିକ ଦାର୍ଶନିକ ମୁଖମଣ୍ଡଳ, ତାଙ୍କର ଚିନ୍ତାଧାରାକୁ ରେଭେନ୍ସାର ସମାଜ ବିଜ୍ଞାନୀ ଛାତ୍ରଙ୍କ

ନିକଟରେ ସୁନ୍ଦର ମର୍ମସ୍ପର୍ଶ ଭାବେ ପରିବେଷଣ କରୁଥିବା ତରୁର ଶ୍ରୀରାମଚନ୍ଦ୍ରଙ୍କ ଆନ୍ଦୋଳିତ ମୁଖ ଓ ମସ୍ତକ, ରାସ୍ତା ଦୁଇପାର୍ଶ୍ୱର ଧାଡ଼ି ଧାଡ଼ି ସବୁଜଲତା ଅନଚ୍ଛାଦିତ ବୃକ୍ଷରାଜି ମନେ ପକେଇଦେଉଛି। କବି ଓମରଖ୍ୟାୟାମ୍‌ଙ୍କ କବିତା 'ଜୀବନେ ଯା' ପାଓ ପାନ୍ କରେ ନାଓ ଫିରବେନା, ଆର ମରନ ପର'। ଜନଶୂନ୍ୟ ସବୁଜ ପ୍ରାନ୍ତରେ ବି ସାକିସୁରାର ଛବି ଝଲସି ଉଠୁଛି, କଳ୍ପନାର ଢେଉରେ ଭାସି ଆସୁଛନ୍ତି ପ୍ୟାରିସର ସ୍ୱାଧୀନମନା ଦ୍ରାକ୍ଷାରସ ପ୍ରିୟ ସୁନ୍ଦରୀ ତରୁଣୀ – ତରୁଣ। ନିର୍ଜନ ପରିବେଶରେ ଯୁଗଳ ଜୀବନର ମଧୁମୟଛନ୍ଦ ପରିବର୍ତ୍ତେ ସମୃଦ୍ଧିପୂର୍ଣ୍ଣ ଯାନ୍ତ୍ରିକ ପରିଚର୍ଯ୍ୟା ଭିତରେ ନିଃଶଙ୍କ ପ୍ରଣୟ ଉଦ୍‌ବିଗ୍ନ ଜୀବନ ଦୃଶ୍ୟ।



ପ୍ୟାରିସ୍ ଆଇଫିଲ୍‌ଟାୱାର ନିକଟରେ ଲେଖକ

ଟିଲ୍‌ବର୍ଗ ସହର ଅତିକ୍ରମ କରି ଆମ ବସ୍‌ଟି ପ୍ରାୟ ୪୦ ମିନିଟ୍ ନେଦରଲାଣ୍ଡ ଭିତରେ ଗଡିକରି ବେଲଜିୟମ୍ ଭୂଖଣ୍ଡରେ ପହଞ୍ଚିଲା। ସୀମାନ୍ତ ନିକଟବର୍ତ୍ତୀ ଏକ ସହରରେ ମଧ୍ୟାହ୍ନ ଭୋଜନ ସମାପନ କଲୁ, ମାକ୍‌ଡୋନାଲଡ୍ କଂପାନୀର ରେଷ୍ଟୁରାଣ୍ଟରେ। ଆମେରିକାର ଏହି କଂପାନୀ ଇୟୁରୋପ, ଏସିଆ ଓ ଲାଟିନ ଆମେରିକା, ଆଫ୍ରିକାର ବିକାଶଶୀଳ ଦେଶମାନଙ୍କର ବଡ଼ ବଡ଼ ସହର ମାନଙ୍କରେ ତାର ବିପଣୀ ମେଲେଇ ଦେଇଛି। ପଟାଟୋ, ଚିପ୍‌ସ ସହ ଅନ୍ୟାନ୍ୟ ଇଂରାଜୀ ଖାଦ୍ୟ,ମଧୁର ପାନୀୟ ଓ' କଫି ବିକ୍ରୟ କରି ପରିବ୍ରାଜକମାନଙ୍କୁ ସନ୍ତୁଷ୍ଟ କରିବା ସହ ପ୍ରଚୁର ଅର୍ଥ ଉପାର୍ଜନ ମଧ୍ୟ କରୁଛି। ସୁନ୍ଦର ପରିଚାଳନା, କିସମ କିସମର ଖାଦ୍ୟ। ସ୍ୱେଚ୍ଛାକୃତ ଭାବେ ଆର୍ଥିକ କ୍ଷମତା ଓ ରୁଚି ଅନୁଯାୟୀ ନିଜକୁ ନିଜେ ପରଷିବାର ବ୍ୟବସ୍ଥା। ଖାଦ୍ୟ ପାନୀୟ ସେବନ ସହ କିଛି ସମୟ ବିଶ୍ରାମ ନେବା ଓ ଟୟଲେଟ୍ ଯିବା ସୁବିଧା ଏହି ରେଷ୍ଟୁରାଣ୍ଟର ବିଶେଷତ୍ୱ। ମଧ୍ୟାହ୍ନଭୋଜନ ପରେ ବସ୍ ଛୁଟିଲା ପ୍ୟାରିସ୍ ଅଭିମୁଖେ ପ୍ରାୟ ଏକ ଦେଢ଼ଘଣ୍ଟା ବେଲଜିଅମ ଭୂଖଣ୍ଡ ଉପରେ ବସ୍ ଗଲି ଥିଲା। ତା'ପରେ ଫ୍ରାନ୍ସର ବହୁ ଇପ୍‌ସିତ ମାଟି, ମାଟିରେ

ଫଳାଇଛନ୍ତି ସୁନା ଏବଂ ସୁନାରେ ସୁସଜ୍ଜିତ ସୁଶୋଭିତ ଗର୍ବିତ ଫରାସୀ, ଶିକ୍ଷା, ସଂସ୍କୃତି, କଳା, ସଂଗୀତର ପ୍ରାଣକେନ୍ଦ୍ର ଫ୍ରାନ୍ସର ରାଜଧାନୀ ବିଶ୍ୱ ବିଖ୍ୟାତ ପ୍ୟାରିସ୍ ସହରରେ ପଦାର୍ପଣ କଲୁଁ ସଂଧ୍ୟାରେ। ସଂଧ୍ୟା ବେଳକୁ ପ୍ୟାରିସ୍‌ର ଦୋକାନ ବଜାର ବନ୍ଦ, ଚକବନ୍ଦ, ରେଷ୍ଟୁରାଣ୍ଟମାନଙ୍କୁ ବାଦ ଦେଇ। ଆମର ଗନ୍ତବ୍ୟସ୍ଥଳ ରାତ୍ରିଯାପନ ନିମିତ୍ତ ଉଦ୍ଦିଷ୍ଟ ହୋଟେଲ୍‌ରେ ପହଞ୍ଚିଲୁ ସଂଧ୍ୟା ୭ଟାରେ ସୂର୍ଯ୍ୟାସ୍ତ ହୋଇ ନଥାଏ, ଅନ୍ଧକାର ଆସିବାକୁ ଆହୁରି ଘଣ୍ଟେ ବେଳ ଥାଏ। ସୁରମ୍ୟ ହୋଟେଲରେ କ୍ଳାନ୍ତ ଦେହରେ ନିଦ୍ରାଦେବୀଙ୍କ କୋଳରେ ଶାନ୍ତିରେ ଆଶ୍ରୟ ନେ ।

ସକାଳର କୋମଳ ଶୁଭ୍ର ସୂର୍ଯ୍ୟକରଣ ଆମକୁ ସ୍ୱାଗତ କଲା ଅପୂର୍ବ ସୁନ୍ଦର ପ୍ୟାରିସ ସହର ଭିତରକୁ। ଅନନ୍ୟ ପ୍ରାସାଦ ମାଳିନୀ ପ୍ୟାରିସ ନିଜର ରୂପ ସୌନ୍ଦର୍ଯ୍ୟରେ ଗର୍ବିତ, କେନ୍ଦ୍ର ପ୍ୟାରିସ୍‌ରେ ଦେଖିଥିବା ପ୍ରଥମ ପ୍ରାସାଦଠାରୁ ଶେଷ ଦେଖା ପ୍ରାସାଦ ପର୍ଯ୍ୟନ୍ତ ସବୁଗୁଡ଼ିକ ରମଣୀୟ ଆକର୍ଷଣୀୟ, ଅଭିନବ ଗୋଥିକ ସ୍ଥାପତ୍ୟ କଳାରେ ନିର୍ମିତ ବିରାଟ ହର୍ମ୍ୟମାଳା। ଇତିହାସରେ ଗୌରବମୟ ସ୍ମୃତିକୁ ବହନ କରି ଦଣ୍ଡାୟମାନ, ପୁରାତନ ଓ ନୂତନର ମଧୁର ସୁନ୍ଦର ସମନ୍ୱୟରେ ରାସ୍ତାର ଦୁଇପାର୍ଶ୍ୱରେ ଅତୀବ ଶୃଙ୍ଖଳା ଓ ହର୍ଷୋତ୍ଫୁଲ୍ଲ ଚିତ୍ତରେ ଠିଆ ହୋଇଥିବା ଅଟ୍ଟାଳିକାର ତଳମହଲାରେ ନାନାପ୍ରକାର ସୌଖୀନ ଦ୍ରବ୍ୟର ମନୋରଂଜନ ଦୃଶ୍ୟ। ବସରେ ଥିବା ପରିଭ୍ରମଣକାରୀଙ୍କ ଗାଇଡ଼ଟି ପ୍ରଧାନ ଅଟ୍ଟାଳିକା ଓ ଐତିହାସିକ ପ୍ରାସାଦମାନଙ୍କର ବର୍ଣ୍ଣନା କହିଚାଲିଥାଏ ଗମ୍ଭୀର ହାସ୍ୟ ରସାତ୍ମକ ଭାଷାରେ। ପ୍ରଧାନ ରାସ୍ତାରୁ ଶାଖା ରାସ୍ତାଗୁଡ଼ିକ ବାହାରିଛି ଏବଂ ସେହି ରାସ୍ତାର ଦୁଇ କଡ଼ରେ ମଧ ଚାରିପାଞ୍ଚ ଛଅ ତାଲାର ଘର। ମଝି ରାସ୍ତା ଦୂରରୁ ସଂକୀର୍ଣ୍ଣ ଦେଖାଯାଉଥିଲେ ହେଁ ବଡ଼ ବଡ଼ ଯାନବାହାନ ଗୁଡ଼ିକ ବେଶ୍ ନିର୍ଭୟରେ ଗତି କରୁଥାଏ, ମଧ ଯୁଗୀୟ ବର୍ଣ୍ଣିଳ, ଇତିହାସ ଗୌରବ ରଂଜିତ ଗୃହଗୁଡ଼ିକ ମନରେ ଆଣୁଥାଏ ଆନନ୍ଦ ବିସ୍ମୟ। ମନେ ପଡ଼ିଯାଉଥାଏ ସବୁଜ ଯୁଗର ଓଡ଼ିଆ କବିଙ୍କ ମନଛୁଆଁ କାବ୍ୟପଂକ୍ତି :-

ମିଥ୍ୟାକୋପେ କୋପନାବାଳା ପୂଜା ଗରବେ ପରଜା<br>
ସରମ ଛଳେ ନରମ ମୁଖେ ଫୁଟାଇ ଦେଲା କରବୀ ।

ଟୁରିଷ୍ଟ ବସ୍‌ଟି ଦର୍ଶନୀୟ ସ୍ଥାନମାନଙ୍କରେ ଆମକୁ ଓହ୍ଲାଇ ଦେଉଥାଏ। ନିର୍ଦ୍ଦିଷ୍ଟ ସମୟ ଭିତରେ ସ୍ଥାନଟିକୁ ଦର୍ଶନ କରି ଆନନ୍ଦିତ ମନରେ ଆମେ ଫେରି ଆସୁଥାଉ ବସ୍‌କୁ, ସହର ଭିତରେ ଯେଉଁ ସବୁ ଦର୍ଶନୀୟ ସ୍ଥାନଗୁଡ଼ିକ ଆମକୁ ମୁଗ୍ଧ ବିସ୍ମିତ କରିଥିଲା ସେଗୁଡ଼ିକର ଉଲ୍ଲେଖ ଯେତିକି ଆମୋଦଦାୟକ ସେତିକି ଶିକ୍ଷଣୀୟ।

ଧର୍ମ ଇତିହାସବୋଧ ସ୍ଥାପତ୍ୟ, କଳା, ସୌନ୍ଦର୍ଯ୍ୟର ଅନନ୍ୟ କୀର୍ତ୍ତି ନୋଟ୍ରଡ଼ାମ ଚର୍ଚ୍ଚ (Notre Dame of Paris) ଯୁଗେ ଯୁଗେ ଆକର୍ଷି ଆଣିଛି ବିଶ୍ୱ ପରିବ୍ରାଜକଙ୍କୁ।

ବିଶ୍ୱ ବିଖ୍ୟାତ ଏହି ଧର୍ମପୀଠଟି ପ୍ୟାରିସ୍ ତଥା ସମଗ୍ର ବିଶ୍ୱର ମଣିଷ ହୃଦୟର ଈଶ୍ୱର ବିଶ୍ୱାସର ସ୍ମାରକ।

ଏହି ବିସ୍ମୟକାରୀ ପବିତ୍ର ପୀଠଟି ଜେରୁଜେଲମର ପେଟ୍ରିଆକ୍ ହିରାକ୍ଲିଅସ୍ (Hiraclius ) ଙ୍କ ଦ୍ୱାରା ପ୍ରଥମ ସୋଲୋମାନ ହାଇ ମାସ (Soloman High mass) ସାହାଯ୍ୟରେ ପୂଜାର୍ଚ୍ଚିତ ହୋଇଥିଲା। ୧୧୬୩ ମସିହାରେ ମରିସଦେ ସୁଲି (Maricede Sully) ଙ୍କ ଦ୍ୱାରା ନିର୍ମିତ ଏହି ଚର୍ଚ୍ଚଟି ପ୍ରାୟ ୮୦୦ବର୍ଷ କାଳ ସାରା ବିଶ୍ୱରେ ପ୍ରସିଦ୍ଧ ପ୍ରାର୍ଥନାସ୍ଥଳୀ ରୂପେ ପରିଚିତ। ପ୍ରତ୍ୟେକ ବର୍ଷ ପ୍ରାୟ ୧୦ନିୟୁତ ଯାତ୍ରୀ ଏହାକୁ ସ୍ପର୍ଶ କରିଯାଇଥାନ୍ତି, ଏହାର ଉଚ୍ଚ arches & spires ମଣିଷର ଆତ୍ମାକୁ ପ୍ରେମମୁକ୍ତିର ଅବତାର ଈଶ୍ୱରଙ୍କ ନିକଟକୁ ନେଇଯାଏ । ୧୮୮୬ ଖ୍ରୀଷ୍ଟ ମାସରେ ଧର୍ମାନ୍ତରିତ ପଲ୍‌କ୍ଲଏଡ଼ଲ (Paul Claudel) କହିଥିଲେ, 'ନଟ୍ରୋଡ଼ାମ' କେବଳ ଗୋଟିଏ ପ୍ରାସାଦ ନୁହେଁ ଏହା ଏକ ଜୀବନ୍ତ ବ୍ୟକ୍ତି। ଏହାକୁ କେନ୍ଦ୍ର କରି ଗଢ଼ିଉଠିଛି ପ୍ୟାରିସ ନଗର। ପ୍ରାୟ ୨୦୦୦ ବର୍ଷ ତଳେ ଗାଲିକାଓ ରୋମୀୟ ଦେବତାମାନେ ଏଠାରେ ପୂଜା ପାଉଥିଲେ। ସମ୍ରାଟ Tibe rius...ଙ୍କ ସମୟରେ ସମ୍ରାଟ ପ୍ୟାରିସ୍ ନଦୀ କୂଳେ ବାସ କରୁଥିଲେ। ଏଠାରେ ଜୁପିଟରଙ୍କ ଉଦ୍ଦେଶ୍ୟରେ ଏକ ବେଦୀ ଗଢ଼ିଥିଲେ। ତିନିଟି ଚର୍ଚ୍ଚ ଜାଗାରେ ଏହି ନୋଟ୍ରଡ଼ାମ୍ ତିଆରି ହୋଇଛି। ସପ୍ତମ ଶତାବ୍ଦୀ ଓ ନବମ ଶତାବ୍ଦୀରେ ଏହି ସ୍ଥାନରେ ଚର୍ଚ୍ଚ ଗଢ଼ା ଯାଇଥିଲା ବିଭିନ୍ନ ଢଂଗରେ। ଅଷ୍ଟମ ଶତାବ୍ଦୀ ପର୍ଯ୍ୟନ୍ତ ବିଭିନ୍ନ ରୂପରେ ବର୍ତ୍ତମାନର ଚର୍ଚ୍ଚର ଉତ୍ତରକୁ ଏହା ଗଢ଼ାଯାଇଥିଲା। ଉନ୍ନତ ଗୋଥିକ ସ୍ଥାପତ୍ୟରେ ନିର୍ମିତ ଏହି ଚର୍ଚ୍ଚଟି ମାଆ ମେରୀଙ୍କୁ ଉତ୍ସର୍ଗିତ ହୋଇଥିଲେ ହେଁ ଏହା ଯିଶୁଖ୍ରୀଷ୍ଟଙ୍କ ବହୁ ଶିଷ୍ୟଙ୍କ ପ୍ରତିମୂର୍ତ୍ତି ଧାରଣ କରିଛି। ୧୧୩ଟି Stops ଓ ୭୮୦୦ଟି ପାଇପ୍ ବିଶିଷ୍ଟ ଚର୍ଚ୍ଚଟି ମନରେ ଭରିଦିଏ ଯୁଗପତ୍ ବିସ୍ମୟ ଓ ଆନନ୍ଦ। ପ୍ରତି ରବିବାର ବିଶିଷ୍ଟ ଚର୍ଚ୍ଚର ସଂଗଠକମାନେ ଆସି ଈଶ୍ୱରଙ୍କ ଗୁଣଗାନ କରି ଭକ୍ତମାନଙ୍କ ପ୍ରାଣରେ ଆଣି ଦିଅନ୍ତି ଶାନ୍ତି ସୌନ୍ଦର୍ଯ୍ୟ ଓ ଆଲୋକ। ସପ୍ତଦଶ ଅଷ୍ଟାଦଶ ଶତାବ୍ଦୀରୁ ପ୍ରଖ୍ୟାତ ଚିତ୍ରକରମାନେ ନୋଟ୍ରୋଡ଼ାମ୍‌ର କାନ୍ଥରେ ସେମାନଙ୍କର ଅନବଦ୍ୟ କଳା ଚିତ୍ରଣ କରି ଚର୍ଚ୍ଚଟିକୁ ସୁରମ୍ୟ କରିଛନ୍ତି। ୧୨୫୦-୧୨୭୦ ମସିହାରେ ଗଢ଼ା ଏହାର ଝରକା ଓ ପୋର୍ଟାଲ, ୧୨୭୦ରେ ନିର୍ମିତ ଗୋଲାପ- ଝରକାର ପରିଧି ୧୩ ମିଟର ଏବଂ ଉଚ୍ଚତା ୨୧ ମିଟର, ଚର୍ଚ୍ଚ ଦେହରେ ନିୟୁ ଟେଷ୍ଟମେଣ୍ଟର ଦେବତାମାନଙ୍କ ଚିତ୍ରର ଅତ୍ୟନ୍ତ ମନମୁଗ୍ଧକର। ଚର୍ଚ୍ଚ ଭିତରେ କେତେଗୁଡ଼ିଏ କୁମାରୀ ମେରୀଙ୍କ ଶିଶୁ କାଖେଇ ଥିବା ମୂର୍ତ୍ତି ଅତୀବ ରମଣୀୟ। ବିଭିନ୍ନ ଧର୍ମ ପ୍ରଚାରକଙ୍କ ଛବି ଧର୍ମ ଇତିହାସରେ ଯୁଗ ଯୁଗର ସଂକେତ ଦିଏ।

କେଥେଡ୍ରାଲ୍ ନିର୍ମାଣ ୧୧୬୩ ମସିହାରେ, ନିର୍ମାଣର ସ୍ମୃତିଫଳକରେ ଫରାସୀ ଭାଷାରେ ଲେଖା ଦେଖିଲେ ଆଗନ୍ତୁକ ମନରେ ଚତୁର୍ଦ୍ଦଶ ପଞ୍ଚଦଶ ଶତାବ୍ଦୀରେ ରହିଥିବାର

ଭାବଜାତ ହୁଏ । ଚତୁର୍ଦ୍ଦଶ ଶତାବ୍ଦୀରେ କଳାଜର ମହାମାରୀର ରୂପ ନେଇ ଫ୍ରାନ୍ସର ଅଧେ ଲୋକଙ୍କ ( ୧୦ ନିୟୁତ) ପ୍ରାଣ ନାଶ କରିଥିଲା । ସେହି ଦୁର୍ଯୋଗର ସ୍ମୃତିରେ ଯିଶୁଖ୍ରୀଷ୍ଟଙ୍କ ଉଦ୍ଧାରକର୍ତ୍ତା ଛବି ଅଙ୍କାଯାଇଛି ଚର୍ଚ୍ଚଗାତ୍ରରେ । ଯିଶୁଙ୍କ ଜୀବନର ନାନାଚିତ୍ର, ତାଙ୍କର ଶୈଶବ କାଳରେ ଶିକ୍ଷକଙ୍କ ଗହଣରେ ଶିକ୍ଷା, ଜେରୁଜେଲମରୁ ପଳାଇ ଆସୁଥିବା ଦୁଇ ଅନୁଚରଙ୍କୁ ଉଦ୍‌ବୋଧନ, ନିଜ ଶରୀରର ରୋଟି, ରକ୍ତର ଜଣେ ଶିଷ୍ୟ ତାଙ୍କୁ ଶେଷଭୋଜନ (Last Super) ଦେଉଥିବା ଚିତ୍ର । Treasury ରୁମ୍‌ରେ ଯିଶୁ ପିନ୍ଧିଥିବା Crown of theons ର ଚିହ୍ନ Relic ଅଛି ।

ତ୍ରୟୋଦଶ ଲୁଇସ୍ ସଂକଳ୍ପ କରିଥିଲେ ତାଙ୍କର ପୁଅଟିଏ ଜନ୍ମ ହେଲେ ତାଙ୍କ ସାମ୍ରାଜ୍ୟକୁ କୁମାରୀ ମେରୀଙ୍କୁ ଉତ୍ସର୍ଗ କରିବେ । ଚତୁର୍ଦ୍ଦଶ ଲୁଇ ତାଙ୍କର ପୁତ୍ର ଭାବେ ଜନ୍ମ ନେଲେ ୧୩୩୮ରେ ସେହି ଦିଗରୁ ଅଗଷ୍ଟ ୧୫ରେ ପ୍ରତିବର୍ଷ ନତ୍ରୋଡାମର ବଡ଼ ଉତ୍ସବ ପାଳନ କରାଯାଏ । ଅଷ୍ଟାଦଶ ଶତାବ୍ଦୀରେ ଗୋଥିକ ସ୍ଥାପତ୍ୟ ପ୍ରତି ଶ୍ରଦ୍ଧାର ଅଭାବ ବା ଘୃଣା ଏହି ଚର୍ଚ୍ଚର ଅବକ୍ଷୟ ଆଣିଥିଲା । ଫରାସୀ ବିପ୍ଳବ ପୂର୍ବରୁ ଏହି ଚର୍ଚ୍ଚକୁ ବିକ୍ରି କରି ଦେବାର ଯୋଜନା ଚାଲିଥିଲା । ସମ୍ରାଟ ନେପୋଲିଅନ ଏହିଠାରେ ମୁକୁଟ ଧାରଣ କରିଥିଲେ । ସମଗ୍ର ପ୍ରାସଦଟିକୁ ଥିଏଟର ରୂପେ ସଜା ଯାଇଥିଲା । ୧୮୩୫ରେ Victor Hugo ତାଙ୍କର ବିଶ୍ୱବିଖ୍ୟାତ ଉପନ୍ୟାସ 'Notre Dame Depars' ପ୍ରକାଶ କଲେ, ଏହା ଜନସାଧାରଣଙ୍କ ମନରେ ଚର୍ଚ୍ଚ ପ୍ରତି ଆଗ୍ରହ ସୃଷ୍ଟି କଲା । ଏହାର ପୁନରୁଦ୍ଧାର କାର୍ଯ୍ୟ ଚାଲିଲା, ୧୮୪୫ରୁ ୧୯୬୪ ପର୍ଯ୍ୟନ୍ତ । University of Paris ଏହି ଚର୍ଚ୍ଚ ଉଦ୍ୟମରେ ପ୍ରତିଷ୍ଠିତ ହୋଇଥିଲା ସିନ୍ ନଦୀ କୂଳସ୍ଥ ଚିକିତ୍ସାଳୟ ବିଶପ ଅଫ୍ ପ୍ୟାରିସ୍ ଲେଣ୍ଡିଙ୍କ ଦ୍ୱାରା ପ୍ରତିଷ୍ଠିତ । ଚର୍ଚ୍ଚ ପ୍ରଧାନ ଦ୍ୱାରଦେଶରେ ପାପପୁଣ୍ୟ, ବର୍ଷର ଚାରି ଋତୁ ଜୀବନର ଚାରି ପର୍ଯ୍ୟାୟର ଦୃଶ୍ୟ ଦେଖିବାକୁ ମିଳେ । ଫରାସୀ ବିପ୍ଳବ ବେଳେ କେତେ ଗୁଡ଼ିଏ ସେଣ୍ଟଙ୍କ ମୂର୍ତ୍ତିର ମୁଣ୍ଡ ଖଣ୍ଡିତ ହୋଇଥିଲା । ତାହାକୁ ସଂଗ୍ରହ କରି Cluny ମିଉଜିଅମ୍‌ରେ ରଖାଯାଇଛି ।

ଚର୍ଚ୍ଚର କେନ୍ଦ୍ର ଦ୍ୱାରଦେଶରେ ମେରୀ ଓ ୨ଟି ଦେବଦୂତଙ୍କ ଛବି, ବାମ ଓ ଦକ୍ଷିଣ ପୋର୍ଟାଲରେ ମାଡ଼ାମଇଉଙ୍କ ଛବି ଚର୍ଚ୍ଚର ଦ୍ୱାରଦେଶରେ ମେରୀ ଓ ବିଭିନ୍ନ ସେଣ୍ଟ Amne, Mariel ଙ୍କ ଛବି । ବାମ ଦିଗର ପୋର୍ଟାଲରେ ମେରୀଙ୍କ ମୃତ୍ୟୁ ପୂର୍ବର ଯିଶୁଙ୍କ ମସ୍ତକରେ ନିଜର ମୁକୁଟ ପିନ୍ଧାଇ ଦେବାର ଦୃଶ୍ୟ ମର୍ମସ୍ପର୍ଶୀ ।

ଏହି ଚର୍ଚ୍ଚର ୧୯୬୫-୭୦ରେ ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ଖୋଦିତ ରୋମାନ ଯୁଗରୁ ମଧ୍ୟଯୁଗ ପର୍ଯ୍ୟନ୍ତ ମୃତ୍ତିକା ପାତ୍ର ମୁଦ୍ରା ଓ ଅଳଙ୍କାର, ଚିରନ୍ତନୀ ଚିତ୍ର ଓ ସ୍ଥାପତ୍ୟ କର୍ମ ଗଚ୍ଛିତ ଅଛି । ଚର୍ଚ୍ଚରୁ ବାହାରିଲା ପରେ, ପ୍ରଖ୍ୟାତ ବାଗ୍ମୀ Massilon ଙ୍କ ନାମରେ ନାମିତ

ସଡ଼କ ଧାରରେ ଦେଖିବାକୁ ମିଳେ ଅଷ୍ଟାଦଶ ଶତାବ୍ଦୀର ଅଟ୍ଟାଳିକା ବାହ୍ୟରୂପ Guillon's House, Saint Etiennesଙ୍କ ଗୃହ।

ଚର୍ଚ୍ଚ ଟାୱାରର ଉଚ୍ଚତା ୬୯ ମିଟର, ଚୂଡ଼ାର ଉଚ୍ଚତା ୯୬ମିଟର, ଗୀର୍ଜାର ମଧ୍ୟଭାଗର ଦୈର୍ଘ୍ୟ ୬୦ ମିଟର ଚଉଡ଼ା, ୧୨ ମିଟର, ୨୧ ହେକ୍ଟର ଜାଗାରେ ନିର୍ମିତ ୧୩୦୦ ଓକ ଗଛର କାଠରେ ତିଆରି। ୧୯୦୫ ରୁ ସବୁ cathedral ରାଷ୍ଟ୍ର ଦ୍ୱାରା ନିୟନ୍ତ୍ରିତ ଓ ପରିଚାଳିତ।

ଟୁରିଷ୍ଟ ବସ୍‌ରେ ପ୍ୟାରିସ୍‌ର ବିଭିନ୍ନ ରାସ୍ତା ଗଳି କନ୍ଦି ଦେଇ ଗତି କରୁଛୁଁ। ଦକ୍ଷ ପଥପ୍ରଦର୍ଶକ ବାମ ଓ ଡାହାଣ ପାର୍ଶ୍ୱରେ ଥିବା ଐତିହାସିକ ସ୍ଥଳୀ ଓ ପ୍ରାସାଦର ବର୍ଣ୍ଣନା କରିଚାଲିଥାଏ। ଆମେ ମୁଗ୍ଧ ନେତ୍ରରେ ଅବଲୋକନ କରି ସେଗୁଡ଼ିକର ବୈଚିତ୍ର୍ୟମୟ କାହାଣୀ ଉପଭୋଗ କରୁଥାଉଁ। ଏହି ପ୍ରକ୍ରିୟାରେ ଅବଲୋକନ କଲୁଁ Ste chapelle ଅତି ସୁନ୍ଦର ଗୋଥିକ ସ୍ଥାପତ୍ୟର ହର୍ମ୍ୟ। ଏହା ତିନି ବର୍ଷ ଭିତରେ ୧୨୪୮ରେ ନିର୍ମିତ ହୋଇଥିଲା। ନବମ ଲୁଇସଙ୍କର କଳ୍ପିତ ଏହି ପ୍ରାସାଦ ପବିତ୍ର ରେଲିକ୍ସ ରଖିବା ଉଦ୍ଦେଶ୍ୟରେ ନିର୍ମିତ ହୋଇଥିଲା । ମାତ୍ର ସଂପ୍ରତି ଏହା Notre Dame ରେ ରଖାଯାଇଛି। ଦୃଷ୍ଟି ଆକର୍ଷଣ କରିଥିଲା Conciergerie ଜେଲ ଯେଉଁଠି Reign of Terron ବିପ୍ଳବ ସମୟର ଆତଙ୍କମୟ ଶାସନରେ ୨୬୦୦ ବଂଦୀ ଥିଲେ ଏବଂ ଯେଉଁ ଠାରୁ marie antinelte ଙ୍କୁ ଗିଲୋଟିନ୍‌କୁ ପଠାଯାଇଥିଲା।

Musee Dulouvre ତ୍ରୟୋଦଶ ଶତାବ୍ଦୀରେ Phillippe Auguste ଙ୍କ ଦ୍ୱାରା ଏକ ଦୁର୍ଗ ରୂପେ ନିର୍ମିତ ହୋଇଥିଲା। ସେତେବେଳେ ତାର ନାମ ଥିଲା Palaes dulonvre । ୧୭୯୩ରେ ଏହା ଏକ ମ୍ୟୁଜିୟମ୍‌ରେ ପରିଣତ ହେଲା। ଏହାର ମୁଖ୍ୟ ଆକର୍ଷଣ ହେଉଛି ରହସ୍ୟମୟୀ ଦୃଷ୍ଟ ମୋନାଲିସା ଓ ସୁନ୍ଦରୀ ଭେନସ୍ ଡିମିଲୋ Venus demilo ଙ୍କ ଛବି, ବିଶ୍ୱବିଖ୍ୟାତ ଶିଳ୍ପୀ ରାଫେଲ ଟିସିଆନ୍‌ଙ୍କ ଚିତ୍ର ଓ ଗ୍ରୀକ୍ ରୋମାନ ସ୍ଥାପତ୍ୟ ଦେଖିବାକୁ ମିଳେ। ୧୯୭୭ରେ ନିର୍ମିତ centre pom pidou ଜାତୀୟ କଳା ସଂସ୍କୃତିର କେନ୍ଦ୍ର, ପୁରାତନ ଓ ଆଧୁନିକ କଳା ଓ ସ୍ଥାପତ୍ୟର ସମାହାର ମନୋମୁଗ୍ଧକର। ଦିଶିଯାଏ ଗର୍ବିତ ରୂପ Arc De Triomphe and champs elysees 9 ଯାହାର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ ୧୮୦୬ରେ ନେପୋଲିୟନ୍ ବିଜୟର ସ୍ମାରକୀସ୍ୱରୂପ। ମାତ୍ର ଯୁଦ୍ଧରେ ମଗ୍ନ ରହି ଶେଷରେ ପରାଜୟ ବରଣ କରି ଏହାର ନିର୍ମାର ସଂପୂର୍ଣ୍ଣ କରିପାରି ନଥିଲେ, ପ୍ରାସାଦଟି ପୂର୍ଣ୍ଣ ନିର୍ମିତ ହେଲା ୧୮୩୬ରେ। ୧୯୨୦ରୁ ପ୍ରଥମ ବିଶ୍ୱଯୁଦ୍ଧର ଅଜଣା ସୈନିକଙ୍କ କବର ଓ ସ୍ମୃତି ଏହା ବହନ କରିଚାଲିଛି। ଏହି ଦୁର୍ଗଟି ପ୍ୟାରିସର ସବୁଠୁ ବଡ଼ ରାସ୍ତା ଛକ Plae deletrile ଏହା ସ୍ଥାପିତ, ସଂଲଗ୍ନ ଆଉ

କେତୋଟି ପ୍ରାସାଦ, ନେପୋଲିଅନ୍‌ଙ୍କ ସେନାପତି ନାମରେ ନାମିତ। ଚତୁର୍ଦ୍ଦଶ ଶତାବ୍ଦୀରେ ନିର୍ମିତ ବାଷ୍ଟାଇଲ୍ ପ୍ରାସାଦକୁ ଫରାସୀ ବିପ୍ଳବ ସମୟରେ ଭାଙ୍ଗି ଦିଆଯାଇଥିଲା। ଅତୀତର ସ୍ମୃତି ବହନ କରି ପଡ଼ିରହିଛି ସ୍ଥାନଟି ଯାନବାହାନର ପ୍ରସିଦ୍ଧ କେନ୍ଦ୍ର ରୂପେ। ସିନ୍ ନଦୀର ବାମ କୂଳରେ ଦେଖିବାକୁ ମିଳେ Pantheon ଯାହା ଏକ ଚର୍ଚ୍ଚ ରୂପେ ନିର୍ମିତ ହୋଇଥିଲା ୧୭୫୦ରେ ଏବଂ ନିର୍ମାଣ ଶେଷ ହୋଇଥିଲା ୧୭୮୯ରେ, ଏହି ଗୃହମାନଙ୍କରେ ବିଶ୍ୱବିଖ୍ୟାତ ଫରାସୀ ମନୀଷୀମାନଙ୍କର କବର, ଭଲଟାୟାର, ରୁଷୋ, ଭିକ୍ଟରହ୍ୟୁଗୋ, ଏମିଲି ଜୋଲା ଜେନ ମୋଲିନ୍ ଏବଂ ନୋବେଲ ପୁରସ୍କାର ବିଜେତା ମେରୀ କ୍ୟୁରିଙ୍କ ସମାଧି। ୧୬୭୦ରେ ଚତୁର୍ଦ୍ଦଶ ଲୁଇସ୍‌ଙ୍କ ନିର୍ମିତ Hotels Des Invalides ବିକଳାଙ୍ଗ ଯୁଦ୍ଧ ସୈନିକଙ୍କ ରହିବା ଉଦ୍ଦେଶ୍ୟରେ ନିର୍ମିତ ହୋଇଥିଲା। ୧୭୮୯ରେ ଏହା ଭିତରେ ବିପ୍ଳବୀମାନେ ପ୍ରବେଶ କରି ୨୮୦୦୦ ରାଇଫେଲ୍ କରଗତ କରିଥିଲେ।

ଅନ୍ୟ ଏକ ଆକର୍ଷଣୀୟ ସୃଷ୍ଟି ହେଉଛି ଆଇଫିଲ୍ ଟାୱାର୍, ପ୍ୟାରିସ୍ ନଗରର ସ୍ମାରକୀ। ଏହା ଦେଖି ଆମେ ମୁଗ୍ଧ ବିସ୍ମିତ ହେଲୁ।

ପ୍ୟାରିସ୍ ଏକ ଐତିହାସିକ ଗୌରବମୟ ଅତିଆଧୁନିକ ରମଣୀୟ ସହର। ଏହାର ହୋଟେଲ ଠାରୁ ଆରମ୍ଭ କରି ସମାଧିପୀଠଗୁଡ଼ିକ ଯେତିକି ବିସ୍ମୟକର ସେତିକି ଅନନ୍ୟ ଭାବ ଉଦ୍ରେକକାରୀ। ସବୁଠୁ ବ୍ୟୟ ବହୁଳ ହୋଟେଲରେ ଗୋଟିଏ ରାତିର ଦେୟ ୨୦୦ ଇରୋ, ଏହାର ଦୋକାନରେ ନବଜନ୍ମିତ ଶିଶୁର ସବୁଠୁଁ ମୂଲ୍ୟବାନ ପୋଷାକର ଦାମ ୧୦୦୦ ଇରୋ, ସେଲୁନର କେଶ ବିନ୍ୟାସର ମୂଲ୍ୟ ୨୦୦ ଇରୋ। ରୂପା ଘମଚରେ ନବଜାତ ଶିଶୁ ଯେ କ୍ଷୀର ପିଏ ଏତିକି ନୁହେଁ, ସୁନା କତୁରିରେ କେଶକର୍ତ୍ତନ ମଧ କରାଯାଏ। ଏହାର ସରକାରୀ ଅଫିସର ସ୍ୱାତନ୍ତ୍ର୍ୟ ମଧ ବିସ୍ମୟକର। ୫୯ ତାଲା ବିଶିଷ୍ଟ ଅଟ୍ଟାଳିକା mont parnasse ରେ ୫୧୦୦ କର୍ମଚାରୀ କର୍ମରତ। ଏହାର ପାଦଦେଶରୁ ୫୬ ତାଲା ପର୍ଯ୍ୟନ୍ତ ଲିଫ୍‌ଟରେ ଯିବାକୁ ଲାଗେ ମାତ୍ର ୪୦ ସେକେଣ୍ଡ।

## ସିନ୍ ନଦୀରେ ନୌବିହାର

ପ୍ୟାରିସ୍ ସହରରେ ଦ୍ୱିତୀୟ ଦିନ ପରିଭ୍ରମଣ। ଗ୍ରୀଷ୍ମଋତୁର ମଧୁର ସଫେଦ ସକାଳ ଅତି ଆଦରରେ ଡାକିନେଲା, ବିଦେଶୀ ନଦୀର ମନ୍ମୟ କୋଳକୁ। ଟିକେଟ୍ କାଟି ଷ୍ଟିମର ଭିତରେ ପ୍ରବେଶ କଲୁଁ। ମନେପଡ଼ିଗଲା ୫୦ ବର୍ଷ ତଳର କଥା, କଲିକତା ସହରରେ ଛାତ୍ର ଜୀବନ ବଂଧାଘାଟରୁ ନିମତାଲାଘାଟ କଳକଳ ନାଦିନୀ ଗଙ୍ଗାନଦୀର ଧୂସର ନୀଳ ଜଳରେ ନଦୀପାର, ମାତ୍ର ୧୦ ପଇସା ଭଡ଼ା, ଉପରେ ଉନ୍ମୁକ୍ତ ଆକାଶ, ଗଙ୍ଗା ନଦୀର

ପ୍ରଶସ୍ତ ବକ୍ଷରେ ଭାସମାନ ଶହ ଶହ ନୌକା, ନଦୀଘାଟରେ ଶହ ଶହ ଲୋକ ସ୍ନାନରତ। ଓଁକାର ଶବ୍ଦରେ ଆକାଶ ଗୁଞ୍ଜରିତ। ନିମତାଲା ଘାଟରେ ପହଞ୍ଚିଲା ପୂର୍ବରୁ ବିଶେ ପ୍ରସିଦ୍ଧ ଶ୍ମଶାନଘାଟ ଯେଉଁଠି ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ ମରଶରୀର ଭସ୍ମରେ ପରିଣତ ହୋଇଥିଲା। ସିନ୍ ନଦୀର ଘାଟରେ ଏ ଦୃଶ୍ୟ ବିରଳ। ସ୍ନାନରତ ଲୋକ ନାହାନ୍ତି। ଓଁକାର ଶବ୍ଦ ନାହିଁ, ମନ୍ତ୍ରୋଚାରଣ ସହ ମୁଣ୍ଡରେ ଚନ୍ଦନ, ସିନ୍ଦୁର ଦେବୀ ବେଲପତ୍ର ତୁଳସୀପତ୍ର ସେବନ କରିବା ନାହିଁ। ନାହିଁ ନୌକା, ନାହିଁ ଆହୁଲା। ନଦୀକୂଳରେ ଦଣ୍ଡାୟମାନ ବିରାଟ ଅଟ୍ଟାଳିକା।

ଷ୍ଟିମର ବା ଛୋଟ ଜାହାଜଟି ଦୁଇ ତାଲା, ବିଶିଷ୍ଟ ତଳତାଲାରେ ବସିଲେ ପାର୍ଶ୍ୱକୁ ଦୃଷ୍ଟି ଯିବ, ମୁଣ୍ଡ ଉପରର ଖୋଲାଆକାଶ ଦିଶିବ। ମୁକ୍ତ ଆକାଶ ଓ ପାର୍ଶ୍ୱସ୍ଥ ପ୍ରାସାଦମାଳାକୁ ଅବଲୋକନ କଲୁଁ। ମନେ ପଡ଼ିଗଲା ଆମେରିକାର ଥାଉଜେଣ୍ଡ ଆୟାର୍ଲାଣ୍ଡ ଦର୍ଶନ କଥା ନିୟୁର୍କସ୍ଥ ଆଟଲାଣ୍ଟିକ୍ ସାଗରଗର୍ଭରେ ଛୋଟବଡ଼ ସହସ୍ର ଦ୍ୱୀପ, କେଉଁଠି ଦୁଇ ତିନିଟି ତ କେଉଁଠି ଅଧିକ ଘର, ଦୂରଦୂରାନ୍ତ ଭୂଖଣ୍ଡରୁ ଆସିଥିବା ଦୁଃସାହାସୀ ଆବିଷ୍କାରକ କିମ୍ବା ବିସ୍ମୟ ଆନନ୍ଦ ଅନ୍ୱେଷଣକାରୀଙ୍କ ନୂଆ ନିର୍ଜନ ଜଳବେଷ୍ଟିତ ଦ୍ୱୀପରେ କେତୋଟି ଦିନଯାପନ କରିବାର ପ୍ରୟାସର ଫଳ-ସୁନ୍ଦର ଗୃହ ବାଗବଗିଚା ନିୟୁଅର୍କ, ଓ୍ୟାସିଂଟନ୍‌ର ଧନୀ ଅଧିବାସୀଙ୍କ ଅବସର ବିନୋଦନ, ରୋମାଞ୍ଚକାରୀ ପ୍ରଣୟରେ ରଂଜିତ ଛୋଟ ଦ୍ୱୀପ।

ସିନ ନଦୀରେ ଅଳ୍ପକେତୋଟି ଦ୍ୱୀପ, ଜଳର ସାମୟିକ ତାଣ୍ଡବ ନୃତ୍ୟ ବା ଘୂର୍ଣିବାତ୍ୟାରୁ ରକ୍ଷା ପାଇବା ପାଇଁ ଦ୍ୱୀପ ଚାରିପାଶେ ପଥର ବନ୍ଧ। ଦ୍ୱୀପ ଉପରେ ଛୋଟ ବସତି, ମୂଳ ଭୂଖଣ୍ଡର ପ୍ରାସାଦ ତୁଲ୍ୟ, ଦୋକାନ ବଜାର, ଦ୍ୱୀପକୁ ମୂଳ ଭୂଖଣ୍ଡକୁ ସଂଯୋଗ କରାଯାଇଛି।

ଶକ୍ତ କଂକ୍ରିଟ୍ ପୋଲ ଦ୍ୱାରା ସିନ ନଦୀର କୂଳକୁ ମଧ ପଥରବନ୍ଧରେ ସୁରକ୍ଷିତ କରାଯାଇଛି। ନଦୀର କୂଳେ କୂଳେ ଧାଡ଼ି ଧାଡ଼ି ଦୀର୍ଘ ସବୁଜ ପତ୍ରଧାରୀ ବୃକ୍ଷ। ସବୁଠି ଶୃଙ୍ଖଳା, ସବୁଠି ସୌନ୍ଦର୍ଯ୍ୟ ପିପାସା। ଜାହାଜର ଯାତ୍ରୀଙ୍କୁ ଦ୍ୱୀପର ଓ ଦ୍ୱୀପ ଉପରର ଆକର୍ଷଣୀୟ ପ୍ରାସାଦର ବୃତ୍ତାନ୍ତ ଜଣାଇବାକୁ ଦୁଇଜଣ ସୁନ୍ଦରୀ ଘୋଷିକାଙ୍କ ମୁଖଭଂଗୀ ଓ ଅଧର କଂପନ ଆପ୍ୟାୟିତ କରୁଥାଏ ଯାତ୍ରୀମାନଙ୍କୁ।

ପ୍ରାୟ ଘଣ୍ଟେ କାଳ ଭାସିଚାଲିଲା ଜାହାଜଟି ଉତ୍ତରରୁ ଦକ୍ଷିଣକୁ, ଦକ୍ଷିଣରୁ ଉତ୍ତରକୁ। ମନେପଡ଼ିଯାଉଥାଏ, ଚିଲିକାରେ ନୌଯାତ୍ରା କବିତାରେ ରାଧାନାଥ ରାୟଙ୍କ ମଧୁର ଲଳିତା କାବ୍ୟଛନ୍ଦ:-

"ଉତ୍କଳ - କମଳା -ବିଳାସ - ଦୀର୍ଘିକା
ମରାଳ ମାଳିନୀ ନୀଳାମ୍ବୁ ଚିଲିକା।"

ଏବଂ

ଗୋଦାବରୀଶ ମିଶ୍ରଙ୍କ - କାଳିଜାଇ କବିତାର କରୁଣ କାହାଣୀ -
"ଧୀରେ ଧୀରେ ନାଆ ବାଆରେ ନାଉରୀ ଝିଅକୁ ମାଡୁଛି ଡର,
ଗଡ଼େ ଗଡ଼ଲୋକ ଚହିଁ ବସିଥିବେ ଝିଅ ଯିବ ଶାଶୂଘର।"

ଏଠି ଡରିବାର କିଛି ନାହିଁ, ପବନ କି ଉତ୍ତାଳ ଢେଉରେ ଜାହାଜ ଦୋହଲିବାର ପ୍ରଶ୍ନ ନାହିଁ। ଆହୁରି ମନେ ପଡ଼ିଯାଉଥାଏ ଦେଶପ୍ରାଣ ଗୋପବନ୍ଧୁଙ୍କ ବଂଦୀର ଆତ୍ମକଥା, ରେଳ ଉପରୁ ଚିଲିକା ଦର୍ଶନର ବିମୁଗ୍ଧ ଭାବନା।

ଆକୁଳ ଆବେଗ:

"ରହ ରହ କ୍ଷଣେ ବାଷ୍ପୀୟ ଶକଟ
ଦେଖିବି ଚିଲିକାର ଚିତ୍ରପଟ।"

ମୁଁ ବଂଦୀ ନୁହେଁ କି ଦେଶପ୍ରେମରେ ପାଗଳ ନୁହେଁ। ଦେଶ ମାଟିକୁ ଛାଡ଼ି ଦୂରକୁ ଯିବାର ଦୁଃଖ ମିଶା ଆବେଗ ନାହିଁ, ତେବେ ପ୍ରକୃତିର ଓ ମଣିଷ ସୃଷ୍ଟ କଳା -ସ୍ଥାପତ୍ୟରେ ମୁଗ୍ଧ ପ୍ରାଣ ମୋର ଉଲ୍ଲସି ଉଠିଲା ପ୍ରେମିକ କବି ମାୟାଧର ମାନସିଂହଙ୍କ 'ମହାନଦୀରେ ଜ୍ୟୋତ୍ସ୍ନା ବିହାର'ର ମଧୁର କାବ୍ୟ ପଂକ୍ତି ସ୍ମରଣ କରି। ସିନ୍ ନଦୀ ଜଳରେ ନାଚୁ ନଥିଲା ଜ୍ୟୋତ୍ସ୍ନା କିରଣ, ପାଖରେ ନଥିଲା ପ୍ରେମିକା, ରାତ୍ରିର ବିଜନ ମାଧୁରୀ, ଗଭୀର ଅନୁଚିନ୍ତା ନଥିଲା, ତେବେ ଦୂର ଦେଶରେ ଦିବାଲୋକର କୋମଳ ତାପରେ ସଫେଦ ଆକାଶର ଦିଗହୀନତାର ଭାବ ଉଦ୍ଦୀପକ ସ୍ପର୍ଶରେ ମଣିଷର ଜନ୍ମ ମୃତ୍ୟୁ ଜୀବନ ଛନ୍ଦ ଚିନ୍ତାରେ ବିଭୋର ହୋଇ ଗାଇଥିଲି,

'ମରିତେ ଚଇନା ଆମି ସୁନ୍ଦର ଭୁବନେ।'
'ମାନବେର ମାଝେ ଆମି ବଂଚିବାର ଚଇ।'

## ମଣ୍ଟମାରତ୍ରେ ଓ ପିଗାଲି

ସିନ୍ ନଦୀରେ ଜାହାଜ ଯାତ୍ରା ଶେଷ କରି ଆମେ ଫେରିଲୁ ମଣ୍ଟମାରତ୍ରେ ଓ ପିଗାଲି (Montmartre and Pigalle) ଦର୍ଶନ କରି। ମଣ୍ଟମଟ୍ରେର ଇତିହାସ ବର୍ଣ୍ଣିଳ ଉନବିଂଶ ଓ ବିଂଶ ଶତାବ୍ଦୀରେ ଏହା ବିଶ୍ୱର ପ୍ରସିଦ୍ଧ ଲେଖକ ଓ କଳାକାରଙ୍କୁ ଆକୃଷ୍ଟ କରିଥିଲା। ପିକାଶୋ ଗୋଟି ଷ୍ଟୁଡ଼ିଓରେ ୧୯୦୮ରୁ ୧୯୧୨ ପର୍ଯ୍ୟନ୍ତ ବାସ କରିଥିଲେ। ତାର ନା Bateau Lavoir ମଣ୍ଟମାରତ୍ରେର ଦକ୍ଷିଣ ପଶ୍ଚିମକୁ ମନମୋହିନୀ ଲାଲ୍‌ବତୀ ଜିଲ୍ଲା Red Light district ପିଗାଲ, ଏଠାରେ ଅନେକ କ୍ଲବ୍ କାବାରେଟ୍ ଉତ୍ତାଳ ପ୍ରେମର ମଦିର ଜୀବନଯାପନର ସୁଯୋଗ ଦେଇଥାଏ।

କଥିତ ଅଛି ମଣ୍ଟମର୍ତ୍ରେ ନାମକ ଜଣେ ପ୍ରସିଦ୍ଧ ସନ୍ଥ ଏହି ପାହାଡ଼ ଉପରେ ବାସ କରୁଥିଲେ। ବିରୋଧୀ ସଂପ୍ରଦାୟୀ ଦୁର୍ବୃତ୍ତ ତାଙ୍କର ମସ୍ତକ ଛେଦନ କଲାପରେ ଛେଦିତ ମସ୍ତକକୁ ନିଜ ହାତରେ ଧରି ଦୌଡ଼ି ଦୌଡ଼ି ଆସି ଏହି ପାହାଡ଼ସ୍ଥ ଆଶ୍ରମରେ ସେ ଶେଷନିଃଶ୍ୱାସ ତ୍ୟାଗ କରିଥିଲେ। ସମତଳ ଭୂମିରୁ ପାହାଡ଼ର ଶୀର୍ଷଦେଶକୁ ଯିବା ପାଇଁ ଅନେକ ପାହାଚ ଅଛି, କେବଲ୍ କାର ମଧ ଅଛି। ଆମେ କେବଲ କାରରେ ୫ ମିନିଟ୍‌ରେ ସେଣ୍ଟଙ୍କ ପୂଜାସ୍ଥାନରେ ପହଞ୍ଚିଲୁ। ପାହାଡ଼ ଉପରେ ଛୋଟ ବଜାର ଅନେକଗୁଡ଼ିଏ ଘର, ଦୋକାନ ଓ ହୋଟେଲର ଜିନିଷପତ୍ରର ଦରମାମ ଅସମାନ୍, ଏଠାରେ ଚିତ୍ରକର ମାନେ ଯାତ୍ରୀଙ୍କ ଫଟୋଚିତ୍ର ସଂଗେ ସଂଗେ କରି ଦେଇ ଅର୍ଥଉପାର୍ଜନ କରନ୍ତି। ନାନାପ୍ରକାର ସୁନ୍ଦର କଳାର ଚିତ୍ର ମଧ କିଣିବାକୁ ମିଳେ। ଏଗୁଡ଼ିକ ଆମ ଭଳି ସାଧାରଣ ପରିବ୍ରାଜକଙ୍କ କ୍ରୟ ସାମର୍ଥ୍ୟର ବାହାରେ। ସାମାନ୍ୟ ମଧ୍ୟାହ୍ନଭୋଜନ କରି, ମଧୁର କଫି ପାନ କରି ନିର୍ଦ୍ଦିଷ୍ଟ ସମୟରେ ଟୁରିଷ୍ଟ ବସ୍‌କୁ ଫେରି ଆସିଲୁଁ। ଫ୍ରାନ୍‌ସର ବିସ୍ତୀର୍ଣ୍ଣ କ୍ଷେତ, ସବୁଜ ଶ୍ୟାମଳ ଈଷତ ଲାଲ୍ ଗଛଗୁଡ଼ିକ ସୁବିନ୍ୟସ୍ତ ଚଷ ଜମିରେ ଦେଖିଦେଖି ଆସୁଥିଲୁଁ। ୩/୪କିଲୋ ମିଟିର ଦୂରରେ ଚଷ ଜମି ଭିତରେ କେତୋଟି ଘର - ଛୋଟ ଗ୍ରାମର ସଂକେତ ଦେଉଥାଏ। ଦୂରରୁ ଦେଖା ଯାଉଥାଏ ଖପରଲି ଛାତ। ସମ୍ବଲପୁର ବଲାଙ୍ଗିରର ଘର ପରି। ସବୁଜ ଘାସ ପଡ଼ିଆରେ ପଲ ପଲ ଗାଈ। କେଉଁଠି କିମିତି ଦୁଗ୍ଧ ସଂଗ୍ରହର ଛୋଟ ମେସିନ ଗୃହ। ଭାରତୀୟଙ୍କ ଦୃଷ୍ଟିରେ ଏଠାରେ ପୁଞ୍ଜିବାଦୀ ଚଷୀ, ବଡ଼ ଚଷୀ ପୂର୍ବର ଜମିଦାର, ଫ୍ରାନ୍ସ ସୀମା ଅତିକ୍ରମ କରି ବେଲଜିୟମ ଭୂଖଣ୍ଡ ଦେଇ ଆମ ବସ୍‌ଟି ଛୁଟିଥିଲା ହଲାଣ୍ଡକୁ ୪/୫ ଘଣ୍ଟାର ବସ୍ ଯାତ୍ର କ୍ଳାନ୍ତିକର ହୋଇନଥିଲା। ଫ୍ରାନ୍ସ ସୀମାନ୍ତ ଓ ବେଲଜିୟମ୍ ସୀମାନ୍ତ ଦୁଇ ଜାଗାରେ ଯାତ୍ରୀମାନଙ୍କୁ ଛ'ପାନ କରିବାକୁ ଅଧଘଣ୍ଟେ ଲେଖା ସମୟ ଦିଆଯାଇଥିଲା। କ୍ଳାନ୍ତିହୀନଯାତ୍ରାର ମନମୋହିନୀ ଦୃଶ୍ୟ, ଭିନ୍ନ ସଂସ୍କୃତି ଓ ପରିବେଶର ଚମତ୍କାରିତା, ଇୟୁରୋପୀୟ ଦେଶମାନଙ୍କ ଭିତରେ ଆର୍ଥିକ ଦୃଷ୍ଟିରୁ ସ୍ୱଚ୍ଛ ପାର୍ଥକ୍ୟ, ବିକାଶଶୀଳ ଦେଶ ସହ ତୁଳନା ମୋ ସମାଜବିଜ୍ଞାନୀ ମନରେ ନାନାପ୍ରଶ୍ନ ନାନା ଦ୍ୱନ୍ଦ୍ୱ ଆଣୁଥିଲେ ହେଁ ଜୀବନର ସ୍ୱାଦ ଯେ ବିଭିନ୍ନତାରେ (Variety is the spice of life) ସୀମାହୀନ ଯାତ୍ରାରେ ଯେ ମାଦକତା ଥାଏ, ଏହା ମୁଁ ମର୍ମେ ମର୍ମେ ଅନୁଭବ କରି ଆନନ୍ଦବିଭୋର ହୋଇଥିଲି।

## ବର୍ଲିନ ଯାତ୍ରା

'When history sleeps, it sleeps in dreams
When it wakes up,it appears in action.

ଅତି ପ୍ରାସଙ୍ଗିକ ଏ ଉକ୍ତି ଜର୍ମାନୀ ସଂପର୍କରେ। ଇୟୁରୋପୀୟ ବର୍ଣ୍ଣାଢ଼୍ୟ ଉଦ୍ଦୀପନାମୟ ଇତିହାସରେ ଜର୍ମାନୀର ଭୂମିକା ଯେତିକି ପ୍ରଶଂସନୀୟ ସେତିକି ନିନ୍ଦନୀୟ। ଏକ ଦୁର୍ଦ୍ଧର୍ଷ

କ୍ଷମତା ଲିପ୍ସୁ ବୈଜ୍ଞାନିକ ଅନୁସନ୍ଧିତ୍ସୁ ଅଭିନବ ନିର୍ମାଣକାରୀ ଜାତି ଭାବେ ଅଦମନୀୟ ଇଚ୍ଛାର ଖରସ୍ରୋତ ରୂପେ ସମଗ୍ର ବିଶ୍ୱରେ ଅପ୍ରତିଦ୍ୱନ୍ଦ୍ୱୀ ଜର୍ମାନ ଜାତି, ବିଂଶ ଶତାବ୍ଦୀର ଇତିହାସକୁ ଦେଇଛି ନୂଆ ରୂପ, କରିଛି ଟଳଚଞ୍ଚଳ। କେଟ୍‌ଲବି ହାଜେନଙ୍କ ମର୍ମସ୍ପର୍ଶୀ ଇତିହାସ ପଢିବାର ରୋମାଞ୍ଚକର ଅନୁଭୂତି ଆତ୍ମପ୍ରକାଶ କରେ, ଜର୍ମାନୀ, ଫ୍ରେଡ଼ରିକ ଦି ଗ୍ରେଟ୍ ଆଡ଼ୋଲଫ୍ ହିଟଲରଙ୍କ ଜୀବନୀ ସଂସ୍ପର୍ଶରେ ଆସିଲେ। ସେହି ଜର୍ମାନୀର କଳ୍ପନାତୀତ ବର୍ଲିନ କୀର୍ତ୍ତୀମାନ ଦେଖିଯିବା କଥା ଭାବିଲାବେଳେ ଦେହ ମୋର ଶିହରି ଉଠିଥିଲା, ଆଧୁନିକ ବିଳାସବ୍ୟସନମୟ ଜୀବନର ଜନ୍ମଦାତ୍ରୀ ପ୍ୟାରିସ ହୋଇଥିବା ସ୍ଥଳେ, ବର୍ଲିନ ବୈପ୍ଳବିକ ଚିନ୍ତା, ମାର୍କ୍ସବାଦ, ନାଜିବାଦର ଜନ୍ମଭୂମି ବୀରତ୍ୱର ପ୍ରାଣକେନ୍ଦ୍ର ରୂପେ ଚିରବନ୍ଦନୀୟ। କାହିଁ ଭୁବନେଶ୍ୱର, କାହିଁ ବର୍ଲିନ। ସୁଦୂର ଅତୀତର ସାମରିକ ଶକ୍ତି, ବୀରତ୍ୱର ଗାଥାରେ ବେଳେ ବେଳେ ଉଲ୍ଲସିତ ହେଉଥିବା ଓଡ଼ିଆ ପ୍ରାଣ ମଧ୍ୟ ଯୁଗ ଓ ଆଧୁନିକ ଯୁଗର ଅତୁଳନୀୟ ସାହସ, ଶକ୍ତି ଓ ବୀରତ୍ୱର ଉଦ୍ଦୀପ୍ତ ସ୍ମୃତି ଦର୍ଶନରେ କେତେଯେ ଆଲୋଡ଼ିତ ହେବ ତା ଅନୁମାନ କରିବା ଦୁଷ୍କର ଥିଲା। ଜୀବନରେ ଓ ପ୍ରେମ ପ୍ରଣୟବିରହ ମଣିଷର ସୂକ୍ଷ୍ମ କୋମଳ ଅନୁଭୂତିର ପ୍ରସ୍ଫୁଟନ ହୋଇଥିଲା ବେଳେ, ଜ୍ଞାନବିଜ୍ଞାନର ଅନ୍ୱେଷା ପ୍ରକୃତି ଓ ମାନବ ସମାଜକୁ ପରାଜୟ ଓ ପରିବର୍ତ୍ତନ କରିବାର ଦୁର୍ବାର ପିପାସା ଓ ସାମର୍ଥ୍ୟ, ପୌରୁଷର ପରାକାଷ୍ଠର ସୂଚନା ଦିଏ। ତାର ଆକର୍ଷଣ ପ୍ରାଣ ପ୍ରାଚୁର୍ଯ୍ୟପୂର୍ଣ୍ଣ ମଣିଷ ଏଡ଼ାଇ ଦେଇ ପାରେ କି ?

ଇତିହାସ ପାଠ ମୋ ଜୀବନରେ ଲଗାଇଛି କାଳିମାର ଦାଗ, ସଠିକ ଅବଗତି କି ସଠିକ ପରିପ୍ରକାଶର ଅଭାବ ଜୀବନ ଯୁଦ୍ଧରେ ପରାଜୟର ଗ୍ଲାନି ଦେଇଥିଲା ମୋତେ। ତଥାପି ସମୟ ଓ ଜଗତର ପରିବର୍ତ୍ତନ ଦେଶବିଦେଶର ଭିନ୍ନ ରୂପ ଅବଲୋକନ କରିବାର ମୋହ କିଏ ବା ଛାଡ଼ିପାରେ ? ମନେ ପଡ଼ିଯାଏ କବିଙ୍କ ଅନବଦ୍ୟ କାବ୍ୟ ପଂକ୍ତି:-

'Time changes, the world turns

But one thing remains constant, the conflict between good and bad.'

ସମୟ ବଦଳୁଛି, ପୃଥିବୀ ଘୁରୁଛି, ଚିରସ୍ଥିର ରହିଛି, ଭଲମନ୍ଦ ଭିତରେ ଦ୍ୱନ୍ଦ୍ୱ। ସେହି ଦ୍ୱନ୍ଦ୍ୱର ଜୀବନ୍ତ ସାକ୍ଷୀତ୍ ବର୍ଲିନ୍ ବୀରମାଟି ଜର୍ମାନୀର ରାଜଧାନୀ ଜ୍ଞାନବିଜ୍ଞାନ ଶାସନ ସଂସ୍କୃତିର ପ୍ରାଣକେନ୍ଦ୍ର।

୩୫୬,୮୬୬ ବର୍ଗକିଲୋମିଟର କ୍ଷେତ୍ର ଆଠକୋଟି ୩୧ ଲକ୍ଷ ଜନସଂଖ୍ୟା ବିଶିଷ୍ଟ ଜର୍ମାନୀ ଭଲମନ୍ଦର ସ୍ରଷ୍ଟା, ବିଶ୍ୱଯୁଦ୍ଧର ଦୁଃସହ ଅତ୍ୟାଚାର, ଇଉରୋପର ମିଳନ ଓ ଅତୀତ ଅପରାଧର ନିରାକରଣ ଜର୍ମାନୀକୁ ବିଶ୍ୱରେ ଦେଇଛି ଅପରିତ୍ୟଜ୍ୟ ସ୍ଥାନ। ସଂପ୍ରତି ଜର୍ମାନ ଜାତି ଅତୀତକୁ ପଛରେ ପକାଇ ଆଗକୁ ମାଡ଼ିଚାଲିଛି। ତେବେ ଏହାର ଅସଂଖ୍ୟ

ଅଟ୍ଟାଳିକା କେଥେଡ୍ରାଲ, ମଦ୍ୟ ପାନପ୍ରଥା, ଉତ୍କୃଷ୍ଟ ପରିବହନ ବ୍ୟବସ୍ଥା, ସଂଗୀତ ଉଗାଳ ବିଳାସପୂର୍ଣ ରାତ୍ରି ପରିବ୍ରାଜକ ମାନଙ୍କୁ ଆକର୍ଷି ଆଣୁଛି।

ସ୍ୱାଧୀନ ଛୋଟ ଛୋଟ ରାଜ୍ୟର ସମ୍ମିଶ୍ରଣରେ ଗଢ଼ା ଯାଇଛି ବର୍ତ୍ତମାନର ଜର୍ମାନୀ, ଯାହା ପ୍ରଥମେ ରୋମ ସାମ୍ରାଜ୍ୟ ପରେ ଧର୍ମୀୟ ରୋମାନ ସାମ୍ରାଜ୍ୟ Holy Roman Empire ଓ ଶେଷରେ ଅଷ୍ଟ୍ରିୟାନ ହାମ୍‌ସବର୍ଗ ସାମ୍ରାଜ୍ୟ ଅଧୀନରେ ଥିଲା। ଏକତ୍ରିତ ଥାଇ ମଧ ଦୃଢ଼ ଆଞ୍ଚଳିକ ଭାବ ବଜାୟ ରହିଛି। ୧୫୧୭ରେ ମାର୍ଟିନ ଲୁଥରଙ୍କ ପ୍ରୋଟେଷ୍ଟ ସଂସ୍କାର କେଥୋଲିକ୍‌ଚର୍ଚ୍ଚ ସହିତ ୩୦ ବର୍ଷ ବ୍ୟାପୀ ଯୁଦ୍ଧର ସୂତ୍ରପାତ କରିଥିଲା। ନେପୋଲିଅନଙ୍କ ଯୁଦ୍ଧ ପରେ ପ୍ରୁସିଆନ ସାମ୍ରାଜ୍ୟର ଉତ୍ଥାନ ଓ ଶିଳ୍ପାୟନ ସଂଘଟିତ ହେଲା। ୧୮୬୬ ରେ ବିଶ୍ୱବିଖ୍ୟାତ ପ୍ରୁସିଆନ୍ Iron Chancdl Ottoven Bismark ଛୋଟ ରାଜ୍ୟଗୁଡ଼ିକୁ ଏକତ୍ରିତ କରିଥିଲେ ବଳ ପ୍ରୟୋଗ ପୂର୍ବକ ଏବଂ ୧୮୭୧ରେ କାଇଜର ଉଇଲହାମଙ୍କ ଅଧୀନରେ ଐକ୍ୟବଦ୍ଧ ବିଶାଳ ଜର୍ମାନୀ ଜନ୍ମ ଲାଭ କଲା। ଜର୍ମାନୀର ଦ୍ରୁତ ସମୃଦ୍ଧି ଇଂଲାଣ୍ଡ ଫ୍ରାନ୍ସ ଓ ରୁଷିଆ ମଧରେ ଦ୍ୱନ୍ଦ୍ୱ ସୃଷ୍ଟି କରି ପ୍ରଥମ ବିଶ୍ୱଯୁଦ୍ଧ ସଂଘଟିତ କରିଥିଲା। ୧୯୧୮ର ପରାଜୟ ପରେ Weiner Republic ଗଢ଼ାଗଲା। ମାତ୍ର ଯୁଦ୍ଧର ପ୍ରଚୁର କ୍ଷତିପୂରଣ, ଦରବୃଦ୍ଧି, ଅର୍ଥନୈତିକ ମାନ୍ଦାବସ୍ଥା, ଏଡୋଲଫ୍ ହିଟଲାରଙ୍କ ନେତୃତ୍ୱରେ National Soialist (Nazeis) ପାର୍ଟି କ୍ଷମତା ହାସଲ୍ କଲା।

୧୯୩୩ରେ ହିଟ୍‌ଲର ପାର୍ଲାମେଣ୍ଟ ଭାଙ୍ଗି ଦେଇ ନିଜକୁ ଚ୍ୟାନସେଲର୍ ଘୋଷଣା କଲେ। ୧୯୩୯ରେ ପୋଲାଣ୍ଡ ଆକ୍ରମଣ କରିବାରୁ ଫ୍ରାନ୍ସ ଓ ଇଂଲାଣ୍ଡ ସହ ଶତ୍ରୁତା ବୃଦ୍ଧି ପାଇ ପରିଶେଷରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ସଂଘଟିତ ହେଲା। ୧୯୪୫ରେ ହିଟ୍‌ଲରଙ୍କ ଆତ୍ମହତ୍ୟା ପରେ ଜର୍ମାନୀ ଆତ୍ମସମର୍ପଣ କଲା, ଯୁକ୍ତରାଷ୍ଟ୍ର ଆମେରିକା, ଫ୍ରାନ୍ସ, ଇଂଲାଣ୍ଡ ସୋଭିଏଟ୍ ୟୁନିୟନ ଜର୍ମାନୀକୁ ୪ ଭାଗରେ ବିଭକ୍ତ କରି ନିଜ ନିଜ ଅଧିକାରରେ ରଖିଲେ। ୧୯୪୯ରେ ତିନିଟି ଅଞ୍ଚଳ ମିଶି Federal Republic Germany ପଶ୍ଚିମାଞ୍ଚଳରେ ଗଢ଼ିଥିଲେ। ପୂର୍ବାଞ୍ଚଳରେ ଗଢ଼ା ହେଲା German Democractic Republic (GDR) ରାଜଧାନୀ। କୁଶଳୀ ଶ୍ରମିକଗଣ ପଶ୍ଚିମ ଜର୍ମାନୀକୁ ପଳାଇବାର ଆଶଙ୍କା କରି ତାକୁ ପ୍ରତିହତ କରିବାକୁ Berton walt ଗଢ଼ାହେଲା ୧୯୬୧ ରେ। ୧୯୮୯ର ଶାନ୍ତିପୂର୍ଣ୍ଣ ଆନ୍ଦୋଳନ ପୂର୍ବପଶ୍ଚିମ ବର୍ଲିନର ବିଭେଦକାରୀ ପ୍ରାଚୀରକୁ ଭାଙ୍ଗି ଦେଇଗଲା। ୧୯୯୦ରେ ପୂର୍ବ ଜର୍ମାନୀର ଲୋକେ ଦୁଇ ଜର୍ମାନୀର ମିଳନ ପାଇଁ ଭୋଟ ଦେଲେ। ଏହା ଫଳରେ ଅକ୍ଟୋବର ୩, ୧୯୯୦ରେ ଦୁଇ ଜର୍ମାନୀ ଏକତ୍ରିତ ହେଲା।

ଜର୍ମାନୀରେ ପ୍ରାୟ ୭୦ ଲକ୍ଷ ବିଦେଶୀ ବାସ କରନ୍ତି, ସଂଖ୍ୟାଲଘୁ ସଂପ୍ରଦାୟ ଭିତରେ ତୁର୍କୀ ସଂଖ୍ୟାଧିକ। ଜର୍ମାନମାନେ କଳାପ୍ରିୟ। Goethe, Jsbech K.F.

Schinkel, CD Tridrich, Ganiter Grass Arnold Schmsery walter Gropi ସେମାନଙ୍କର କଳାପ୍ରୀତିର ଉତ୍ସ। ପୁରାତନ କଳା, ସହ ଆଧୁନିକ କଳା, ପ୍ରତି ଆଗ୍ରହ ଜର୍ମାନ ସଂସ୍କୃତିର ହୃତପିଣ୍ଡ, ନୂଆ ସ୍ଥାପତ୍ୟ, ଚିତ୍ରକଳା ଏବଂ ବାମପନ୍ଥୀ ସାହିତ୍ୟ ରଚିଚାଲିଛି ସାଂସ୍କୃତିକ ଉତ୍ତେଜନା, ଲୋକପ୍ରିୟ ସଂଗୀତ, ନୂତନ ନାଟକ ସହ ଇଲେକ୍ଟ୍ରୋନିକ ନାଚଗାନ ଫ୍ରାନ୍କଫୋର୍ଟ ଓ ବର୍ଲିନରେ ଭରିଦିଏ ପ୍ରାଣସ୍ଫୁର୍ତ୍ତି ଉଦ୍ଦୀପନା।

ଜର୍ମାନୀର ଜଳବାୟୁ ପରିବର୍ତ୍ତନଶୀଳ। ମାର୍ଚ୍ଚଠାରୁ ମେ ଓ ସେପ୍ଟେମ୍ବର ଠୁଁ ଅକ୍ଟୋବର ଜଳବାୟୁ ଆମୋଦଦାୟକ। ଜର୍ମାନୀ ଲୋକେ ପରିବେଶ ସଚେତନ, ପ୍ରଦୂଷଣ ଦୂର କରିବାକୁ ଯତ୍ନଶୀଳ।

## ବର୍ଲିନ ଯାତ୍ରା ପଥେ

ଗୋଟିଏ ଦେଶରୁ ଅନ୍ୟ ଏକ ଦେଶକୁ ସ୍ଥଳପଥରେ ଯାତ୍ରା ବେଶ୍ ଆନନ୍ଦଦାୟକ, ମାତ୍ର ସମୟସାପେକ୍ଷ। ଜୁଲାଇ ୩୧ରେ ଟୁରିଷ୍ଟ ବସଯୋଗେ ହଲାଣ୍ଡର ଟିଲବର୍ଗ ସହରରୁ ଆମେ ଉରିଜଣ ଟ୍ରେନ୍ ଯୋଗେ ଯାତ୍ରା କଲୁ ବ୍ରେଡ଼ାକୁ ସକାଳ ୭ଟା ୧୫ ମିନିଟ୍‌ରେ ବ୍ରେଡ଼ାରୁ ଟୁରିଷ୍ଟ ବସ୍ ଧରି ଚାଲିଲୁ ବର୍ଲିନ ଅଭିମୁଖେ, ଟୁରିଷ୍ଟ ବସ୍‌ଟି ବ୍ରେଡ଼ା ବ୍ୟତୀତ ଅନ୍ୟ ସହଯାତ୍ରୀମାନଙ୍କୁ ମଧ୍ୟ ନେଇଥିଲା, ହଲାଣ୍ଡର ସୀମା ଅତିକ୍ରମ କରିବାକୁ ଆମକୁ ପ୍ରାୟ ୩ ଘଣ୍ଟା ଲାଗିଲା। ଜର୍ମାନୀ ଭୂଖଣ୍ଡରେ ବିଭିନ୍ନ ତିନିଟି ସ୍ଥାନରେ ବିଶ୍ରାମ ଓ ଜଳପାନ କରି ବର୍ଲିନ ସହର ତଳିରେ ପହଞ୍ଚିଲୁ ସଂଧ୍ୟା ୭ଟାରେ, ବର୍ଲିନ ସହରର କେନ୍ଦ୍ରସ୍ଥଳୀ ଅତିକ୍ରମ କରି ଅନ୍ୟ ଏକ ସୀମାନ୍ତରେ ପହଞ୍ଚିବା ବେଳକୁ ରାତି ୧୦ଟା। ଏକ ସୁରମ୍ୟ ହୋଟେଲରେ ଆମର ତିନି ରାତି ରହିବାର ବ୍ୟବସ୍ଥା ହୋଇଥାଏ। ଭ୍ରମଣକାରୀଙ୍କ ମଧ୍ୟରେ ଥାଆନ୍ତି ଚୀନ ଦଂପତି, ଇଣ୍ଡୋନେସିଆ ଦଂପତି, ସୁରିନାମ ବାସୀ, କେତେକ ଛୋଟ ପିଲା। ସମସ୍ତେ ହଲାଣ୍ଡର ଚିତ୍ତବିନୋଦନ ପାଇଁ ଯାଉଛନ୍ତି ବର୍ଲିନ।

ବିଶ୍ୱଯୁଦ୍ଧର ବିଭୀଷିକା, ହିଟଲରଙ୍କ ବିଶ୍ୱଜୟ ଲିପ୍ସା, କାର୍ଲମାର୍କ୍ସଙ୍କ ଯୁଗାନ୍ତକାରୀ ବୈପ୍ଳବିକ ଚିନ୍ତା, ଆଇନ୍‌ଷ୍ଟାଇନ୍‌ଙ୍କ ବୈଜ୍ଞାନିକ ଉଦ୍‌ଭାବନର ଅବିସ୍ମରଣୀୟ ପ୍ରଭାବ ମୋ ମନକୁ ଆନ୍ଦୋଳିତ କରୁଥାଏ। ପ୍ରକୃତି କିନ୍ତୁ ଥିଲା ଶାନ୍ତ ସୁନ୍ଦର କୋମଳ ଶୀତଳ। ମାଇଲ୍ ମାଇଲ୍ ଧରି ସବୁଜ କ୍ଷେତ୍ରରେ ପାଚିଲାଧାନର ଧବଳ ଧୂସର ବିସ୍ତରଣ, ପୁଞ୍ଜିବାଦୀ କୃଷିର ଚମତ୍କାର ଶୋଭା, ରାସ୍ତା ଦୁଇପାର୍ଶ୍ୱର ସୁଉଚ୍ଚ ବୃକ୍ଷରାଜି, ସହରରେ କ୍ଷୁଦ୍ର ବିରାଟ ପ୍ରାସାଦ, ପବନରୁ ଶକ୍ତି ସୃଷ୍ଟି କରୁଥିବା ଉଇଣ୍ଡମିଲ୍‌ସ ବିସ୍ମୟ ଆନନ୍ଦ ସୃଷ୍ଟି କରୁଥାଏ। ହଲାଣ୍ଡରୁ ପାରିସ ଯାତ୍ରା ବେଳେ ଯେମିତି ରମଣୀୟ ଦୃଶ୍ୟରାଜି, ବର୍ଲିନ ଯାତ୍ରା ପଥେ

ସେହିଭଳି ମନମୁଗ୍ଧକାରୀ ଦୃଶ୍ୟ- ହଲାଣ୍ଡର ସମତଳ ନିମ୍ନଭୂମି। ହ୍ରଦର ଭଙ୍ଗିଳ ଗତି ଜର୍ମାନୀ ଭୂଖଣ୍ଡରେ ବିରଳ, ମାତ୍ର ଏହାର ଛୋଟ ଛୋଟ ପାହାଡ଼ିଆ ଭୂମିଖଣ୍ଡ ଶ୍ୟାମଳ ଶସ୍ୟ ମଣ୍ଡିତ ହୋଇ ପ୍ରକାଶ କରୁଥାଏ ଅନ୍ୟ ଏକପ୍ରକାର ଶୋଭା। "ସୁନ୍ଦରେ ତୃପ୍ତିରେ ଅବସାଦ ନାହିଁ, ଯେତେ ଦେଖୁଥିଲେ ନୂଆ ଦିଶୁଥାଇ।" ଆଖିକ୍ଳାନ୍ତ ହେଉ ନଥାଏ, ବୟସର ସ୍ୱାଭାବିକ ପ୍ରତିକ୍ରିୟାରେ ବେଳେବେଳେ କମର ବିନ୍ଧୁଥାଏ।


ବର୍ଲିନ ସହରର ବ୍ରାଣ୍ଡେନ୍ ବାର୍ଗଗେଟ୍

ରାସ୍ତା ମଝିରେ ବିଶ୍ରାମ ଓ ଜଳପାନ ଆଣି ଦେଉଥାଏ କଷ୍ଟ ସହିବାର ଶକ୍ତି। କ୍ରାନ୍ତିକାରୀ ସହରର ଅବର୍ଣ୍ଣନନୀୟ କାନ୍ତି ଆଣୁଥାଏ ଉଦାମ ଭାବନା। ମନେ ପଡ଼ିଯାଉଥାଏ ଦୁଇ ମହାନ ବୀରଙ୍କ ଦୁର୍ଦ୍ଦମ ବାସନା, ଅଭୂତପୂର୍ବ ସାହାସ ଓ ଅପରାଜେୟ ଜାତୀୟତା, ଆଡ଼ୋଲଫ ହିଟଲରଙ୍କ ବିଶ୍ୱବିଜୟ ଜର୍ମାନୀ ଜାତିର ଶ୍ରେଷ୍ଠତ୍ୱ ପ୍ରତିପାଦନର ଉତ୍କଣ୍ଠା ଏବଂ ଜୋସେଫ୍ ଷ୍ଟାଲିନଙ୍କ ପୁଞ୍ଜିବାଦର ମୂଳୋତ୍ପାଟନର ଅଂଗୀକାରବଦ୍ଧତା। ବର୍ଲିନ ସହର ମୂକସାକ୍ଷୀ ହୋଇରହିଛି, ଦୁହିଁଙ୍କର ଦୁର୍ଦ୍ଧର୍ଷ ବ୍ୟକ୍ତିତ୍ୱ ସଂଘର୍ଷର ଓ ଅଦମ୍ୟ ଜିଗୀଷାର।

କାହିଁ କେତେ ବର୍ଷ ତଳେ ସାମୁଏଲ ଜନସନ କହିଥିଲେ, "ଯିଏ ଲଣ୍ଡନରେ କ୍ଳାନ୍ତି ଅନୁଭବ କରେ, ତାକୁ ଜୀବନ କ୍ଳାନ୍ତିକର ମନେ ହୁଏ।" ଏହି ମନ୍ତବ୍ୟ ଏକ ବିଂଶ ଶତାବ୍ଦୀରେ ବର୍ଲିନ ପ୍ରତି ପ୍ରଯୁଜ୍ୟ। ବର୍ଲିନରେ କ୍ଳାନ୍ତି ନାହିଁ, ଶ୍ରାନ୍ତି ନାହିଁ, ଜୀବନ ଆନନ୍ଦମୟ ସ୍ଫୁର୍ତ୍ତିମାନ। ଦୁଇଦଶନ୍ଧି ତଳେ ପୂର୍ବ ପଶ୍ଚିମ, ବର୍ଲିନରେ ବିଭକ୍ତ ସହର ଆଜି ମୁକ୍ତ ଏକତ୍ରିତ, ଏହାର ଆକାଶକୁ ସ୍ପର୍ଶ କରୁଛି ବିଶ୍ୱର ପ୍ରସିଦ୍ଧ ସ୍ଥପତି ନର୍ମାନ ଫଷ୍ଟରଙ୍କ Reichstag dowv, Daniel lebes Kinds ଙ୍କ ଇହୁଦୀ ମିଉଜିୟମ୍ ଏବଂ ପେଟେଆଇଜେନମ୍ୟାନ୍‌ଙ୍କ ହଲୋକଷ୍ଟ ମେମୋରିଏଲ୍। ଏହାର ବିଭିନ୍ନତା, ସହନଶୀଳତା ବିକଳ୍ପ ସଂସ୍କୃତି, ରାତି ଜାଗରଣ (ପେଚକର) ସହ୍ୟଶକ୍ତି ଓ ସାମର୍ଥ୍ୟ ଅନ୍ୟକୁ ବିସ୍ମିତ କରେ, ସବୁଠୁଁ ଆଶ୍ଚର୍ଯ୍ୟ ରାଜଧାନୀ ଉଦ୍‌ଭାବନର କ୍ରମନୂତନତା, ଶକ୍ତିଶାଳୀ ଇତିହାସର ବଂଧନରୁ ମୁକ୍ତି । ଏବେ ବି ହିଟଲରଙ୍କ ବଙ୍କର ତଳରୋଡ଼ରେ ଗଲେ ପୋଟସଡ଼ାମ୍‌ର ଜାଜ୍ୱଲ୍ୟମାନ ଦିଶେ, ସହସ୍ର ପୁସ୍ତକ ଅଗ୍ନିରେ ହିଟଲର ଦାହ କରିଥିବା ସ୍ଥାନ ସାମ୍ନେ

ଉପନ୍ୟାସର ଦୋକାନ ଶୋଭାପାଏ। ବର୍ଲିନ ଓ୍ୱାଲାର ମୁଣ୍ଡଟେକେ। ଛାତ୍ରମାନେ ମିଶନ୍ତି ତୁଷାୟ ଅଧିବାସୀଙ୍କ ସହ, ସୁନ୍ଦର ନବୀନ ଭୂଷାରେ ମଣ୍ଡିତ GDR ମନୁମେଣ୍ଟକୁ ଘେରି ନୈଶ୍ୟଜୀବନ ପଶ୍ଚିମର ଆମେରିକା ଅଧୁଷିତ ସ୍ଥାନରୁ ପୂର୍ବ ଦିଗକୁ ସ୍ଥାନାନ୍ତରିତ। ଇତିହାସର ଉତ୍ଥାନ ପତନକୁ ଭୂକ୍ଷେପ ନ କରି ଜୀବନ ଏଠାରେ ଚିରସ୍ପନ୍ଦିତ।

ପୃଥିବୀରେ ବର୍ଲିନ ନାମକ ସ୍ଥାନ ଗୋଟିଏ ନୁହେଁ, ଏହି ନାମଧାରୀ ସ୍ଥାନ ୪୦ଟି ଅଛି, ମାତ୍ର ସ୍ପ୍ରିଓହାଭେଲ (Spree and Havel) ନଦୀ କୂଳରେ ଅବସ୍ଥିତ ବର୍ଲିନ ସହର ହେଉଛି ସବୁଠୁଁ ବୃହତ୍ତମ। ୧୨୩୭ ମସିହା ଇତିହାସରେ ଏହାର ଜନ୍ମବର୍ଷ ସ୍ଲାଭିକ ଶବ୍ଦ brlo or berlo ଯାହାର ଅର୍ଥ ସନ୍ତସନ୍ତିଆ, ତଳିଆ ଜାଗାରୁ ବର୍ଲିନ ଶବ୍ଦର ଉତ୍ପତ୍ତି।

ବର୍ଲିନ ସହର ତାର କୌଣସି ଶାସକ କି ସମ୍ରାଟକୁ ଦୀର୍ଘ କାଳ ରାଜତ୍ୱ କରିବାକୁ ନେଇନି, ଘନ ଘନ ପରିବର୍ତ୍ତିତ ଏ ସହରର ଭାଗ୍ୟ ଲୋକଙ୍କ ମନରେ ଭୟ ଓ ବିସ୍ମୟ ସଂଚର କରେ। Fluneur Franz Hessel ୧୯୨୦ ଦଶକରେ ଲେଖିଥିଲେ, "ବର୍ଲିନ ସର୍ବଦା ଗତି ପରିବର୍ତ୍ତନର ସୀମାରେ, କାଲିକୁ ଧରି ରହିବାକୁ ନାରାଜ" ସମ୍ରାଟ Sigsmund ଙ୍କ ଠାରୁ ୧୪୧୫ ମସିହାରେ ପାଇଥିବା କଲିନ-ବର୍ଲିନ ଭୂମି ଦି'ଖଣ୍ଡ, ପ୍ରୁସିଆନ୍ ସାମ୍ରାଜ୍ୟର ରାଜଧାନୀ ରୂପେ କାର୍ଯ୍ୟକରି ପ୍ରଥମ ବିଶ୍ୱଯୁଦ୍ଧର ଅବସାନ ପରେ ଜର୍ମାନ ରିପବ୍ଲିକ୍‌ର ରାଜଧାନୀ ରୂପେ ପରିଚିତ ହୋଇଆସିଛି।

୧୯୮୯ ମସିହା ନଭେମ୍ବର ୯ ତାରିଖରେ ବର୍ଲିନ ପ୍ରାଚୀରର ପତନ ପରେ ୧୯୬୦ର ଗ୍ରେଟର ବଲିନ ନବଜୀବନ ଲାଭ କରିଛି। ଗ୍ରେଟର ବର୍ଲିନ ସୃଷ୍ଟିରେ ଅନ୍ତର୍ଭୁକ୍ତ ଅଛି ୭ଟି ସିଟି ଜିଲ୍ଲା, ୫୦ଟି ଗ୍ରାମୀଣ ମ୍ୟୁନିସିପାଲିଟ୍ ଓ ୨୭ଟି ଇଷ୍ଟେଟ୍, ବର୍ଲିନର କେନ୍ଦ୍ରସ୍ଥଳ ପଶ୍ଚିମଭାଗରେ ଦଣ୍ଡାୟମାନ ମେମୋରିଆଲ୍ ଚର୍ଚ୍ଚ ଏବଂ ଆଲୋକଜାଣ୍ଡାରପ୍ଲାଜ। ମନେହୁଏ ବର୍ଲିନ ଗଢ଼ାଯାଇଛି ଜନ୍ମ ହୋଇନି କାରଣ ଏହାର ଅଧିବାସୀମାନେ ନିଜ ନିଜ ଅଂଚଳର ପୁରାତନ ଗାଥା ଓ ଚରିତ୍ରକୁ ଭୁଲି ନାହାନ୍ତି।

ଅଦ୍ଭୁତ ଏ ବର୍ଲିନ ସହର, ଗତ ଶତାବ୍ଦୀର ଜନୈକ ପରିବ୍ରାଜକଙ୍କ ମତରେ 'ବର୍ଲିନ ଗରିବ, ମାତ୍ର କାମ ଉଦ୍ରେକକାରୀ'। କେତେକଙ୍କ ମତରେ ଏ ସହରରେ ଅଛି ତୀବ୍ର ଉଦ୍ଦୀପନା, ଅବିଶ୍ୱାସନୀୟ ଏବଂ ଲଜ୍ଜାକର କାହାଣୀ, ଫ୍ରେଡ଼ିରକ୍ ଦି ଗ୍ରେଟ୍‌ଙ୍କ ବାପା ଫ୍ରେଡ଼ରିକ୍ ଉଇଲିଆମ୍‌ଙ୍କ ବିଚିତ୍ର ସ୍ୱଭାବ ଥିଲା ହାସ୍ୟ ଉଦ୍ଦୀପକ, ହାତ ଧୋଇବା ଓ କଚିମ ପ୍ରତି ଅନୁରାଗ ଥିଲା ପ୍ରବଳ। ହାତ ଧୋଇବା ପାଇଁ ପ୍ରାସାଦ ର ୭୦୦ କୋଠରୀରେ ଜଳ ପାଇପ ଖଞ୍ଜା ଯାଇଥିଲା। କଚିମ ଆଣିବା ପାଇଁ ହାମ୍ବର୍ଗ ଓ ବର୍ଲିନ ମଧ୍ୟରେ ସ୍ୱତନ୍ତ୍ର ରାସ୍ତା ତିଆରି ହୋଇଥିଲା ଘୋଡ଼ାଗାଡ଼ି ଯାତାୟତ ନିମିତ୍ତ।

ବର୍ଲିନ ସହରର ଅଭିବୃଦ୍ଧି ଇତିହାସରେ ଉଲ୍ଲେଖଯୋଗ୍ୟ ଦିବସ ହେଉଛି : ୭୨୦ ମସିହାରେ ପ୍ରଥମେ Slavic ମାନେ ଅସ୍ତ୍ରିଡ଼ି ହାଭେଲ ନଦୀ କୂଳରେ ବସବାସ ସ୍ଥାପନ କଲେ।

୯୯୩ ରେ ପ୍ରଥମେ ରେକର୍ଡ଼ରେ ପଟସଡ଼ାମ ନାମସୂଚିତ।

୧୨୩୭ ରେ କଲିନ୍ ଓ ୧୨୪୫ରେ ବର୍ଲିନର ନାମ ଉଲ୍ଲିଖିତ।

୧୬୦୦ ମସିହାରେ ବର୍ଲିନରେ ୧୨୦୦୦ ଲୋକ ବାସ କରୁଥିଲେ।

୧୬୯୬ରେ Aademy of the Arts ସ୍ଥାପିତ ।

୧୭୦୧ ରେ ଫ୍ରେଡ଼ରିକ୍ ଥାର୍ଡ଼ ପ୍ରୁସିଆର ପ୍ରଥମ ରାଜା ହେଲେ।

୧୮୧୦ରେ ବର୍ଲିନ ବିଶ୍ୱବିଦ୍ୟାଳୟ ସ୍ଥାପିତ।

୧୮୩୮ ରେ ବର୍ଲିନ ପଟସଡାମ୍ ରେଳରାସ୍ତା ନିର୍ମିତ।

୧୮୭୧ରେ ବର୍ଲିନ ଜର୍ମାନ ରିକର୍ (Reich) ରାଜଧାନୀ।

୧୯୦୨ ରେ underground ରେଳଲାଇନ୍।

୧୯୧୮ ରେ ରିପବ୍ଲିକ୍ ଘୋଷଣା।

୧୯୨୦ରେ ଗ୍ରେଟର ବାହିନ ଗଠନ, ଜନସଂଖ୍ୟା ୩୮,୫୬,୩୯୩।

୧୯୨୬ରେ ରେଡ଼ିଓଟୱାର।

୧୯୩୩ରେ ହିଟ୍‌ଲର ଚାନସେଲର ହେଲେ।

୧୯୪୨ ରେ Wannsee Conferene ରେ ଇୟୁରୋପର ଇହୁଦିମାନଙ୍କୁ ବିନାଶ କରିବାର ସିଦ୍ଧାନ୍ତ।

୧୯୪୫ ରେ Pots dam Agreement ।

୧୯୬୧ରେ ବର୍ଲିନୱାଲ୍ ନିର୍ମାଣ।

୧୯୬୯ରେ Alexander Platz ରେ ଟେଲିଭିଜନ ଟାୱାର ସ୍ଥାପନ।

୧୯୮୯ ରେ ବର୍ଲିନ ପ୍ରାଚୀରର ପତନ।

୧୯୯୧ରେ ବର୍ଲିନ ପୁନର୍ମିଳିତ, ଜର୍ମାନୀର ରାଜଧାନୀ ଘୋଷିତ।

୧୯୯୯ରେ ଜର୍ମାନ Bandestag Boenn ରୁ ବର୍ଲିନକୁ ସ୍ଥାନାନ୍ତରିତ

୨୦୦୬ରେ ବର୍ଲିନର ଜନସଂଖ୍ୟା ୩,୩୯୫୧୮୯ (ସାଢ଼େ ଚାରି ଲକ୍ଷ ବିଦେଶୀ) ବର୍ଲିନ ସହରର ପରିସର ୮୮୮ ବର୍ଗ କିଲୋମିଟର, ତହିଁରେ ୪୦ ପ୍ରତିଶତ ସବୁଜ ଅଞ୍ଚଳ।

# ମନ୍ଦିରମାଳିନୀ ଭୁବନେଶ୍ୱର, ପ୍ରାସାଦମାଳିନୀ ବର୍ଲିନ

ଭୁବନେଶ୍ୱରକୁ City of Temple କହି ଆମେ ଗର୍ବ କରୁ, କିନ୍ତୁ ସେହି ପୁରାତନ ଶହ ଶହ ମନ୍ଦିର କାରୁକାର୍ଯ୍ୟମୟ ଭାସ୍କର୍ଯ୍ୟକୁ ସାଧାରଣ ଚକ୍ଷୁରେ ସୁନ୍ଦର ଆକର୍ଷଣୀୟ କରିବା ପାଇଁ କ'ଣ କରିଛୁ ? ଅଧିକ ଆକର୍ଷଣୀୟ କରିବାତ ଦୂର କଥା, ଐତିହାସିକ କୀର୍ତ୍ତିରାଜିର ସମୁଚିତ ରକ୍ଷଣାବେକ୍ଷଣ ମଧ୍ୟ କରିପାରୁନାହିଁ, ମନ୍ଦିର ଅବକ୍ଷୟ ପଥରେ ଗତି କରୁଛି, ଇତିହାସ ମଳିନ ପଡ଼ିଯାଉଛି, ଦୃଷ୍ଟି ଆମର ଟାଣି ନେଉଛି ନବନିର୍ମିତ ରାମମନ୍ଦିର, ଇସ୍‌କନ ମନ୍ଦିର, ସୁନ୍ଦର ଖାଦ୍ୟ ଜାଜ୍ୱଲ୍ୟମାନ ସୁଶୋଭିତ ରାଧାକୃଷ୍ଣ, ରାମସୀତା, ହନୁମାନ ମୂର୍ତ୍ତି, ଚିକ୍କଣ ମାର୍ବଲ ରଂଗବେରଙ୍ଗର ପରିଧାନ, ଆଧୁନିକ ରୁଚିର ପରିପୋଷାକ।

କିନ୍ତୁ ବର୍ଲିନର ପ୍ରାସାଦ ? ଧରି ରଖିଛି ଇତିହାସକୁ। ଐତିହ୍ୟକୁ ଏବଂ ଗର୍ବର ସହ ମିଶି ଯାଉଛି ଆଧୁନିକ ମିଉଜିଅମ୍, ଥିଏଟର, ହୋଟେଲ୍ ପ୍ରାସାଦ ସହିତ।

ମନରେ ଭରିଦେଲା ବିସ୍ମୟ ବର୍ଲିନ ସହରରେ କେନ୍ଦ୍ରସ୍ଥଳରେ - ପଶ୍ଚିମରୁ ପୂର୍ବକୁ ଲାଗି, ବ୍ରବର୍ଣ୍ଣବର୍ଗଗେଟ (Branden Burggate) ଓ ରିକ୍‌ଷ୍ଟାନ୍ Rechstuing ଜର୍ମାନୀର ପାର୍ଲାମେଣ୍ଟ।

୧୭୯୧ରେ ନିର୍ଗତ ବ୍ରଣ୍ଡେନ୍‌ବର୍ଗ ଗେଟ୍ ଶାନ୍ତିର ପ୍ରାଚୀର ରୂପେ ପରିଚିତ ଥିଲା, ଏହି ପ୍ରାଚୀର ଉପରେ ଥିବା Quadrign କୁ ନେପୋଲିଅନ୍ ପ୍ୟାରିସ୍ ନେଇ ଯାଇଥିଲେ। ତାଙ୍କର ପରାଜୟ ପରେ ଫେରି ଆସିଥିଲା ସ୍ୱସ୍ଥାନକୁ। ଯୁଦ୍ଧ ଓ ଶାନ୍ତି, ଜୟ ଓ ପରାଜୟ ନାନାସ୍ମାରକୀ ରହିଛି ଏହି ଗେଟ୍ ସମ୍ମୁଖସ୍ଥ ପଡ଼ିଆରେ। ୧୮୧୪ର ବିଜୟ ଓ ୧୮୪୮ର ହିଂସାପ୍ରଣୋଦିତ ଆନ୍ଦୋଳନ। ୧୯୧୮ରେ ପରାଜୟ, ୧୯୩୩ରେ ନାଜି ପାର୍ଟିର ପାର୍ଲାମେଣ୍ଟ ପ୍ରବେଶ ଆଦି କେତେ ଯେ ଲୋମହର୍ଷଣକାରୀ ଘଟଣା।

୧୮୮୪-୯୪ ଭିତରେ ନିର୍ମିତ The Reichstag ଭାସ୍କର ପଲଓ୍ୱାଲଟ୍ (Paul Wallot) ଙ୍କ ପରିକଳ୍ପନା, ୧୮୮୨ରେ ସମ୍ରାଟ ଦ୍ୱିତୀୟ ଉଇଲିୟମ୍ ଏହା ପାର୍ଟିର ଭିତ୍ତି ପ୍ରସ୍ତର ସ୍ଥାପନ କରିଥିଲେ। ନଭେମ୍ବର ୯ ତାରିଖ ୧୯୧୮ରେ Philip Scheidmann ଏହାର ଗୋଟିଏ ଭଗ୍ନବାତାୟନରୁ ରିପବ୍ଲିକ୍ ଗଠନର ଘୋଷଣା କରିଥିଲେ। ୧୯୭୦ରୁ ଜର୍ମାନ Bundestag ଏଠାରେ ବସିଆସୁଛି, ୧୯୯୧ର ପଶ୍ଚିମ ପୂର୍ବ ଜର୍ମାନୀ ମିଳନ ପରେ ରିକ୍‌ସସ୍ଥାଗର ପୁନର୍ବିନ୍ୟାସ କରାଯାଇଛି। ଏହାକୁ ଘେରି ରହିଛି ଇହୁଦୀଙ୍କୁ ନିର୍ମମ ହତ୍ୟାସ୍ଥଳୀ। ରୁଷୀୟ ସୈନିକଙ୍କ ମୃତ୍ୟୁର ସ୍ମୃତିଫଳକ।

ବର୍ଲିନର ଆଧୁନିକ ନଗର କେନ୍ଦ୍ର, ବର୍ଲିନର ମର୍ଡ଼ର୍ନସିଟି ସେଣ୍ଟର ଅନ୍ୟ ଏକରମଣୀୟ ସ୍ଥଳୀ। ଯେତେବେଳେ, ପଶ୍ଚିମ ଜର୍ମାନୀର କର୍ତ୍ତାମାନେ ଅନୁଭବ କଲେ ଯେ,

ପୂର୍ବଜର୍ମାନୀର ରହିଗଲା ଜର୍ମାନୀକଳ, ସଂସ୍କୃତି ଓ ଇତିହାସର ଗର୍ବର ସ୍ମାରକୀ, ସେତେବେଳେ ୧୯୬୦ ମସିହାରୁ ପଶ୍ଚିମ ବର୍ଲିନ ଅଞ୍ଚଳରେ ନିର୍ମାଣ କରାଗଲା କଳାକେନ୍ଦ୍ର Kulturforum the New National gallery (1976) Maseum of Musical Instrument 1984, Arts and Crafts Museum 1985, Arts Library 1993-1991 ରେ ବର୍ଲିନ ପୁନର୍ମିଳନ ପରେ ଆଧୁନିକ ବର୍ଲିନ ନିର୍ମାଣର ଯୋଜନା ପୂର୍ବାଞ୍ଚଳକୁ ପ୍ରସାରିତ ହେଲା । ସଂପ୍ରତି ଆମେ ଏ ଅଞ୍ଚଳରେ ଦେଖିବାକୁ ପାଉଁ Panserplatz କାଚ ନିର୍ମିତ ସେଣ୍ଟ୍ରାଲ୍ ରେଳଷ୍ଟେସନ୍, ପଟାସଡାମରପ୍ଲାଜକୁ ସଂଯୋଗ କରୁଥିବା ଟୁନେଲ୍, ପୂର୍ବରେ ଥିବା ପ୍ରସିଦ୍ଧ ପୁରାତନ ପ୍ରାସାଦ ସହିତ କେନ୍ଦ୍ର ବର୍ଲିନର ସଂଯୋଗ ପାଇଁ ରେନ୍‌ସେଲର ଅଣ୍ଡରଗ୍ରାଉଣ୍ଡ ଲାଇନ୍ ନିର୍ମାଣ ଚାଲିଛି। ତାହା ହେଲେ ୧୭୮୫ର Bellevue palace, ୧୯୫୭ର କଂଗ୍ରେସ ହଲ୍୧୮୪୬/୪୭ର ପୁରାତନ ଷ୍ଟେସନ୍ ବିଲ୍‌ଡ଼ିଙ୍ଗ୍ ସଂଯୁକ୍ତ ହୋଇଯିବ। ଗଣତନ୍ତ୍ରର ପ୍ରବର୍ତ୍ତନ ପରେ ପାର୍ଲାମେଣ୍ଟ ସଦନକୁ ସର୍ବସାଧାରଣଙ୍କ ପାଇଁ ଉନ୍ମୁକ୍ତ କରାଯାଇଛି। ଆମ ଦେଶ ଭଳି, ପାର୍ଲାମେଣ୍ଟରେ ପ୍ରବେଶ କରିବା ପାଇଁ ସାଂସଦଙ୍କ ଅନୁମତିପତ୍ରର ଆବଶ୍ୟକତା ନାହିଁ। ପାର୍ଲାମେଣ୍ଟ ସାମ୍ନାରେ ଥିବା ପ୍ରଶସ୍ତ ପଡ଼ିଆ ଓ ତାର ପରିଧିରେ ନିର୍ମିତ ପଥର ଖଣ୍ଡ ଉପରେ ବସି ଆମେ ଦେଖୁଥିଲୁ ଶହ ଶହ ଲୋକ ଲାଇନ୍‌ରେ ଛିଡ଼ା ହୋଇଛନ୍ତି ସଂସଦ ଭିତରକୁ ଯିବାକୁ ସମୟ ସଂଧ୍ୟା ୯ଟା ପର୍ଯ୍ୟନ୍ତ।

## ବର୍ଲିନରେ ଇହୁଦୀ

କେତେ ଶତାବ୍ଦୀ ତଳେ, ବିଂଶ ଶତାବ୍ଦୀରେ ଏବଂ ସଂପ୍ରତି ଇହୁଦୀଙ୍କୁ କେନ୍ଦ୍ର କରି ମୁଣ୍ଡ ଟେକିଛି ଦେଶ ଦେଶ ମଧ୍ୟରେ, ଧର୍ମୀୟ ସଂପ୍ରଦାୟ ମଧ୍ୟରେ ଦ୍ୱନ୍ଦ୍ୱ ବିବାଦ ଏବଂ ଖଣ୍ଡ ଯୁଦ୍ଧ। ପାଲେଷ୍ଟାଇନ୍‌କୁ କେନ୍ଦ୍ର କରି ଇସରାଏଲ୍, ଇରାକ ମଧ୍ୟରେ କଳହ, ଆମେରିକାର ହସ୍ତକ୍ଷେପ, ମୁସଲମାନ ମାନଙ୍କର ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରେ। ଆନ୍ତର୍ଜାତୀୟ ସମସ୍ୟା, ଅଶାନ୍ତିର ବାତାବରଣ। ମାନବସଂସ୍କୃତିର ଏକ ଅଲିଭା କାଳିମା, ହିଟଲରଙ୍କ ଦ୍ୱାରା ସହସ୍ର ସହସ୍ର ଜିୟୁଙ୍କୁ ନିହତ ଏକ ଲୋମହର୍ଷଣକାରୀ କାହାଣୀ, ଯାହାକୁ କୁହାଯାଏ Holocaust। ମର୍ମନ୍ତୁଦ ବିଭୀଷିକା କେତେ ଯେ ଗଳ୍ପ ଉପନ୍ୟାସରେ ବର୍ଣ୍ଣିତ ହୋଇଛି ହୃଦୟ ବିଦାରକ କାହାଣୀ ତାର ଇୟତା ନାହିଁ। ବର୍ଲିନରେ ଏହି ଅମାନୁଷିକ ଘଟଣାର ହୃଦୟଥରା ସ୍ମୃତି ଦେଖାଇବାକୁ ନେଇଗଲା ଆମର ଗାଇଡ୍ ସଂଧ୍ୟାରେ। କାଳ ରାତି ନଇଁ ଆସୁଥାଏ ଆମର ଚିନ୍ତା ରାଜ୍ୟକୁ ଗ୍ରାସ କରିବାକୁ, ଇୟୁରୋପରେ ଜିୟୁଙ୍କୁ ହତ୍ୟାର ସ୍ମୃତିରେ

ଗଢ଼ାଯାଇଥାଏ ସୁନ୍ଦର Dome ପ୍ରାସାଦ। ଆଖିକୁ ସିନା ଥିଲା ଆକର୍ଷଣୀୟ, ମନକୁ ଥିଲା ଦୁଃଖଦାୟକ ଚିନ୍ତା ଉଦ୍ରେକକାରୀ।

ଇତିହାସ କହେ ଇହୁଦୀମାନେ ପ୍ରଥମେ ବର୍ଲିନରେ ପ୍ରବେଶ କରିଥିଲେ ତ୍ରୟୋଦଶ ଶତାବ୍ଦୀରେ। ୧୬୭୧ ମସିହା ସେପ୍ଟେମ୍ବର ୧୦ ତାରିଖରେ ପ୍ରଥମ ଅଷ୍ଟ୍ରିୟାନ ପରିବାର ସୁରକ୍ଷାର ସନନ୍ଦ ପାଇଲେ। ଏହାକୁ ଏବେ ବର୍ଲିନର ଜିୟୁର୍କଙ୍କ ପ୍ରତିଷ୍ଠା ଦିବସ (Foundation Day) ରୂପେ ପାଳନ କରାଯାଉଛି । କିନ୍ତୁ ୧୭୧୪ରୁ ଜିୟୁ ମାନଙ୍କର ଆଗମନର କ୍ରମବୃଦ୍ଧି ଘଟିଥିଲା। ୧୯୨୫ରେ ବର୍ଲିନରେ ୧୭୬୭୨ ଜିୟୁ ବାସ କରୁଥିଲେ। ସେମାନଙ୍କର ସଂଖ୍ୟା ମୋଟ ଜନସଂଖ୍ୟାର ୪.୩ ପ୍ରତିଶତ ଥିଲା। ହିଟଲରଙ୍କ ଶାସନକାଳରେ ସମଗ୍ର ଦେଶରେ ଓ ଜର୍ମାନୀ ଅଧିକୃତ ଦେଶରେ ଧାରାବାହିକ ଭାବେ ଜିୟୁଙ୍କୁ ନିହତ କରାଗଲା। ସଂପ୍ରତି ବର୍ଲିନରେ ୧୨,୦୦୦ ଜିୟୁ (ଇହୁଦୀ) ଅଛନ୍ତି।

ଗାଇଡ୍ ଆମକୁ ଇହୁଦୀ ମାନଙ୍କର ପୁରୁଣା ଭଂଗା ଘରଗୁଡ଼ିକ ଦେଖାଉଥିଲେ। ପୁରୁଣା ଶୈଳୀର ଗୋଟିଏ ଘରେ ଲଣ୍ଠନ ଜଳୁଥିବା ଦୃଶ୍ୟମାନ ହେଲା । ସମ୍ଭବତଃ ଅତୀତକୁ ସ୍ମରଣ କରାଇଦେବା ଉଦ୍ଦେଶ୍ୟରେ। ଇତିହାସର ଚକ ଘୁରୁଛି, ଦୈବକୃତ ଓ ମନୁଷ୍ୟକୃତ ଦୁର୍ବିପାକ ସହି ମଣିଷ ବଂଚିଛି। ବଳିଷ୍ଠ ସଂସ୍କୃତି ଧ୍ୱଂସ ମୁଖରୁ ବର୍ତ୍ତି ଯାଉଛି ଦୁର୍ବଳ ବିଲୁପ୍ତ ହେଉଛି। ଇତିହାସର ଶିହରଣ ପରିଭ୍ରମଣ ର ଅବଦାନ।

## ବର୍ଲିନ ଓ୍ୱାଲ୍

ବର୍ଲିନର ପଶ୍ଚିମ ପାର୍ଶ୍ୱରେ ପ୍ରାଚୀରଟି ଗଢ଼ା ଯାଇଥିଲା ଅଗଷ୍ଟ ୧, ୧୯୬୧ରେ ପୂର୍ବ ଜର୍ମାନୀରୁ ପଳେଇ ଆସୁଥିବା ରିଫ୍ୟୁଜିମାନଙ୍କ ପଥରୋଧ କରିବା ପାଇଁ। ପୂର୍ବଜର୍ମାନୀ ମଧ ପଶ୍ଚିମ ଜର୍ମାନୀର ଚତୁପାର୍ଶ୍ୱଠାରୁ ଦୂରେଇ ରହିବାକୁ ପଦକ୍ଷେପ ନେଇଥିଲା। ପ୍ରଥମେ କାଠର ତିଆରି ଅବରୋଧ ପରବର୍ତ୍ତୀ କାଳରେ ଶକ୍ତ କଂକ୍ରିଟ୍‌ରେ ପରିଣତ ହୋଇଥିଲା। ୧୬୨ କିଲୋମିଟର ଦୀର୍ଘପଥ ଅବରୋଧ କରାଯାଇଥିଲା, ସେଥିରୁ ୩୭ କିଲୋମିଟର ଜନବସତି ଅଂଚଳରେ ୧୭ କିଲୋମିଟର ଶିଳ୍ପାଞ୍ଚଳରେ ୩୦ କିଲୋମିଟର ବନଅଞ୍ଚଳରେ ୨୪ କି.ମି. ଜଳାଞ୍ଚଳରେ ୫୪ କି.ମି. ରେଳବନ୍ଧ ଓ ସନ୍ତସନ୍ତିଆ ଅଞ୍ଚଳରେ। ଏହି ଅବରୋଧ ଆଠଟି ସହର ୪ଟି ଅଣ୍ଡରଗ୍ରାଉଣ୍ଡ ରେଳପଥ ଅତିକ୍ରମ ପଥରୋଧ କରିଥିଲା। ୧୯୨ଟି ପ୍ରଧାନ ଓ ପାର୍ଶ୍ୱସ୍ଥ ରାସ୍ତା, ୧୦୭ କିଲୋମିଟର ପ୍ରାଚୀର ୪ ମିଟର ଉଚ୍ଚ, ୬୫ କିଲୋମିଟର ୩/୪ ମିଟର ଉଚ୍ଚ ଲୁହା ଗେଟ୍ ଏବଂ ୩୦୦ ପର୍ଯ୍ୟବେକ୍ଷଣ ଟାୱାର। ବର୍ଲିନ ପ୍ରାଚୀରକୁ ଅତିକ୍ରମ କରିବା ଅପଚେଷ୍ଟାରେ ଅନେକ ମୃତ୍ୟୁବରଣ କରିଥିଲେ ।

ପ୍ରଥମ ମୃତ୍ୟୁ ଘଟିଥିଲା ଅଗଷ୍ଟ ୧୯,୧୯୬୧ରେ। ଶେଷ ମୃତ୍ୟୁ ଘଟିଥିଲା ମାର୍ଚ୍ଚ ୮, ୧୯୮୯ରେ। ସହରର ୧୩ଟି ସ୍ଥାନରେ ବର୍ଲିନ ଓ୍ୱାଲ୍‌ର ଅବଶିଷ୍ଟାଂଶ ଦେଖିବାକୁ ମିଳେ। ଏହି ପ୍ରାଚୀରକୁ ସ୍ମରଣ କରିବା ପାଇଁ ବର୍ଲିନ ସିନେଟ୍ ଆଠଟି ସ୍ଥାନରେ Places of Rememberence ନିର୍ମାଣ କରିଛି।

ଦୁଇ ଜର୍ମାନୀର ଲୋକେ ସ୍ୱପ୍ନରେ ଭାବି ନଥିଲେ ଯେ ଅନତିକ୍ରମ୍ୟ ଦୁର୍ଭେଦ୍ୟ ପ୍ରତିରୋଧକ ପ୍ରାଚୀର ଧୂଳିସାତ ହେବ। ଯେଉଁ ରାତିରେ ବର୍ଲିନ ପ୍ରାଚୀର ଭାଙ୍ଗିପଡ଼ିଲା ସେହି ଐତିହାସିକ ଦିବସକୁ ପାଳନ କରିବାକୁ ବ୍ୟବସାୟୀମାନେ ଚିତ୍ରିତ ଦ୍ରବ୍ୟ ବିକ୍ରୟ କରନ୍ତି। ବର୍ଲିନ ଓ୍ୱାଲର ଭଗ୍ନାବଶେଷରେ କେତୋଟି ଗର୍ତ୍ତ ରହିଛି ଯାହା ସାହାଯ୍ୟରେ ଭ୍ରମଣକାରୀମାନେ ଅପରପାର୍ଶ୍ୱର ପ୍ରାଚୀରକୁ ଦେଖନ୍ତି।

ପଶ୍ଚିମ ପୂର୍ବ ବର୍ଲିନ ମଧ୍ୟରେ ଯାତାୟତର ପଥ ଅବରୋଧ ଥିଲାବେଳେ ଆତ୍ମୀୟମାନଙ୍କ ପ୍ରାଣରେ ପ୍ରେମିକ ପ୍ରେମିକା, ଅନ୍ତରଂଗ ବଂଧୁଙ୍କ ମନରେ କେତେ ଯେ ଦାରୁଣ ଦୁଃଖ ଜାତ ହେଉଥିବ ତା ବର୍ଣ୍ଣନାତୀତ। ଏହି ଅସହ୍ୟ ଯନ୍ତ୍ରଣାରୁ ମୁକ୍ତି ପାଇବା ପାଇଁ ପ୍ରାଚୀର ଡେଇଁ ଯିବାର ଦୁଃସାଧ ଚେଷ୍ଟା ବେଳେ ଜଗୁଆଳି ପୋଲିସର ଗୁଳିରେ ମୃତ୍ୟୁ ବରଣ କରିଛନ୍ତି କେତେକ, ମୃତ୍ୟୁର ଓ ବଂଦୀ ଜୀବନର ଭୟକୁ ଭ୍ରୂକ୍ଷେପ ନ କରି କାହାରି ବିଦଗ୍ଧ ପ୍ରାଣରେ ଗୁଞ୍ଜରି ଉଠିଥିବ 'My love is such that rivers cannot quench / Thy love is such I can no way repay - Annre Brodstreet (୧୬୧୨-୧୬୭୨) ବର୍ଲିନଓ୍ୱାଲ୍‌ର ପୂର୍ବ ପାର୍ଶ୍ୱ କାନ୍ଥରେ ବ୍ରେଜ୍‌ନେଭ GDR ନେତା Erich Honlcker ଙ୍କୁ ଚୁମା ଦେବାର ଚିତ୍ର ଦେଖିବାକୁ ମିଳେ।

ଅନ୍ୟ ଏକ ଚିନ୍ତାଉଦ୍ରେକକାରୀ ବିସ୍ମୟକର ସ୍ଥାନ ଦେଖି ଥିଲୁ ହିଟ୍‌ଲର ବଙ୍କର, ଯାହା ଭିତରେ ଯୁଦ୍ଧ କାଳରେ ହିଟଲର ନିଜର ପ୍ରାଣପ୍ରିୟା ଓ ବିଶ୍ୱସ୍ତ ଲୋକଙ୍କୁ ନେଇ ଶେଷ ଜୀବନଯାପନ କରିଥିଲେ ଏବଂ ବର୍ଲିନର ପତନ ସନ୍ନିକଟ ଜାଣି ନିଜକୁ ଗୁଳିବଦ୍ଧ କରିଥିଲେ।

## ଜଳନଗରୀର ଜଳପରୀ

ପ୍ୟାରିସ୍ ହେଉ, କି ବର୍ଲିନ ହେଉ, ଥାଉଜେଣ୍ଡ ଲ୍ୟାଣ୍ଡସ ହେଉ କି ଆମଷ୍ଟାରଡ଼ାମ୍ ହେଉ, ନଦୀ, ବା ହ୍ରଦରେ ମନ୍ଦ ପବନରେ ଜାହଜରେ ବସି ଦୁଇ ପାର୍ଶ୍ୱର ସୁନ୍ଦର ଅଟ୍ଟାଳିକା, ଚର୍ଚ୍ଚ, ମସଜିଦ୍, ଐତିହାସିକ ସ୍ମୃତିସ୍ତମ୍ଭ ଦେଖିବା କେତେ ଯେ ଆନନ୍ଦଦାୟକ ତା ଅନୁଭବୀଙ୍କୁ ହିଁ ଜଣା। ବର୍ଲିନ୍ ସହରକୁ Water city ବା ଜଳନଗରୀ କୁହାଯାଇଥାଏ କାରଣ ଏହା

ମଧ୍ୟରେ ପ୍ରବାହିତ ହେଉଛି ୫ଟି ନଦୀ, ୬ଟି କେନାଲ ଏବଂ ରହିଛି ୫୮ଟି ହ୍ରଦ ସହରର ପ୍ରାୟ ୭ ପ୍ରତିଶତ ଜଳମଗ୍ନ। ବିଶ୍ରାମ ନେବା ଓ ସ୍ନାନ କରିବାର ସୁଯୋଗ ମିଳିଥାଏ ଏହି ସବୁ ନଦୀ ହ୍ରଦରୁ। ସ୍ପ୍ରି ଓ ହାଭେଲ ନଦୀରୁ ନିର୍ଗତ ମୁଗେଲସି (muggelsee) ପୂର୍ବରେ, ହାଭେଲ୍‌ସିନ୍ (Havelsen) ପଶ୍ଚିମରେ ପରିବ୍ରାଜକମାନଙ୍କର ଆନନ୍ଦର ଉତ୍ସ।

ଅପରାହ୍ନ ଦୁଇଟାରେ ଖୋଲା ଜାହାଜରେ ବସି ଆମେ ନୌବିହାର କରୁଥିଲୁଁ। ପାଗ ସୁଖକର ନଥିଲା। ଅପ୍ରତ୍ୟାଶିତ ଭାବେ ରୌଦ୍ରତାପ ପ୍ରଖର ଥିଲା, ସମୟ ଅନୁକୂଳ ନ ଥିଲେ ବି ହ୍ରଦ ଦୁଇ ପାର୍ଶ୍ୱରେ ଅବସ୍ଥିତ ଐତିହାସିକ ଦୁର୍ଗ ସୁରମ୍ୟ ପ୍ରାସାଦ, ସୁଉଚ୍ଚ ଗମ୍ବୁଜ ଆମକୁ ମୁଗଧ କରି ରଖିଥାଏ। ସ୍ପ୍ରି ନଦୀକୂଳରେ ପ୍ରଥମ ଜନବସତି ସ୍ଥାପିତ ହୋଇଥିଲା। ୭୨୦ ମସିହାରେ The captain of Kopenick ଙ୍କ ପ୍ରତିମୂର୍ତ୍ତି Granewald Tower ଦ୍ୱୀପ ମଧ୍ୟସ୍ଥ ରାଜପ୍ରାସାଦ Bridge of the spies, ସ୍ଥପତିଙ୍କ ଅନବଦ୍ୟ କୃତିର ସ୍ମାରକ ରୂପେ ଦଣ୍ଡାୟମାନ। ଏସବୁତ ମଣିଷର ଉତ୍ତରୋତ୍ତର ବୈଜୟନ୍ତୀ। ଏହି ବୈଜୟନ୍ତୀ ସହ ପ୍ରତିଦ୍ୱନ୍ଦ୍ୱିତା କରୁଥାଏ ସୁନ୍ଦରୀ ରମଣୀଙ୍କ ରୂପର ଝଲକ। ଜୀବନକୁ ଉପଭୋଗ କରିବାକୁ ନଦୀ ଓ ହ୍ରଦ କୂଳରେ ଅର୍ଦ୍ଧନଗ୍ନ, ପ୍ରାୟତଃ ନଗ୍ନ ସ୍ତ୍ରୀପୁରୁଷ ରୌଦ୍ରଉଷ୍ମତାରେ ଅବଗୋହନ କରୁଥାନ୍ତି। ମୋର ଏବଂ ମୋ ପରି ଭାବପ୍ରବଣ ପୁରୁଷର ଆଖି ଅବଗାହନ କରୁଥାଏ ରୂପର ଢେଉରେ। ସତେ କି ଜଳପରୀମାନେ ଉଠି ଆସିଛନ୍ତି ଧୂସର ମାଟି ଓ ସବୁଜ ଘାସର ସୁଗନ୍ଧ ଆଘ୍ରାଣ କରିବାକୁ ଶହ ଶହ ଚନ୍ଦ୍ରଭାଗା ଦୌଡୁ ଦୌଡୁ ଝୁଣ୍ଟିପଡ଼ିଛି କି ମାଟିରେ। ପଛେ ଧାଇଁ ଥିବା ସୂର୍ଯ୍ୟ ଉତ୍କଣ୍ଠାରେ ଧରୁଛି ଚନ୍ଦ୍ରଭାଗାର ଦେହ। ଏମାନେ ତ ବରୁଣ କନ୍ୟା ଲକ୍ଷ୍ମୀ, ମୁଁ କୁବେର ବଂଶଧର ରୂପରତ୍ନର ସଂଧାନୀ।

ସ୍ପ୍ରିନନଦୀରେ ଦର୍ପର ସହ ଛିଡ଼ା ହୋଇଛନ୍ତି ତିନିଟି ୩୦ ମିଟର ଉଚ୍ଚ ମଣିଷର ମୂର୍ତ୍ତି, ଆମେରିକାର ଶିଳ୍ପୀ ଜୋନାଥନ ବରୋସ୍କିଙ୍କ କୃତି। ଏହି ମୂର୍ତ୍ତି ତିନିଟି ଜିଲ୍ଲାର ସଂଗମର ପ୍ରତୀକ। ଆନନ୍ଦ ପରିବେଷକ।

## ବର୍ଲିନ ସିଟି ସେଣ୍ଟର - ସମୟର କ୍ରୀଡ଼ାସ୍ଥଳୀ

କେତେ ଶହ ବର୍ଷର ସହର, କେତେ ଘଟଣାର ମୂକସାକ୍ଷୀ, ନୂତନ ପୁରାତନର ସମାବେଶ, ସିଟିସେଣ୍ଟର ଆଣିଦିଏ ଆନନ୍ଦ ଉଲ୍ଲାସ।

୧୮୩୧ରେ ନିର୍ମିତ ପଟସଡ଼ାମଇ ପ୍ଲାଜ ୧୮୩୮ରେ ତିଆରି ପ୍ରଥମ ରେଳଷ୍ଟେସନ୍, ୧୯୯୧ର ପୁନର୍ମିଳନ ପରେ ଆମେରିକାର ଅନୁକରଣରେ ନଭଶ୍ଚୁମ୍ବୀ

ଅଟ୍ଟାଳିକା, ଷ୍ଟେଟ୍ ଅଫିସ୍ ହାଉସ୍, ବର୍ଲିନ ସିଟି ପେଲେସ୍, ପାରିସରପ୍ଲାଜ୍, ୧୫୨୭ର Electors Tier, German History museum, Bebeloplatz of 1857 ଯେଉଁଠି ଫ୍ରେଡ୍ରେରିକ୍ ଦି ଗ୍ରେଟ୍ ଶାନ୍ତି ନିଦ୍ରା ଯାଇଛନ୍ତି Namboldt University, Maxim gorky Thetre, Karlmarx Allee - Arsenal and Castle Bridge - Kaiser Frederic Museum Bode Museum 1897 - 1904 ରେ ନିର୍ମିତ pergamm inuseum ୧୯୧୯-୧୯୩୦ନିର୍ମିତ) - ଏ ସମସ୍ତ ଆକର୍ଷଣୀୟ ପ୍ରଗତି ସୂଚକ ନିର୍ମାଣ ଜର୍ମାନ ଜାତିର ଅଦମନୀୟ ଅଗ୍ରଗତିର ସଂକେତ। ଦ୍ୱିତୀୟ ମହାଯୁଦ୍ଧର ଆଶଙ୍କିତ ଧ୍ୱଂସରୁ ରକ୍ଷା କରିବା ପାଇଁ ମିଉଜିୟମ୍‌ର ଦ୍ରବ୍ୟଗୁଡ଼ିକ ନିରାପଦ ସ୍ଥାନରେ ଗଚ୍ଛିତ କରାଯାଇଥିଲା। ପ୍ରାୟ ୮୦ ପ୍ରତିଶତ ଦର୍ଶନୀୟ ବସ୍ତୁ ଥିଲା ସୁରକ୍ଷିତ। ଯୁଦ୍ଧ ପରେ ଭଂଗାଗୃହ ଗୁଡ଼ିକ ନିର୍ମିତ ହେବା ପରେ ୧୯୫୦ରେ ଜନସାଧାରଣଙ୍କ ଦର୍ଶନ ପାଇଁ ମିଉଜିୟମ୍‌କୁ ଉନ୍ମୁକ୍ତ କରାଗଲା।

Unter din Linden ପୁରୁଣା ବର୍ଲିନର ସୁଦୃଶ୍ୟ ରାଜପଥ ଥିଲା। ଦୁଇପାର୍ଶ୍ୱରେ ଲାଇମ ବୃକ୍ଷର ଛାୟା। ଏହି ପଥରେ ଅଛି Bebelplatz ଏଠାରେ ପୁସ୍ତକରେ ଅଗ୍ନି ସଂଯୋଗର ସ୍ମୃତିସ୍ତମ୍ଭ ଦେଖିବାକୁ ମିଳେ। ୧୯୩୩ରେ ହିଟ୍‌ଲର ଦାହ କରିଥିଲେ ତାଙ୍କର ଅପ୍ରିୟ ବହିଗୁଡ଼ିକୁ, ଗୋଟିଏ ଝରକା ନେଇ ଶୂନ୍ୟ ବହି ସେଲ୍‌ଫ ଦେଖିହୁଏ।

ବର୍ଲିନ ଟିଭିଟାୱାର୍ ୩୬୮ ମିଟର ଉଚ୍ଚ ୨୦୭ ମିଟର ଉଚ୍ଚରେ ରିଭଲ୍‌ଭିଂର ବ୍ୟବସ୍ଥା ଅଛି, ସହରର ଦୃଶ୍ୟ ଦେଖିବା ପାଇଁ।

ବର୍ଲିନର ପୂର୍ବାଞ୍ଚଳରେ କଳକାରଖାନା, ପଶ୍ଚିମରେ ଧନୀସଂଭ୍ରାନ୍ତ ଲୋକଙ୍କ ନିବାସ। କାରଖାନାର ଦୂଷିତବାୟୁ ଠାରୁ ଦୂରରେ ଜୀବନକୁ ସୁଖମୟ କରିବାକୁ ପୁଞ୍ଜିବାଦର ପରିକଳ୍ପନା।

ଏଠାରେ ଦେଖିବାକୁ ମିଳେ ବେଲ୍‌ଟାୱାର International Congress Centre(ICE) ୧୯୨୬ରେ ଆଲ୍‌ବର୍ଟ ଆଇନ୍‌ଷ୍ଟାଇନ୍‌ଙ୍କ ଦ୍ୱାରା ଉନ୍ମୋଚିତ ରେଡ଼ିଓ ଟାୱାର ୧୯୩୪-୩୬ ମଧ୍ୟରେ ନିର୍ମିତ Olympic Stadium ।

ହେକ୍‌ସର ମାର୍କେଟ୍ Kescher Market । ବିଳାସୀ ଯୁବକ ଯୁବତୀମାନଙ୍କ ଆଡ୍ଡାସ୍ଥାନ। ଅସଂଖ୍ୟ ଦୋକାନ କାଫେ, ରେଷ୍ଟୁରାଣ୍ଟ ଆନନ୍ଦ ବିତରଣ କରିଚାଲେ, ମଧ୍ୟରାତ୍ରି ପର୍ଯ୍ୟନ୍ତ।

ପଟ୍‌ସଡ଼ାମ୍‌ର ପ୍ଲାଜ ୨୦୦୦ରେ ନିର୍ମିତ ବିରାଟ ଦୋକାନ ବଜାର କ୍ଲବ ଉଚ୍ଚ ଏ ପାର୍ଟମେଣ୍ଟ ସିନେମାରେ ପରିପୂର୍ଣ୍ଣ ଏ ଯୁଦ୍ଧ ପୂର୍ବେ ଏ ଅଂଚଳ ଥିଲା ସବୁଠୁଁ ବଡ଼ ବ୍ୟବସାୟ ସ୍ଥଳୀ।

# ବର୍ଲିନର ପ୍ରେରଣାଦାତ୍ରୀ ସହଚରୀ ପୋଟସ୍‌ଡାମ୍

ଇତିହାସ ଲେଖାହୁଏ ମଣିଷର କୃତିରେ, ସ୍ଥାପତ୍ୟ, କଳା କଳ୍ପନାର ଆଲେଖ୍ୟରେ। ଇତିହାସ ଚେତେଇଦିଏ, ଯୁଗାନ୍ତରର ମଣିଷକୁ ସେ ଆଗଉଛି ନା ପଛଉଛି। ଆଗ୍ରା ଦିଲ୍ଲୀ, ପୁରୀ, କୋଣାର୍କ, କଟକ, ଭୁବନେଶ୍ୱର - ସହରଗୁଡ଼ିକ ମଣିଷର କଳା ସଂସ୍କୃତି ଚିନ୍ତା ଚେତନାର ଅଗ୍ରଗତିର ପ୍ରେରଣାଦାୟକ। ପୋଟସଡ଼ାମ୍ ଭଳି ପୁରାତନ ସହର ଅତୀତର ରାଜଧାନୀ ଜର୍ମାନୀକୁ ଦେଇଛି ଉତ୍ସାହ ଉଦ୍ଦୀପନା ନବୀନ ଓ ସଂଦେଶ।

ରମଣୀୟ ପ୍ରାସାଦ ଓ ଉଦ୍ୟାନ ପୋଟସଡ଼ାମକୁ କରିଛି ଅନନ୍ୟ, ପରିବ୍ରାଜକଙ୍କ ପାଇଁ ଆକର୍ଷଣୀୟ। ସାନସୋସିପେଲେସ (Sanassouci palace) ଆକର୍ଷଣର ବିନ୍ଦୁ, ଏହା ନିର୍ମିତ ହୋଇଥିଲା Georg Wenzel saus knobelsdroff ଙ୍କ ଦ୍ୱାରା ଫ୍ରେଡ଼୍‌ରିକ ଦି ଗ୍ରେଟ୍‌ଙ୍କ ପାଇଁ ୮୮ଟି ସ୍ତମ୍ଭ ସନ୍ନିବିଷ୍ଟ ଅଟ୍ଟାଳିକାଟି ବିଶାଳ ଓ ସୁନ୍ଦର, ପ୍ରାସାଦର କୋର୍ଟ ଓ ମାର୍ବଲ ହଲ୍, ଭଲଟାୟାର ରୁମ୍, ରଙ୍ଗିନ ଗୁଳ୍ମ ପୁଷ୍ପଗୁଚ୍ଛ, ପଶୁପକ୍ଷୀଙ୍କ ଜୀବନ୍ତ ମୂର୍ତ୍ତି ମନମୁଗ୍ଧକର। voltaire ଏହି କୋଠରୀରେ ରହି ନଥିଲେ। କୋଠରୀ ନିର୍ମାଣ ପୂର୍ବରୁ ସେ ଜର୍ମାନୀ ଛାଡ଼ି ପଳାଇଥିଲେ। ତଥାପି ଜଣେ ମହାନ୍ ବିଦ୍ୱାନକୁ ଯଥାର୍ଥ ସମ୍ମାନ ଦେବା ପାଇଁ ତାଙ୍କ ନାମରେ ନାମିତ ହୋଇଥିଲା କୋଠରୀଟିଏ, ଏଡ଼େ ସୁନ୍ଦର ସୁସଜ୍ଜିତ ରାଜପ୍ରସାଦ ଅନ୍ୟତ୍ର ବିରଳ। ଭିତରେ ଅଛି ସୁନ୍ଦର Baroque Theatre ବିରାଟ ବଳରୁମ୍। ପାର୍ଶ୍ୱରେ ଅଛି New chambers ଏବଂ Historic mill ପାସାଦସମୁନେ ଫ୍ରେଡ଼ରିକ୍ ଦି ଗ୍ରେଟ୍‌ଙ୍କ ପୂର୍ଣ୍ଣାବୟବ ମୂର୍ତ୍ତିଟି ଦର୍ଶକଙ୍କ ମନରେ ସୃଷ୍ଟି କରେ ଇତିହାସ ବୋଧ।

Electer Frindrich Willelm of Braedenburg ଏହି ସହରକୁ ତାଙ୍କର ଦ୍ୱିତୀୟ ଗୃହସ୍ଥଳୀ ରୂପେ ସପ୍ତଦଶ ଶତାବ୍ଦୀରେ ବ୍ୟବହାର କରୁଥିଲେ। ଦ୍ୱିତୀୟ ମହାଯୁଦ୍ଧର ବିଜୟୀ ଦେଶ ମାନଙ୍କର ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ୧୮୪୫ରେ ଏହିଠାରେ।

## ସାନ୍‌ସୋସି ପାର୍କ (Sanssouce Park) :

କେତେକଙ୍କ ମତରେ ଦୁଇଟି ପ୍ରାସାଦ ଠାରୁ ଅଧିକ ଆକର୍ଷଣୀୟ ସାନ୍‌ସୋସିପାର୍କ ପ୍ରାସାଦ ଠାରୁ ୮୦୦ ମିଟର ଦୂରରେ ଏହା ଅବସ୍ଥିତ। ସାଜସୋସି ପେଲେସ୍‌ର ପାଦତଳେ ଅଛି ଗୋଟିଏ ବଡ଼ଘର, ୧୭୫୪ରେ ନିର୍ମିତ ଅବିଶ୍ୱାସନୀୟ Chinese House, ପଥର ମଣିଷ ଉପହ୍ରଦରେ ପାର୍କରେ ଦେଖିବାକୁ ମିଳେ ୧୮୩୫ ରେ ନିର୍ମିତ ରୋମାନ୍ ସ୍ନାନାଗାର। ଉତ୍ତରପାର୍ଶ୍ୱରେ ଅଛି ୧୮୩୫ରେ ନିର୍ମିତ orangery, ୩୦୦ ମିଟର ଲମ୍ବା। ପାର୍କର

ପଶ୍ଚିମରେ ଅଛି New palace - 240 ମିଟର ଲମ୍ବ, ୨୦୦କୋଠରୀ ୧୭୮ଟି ମୂର୍ତ୍ତି ଦୃଶ୍ୟମାନ। ନିୟୁପେଲେସ୍ (ପ୍ରସାଦ)ରେ ସୁରମ୍ୟ ମାର୍ବଲ ଗେଲେରୀଟିଏ ଦେଖିବାକୁ ମିଳେ।

ବିରାଟ ପାର୍କ, ପିଲାବୁଢ଼ା, ଯୁବକଯୁବତୀ ସମସ୍ତଙ୍କ ମନ ମୋହିଲା ଭଳି ପ୍ରାକୃତିକ କୃତ୍ରିମ ଦୃଶ୍ୟରାଜି ରଚିତ ହୋଇଛି। Water ଫାଉଣ୍ଟେନର ଚତୁପାର୍ଶ୍ୱରେ ବିଭିନ୍ନ ଶୈଳୀର ରୋମାଞ୍ଚ ସୃଷ୍ଟିକାରୀ ମାର୍ବଲ ମୂର୍ତ୍ତି ମଣିଷର ସୌନ୍ଦର୍ଯ୍ୟ ପିପାସ ମେଣ୍ଟାଇଦିଏ କିଛି ସମୟ ପାଇଁ, ଭୂଦେବୀ ମାର୍ବଲ ମୂର୍ତ୍ତି ପାଖରେ ଫଟୋଟିଏ ଉଠାଇବାର ଲୋଭ ମୋର କବି ମନ ସମ୍ବରଣ କରିପାରି ନଥିଲା।

## ପୋଟସଡ଼ାମ ସହର

ସାନ ସୋରି ପାର୍କ ଭିତରେ ରହିଛି chineselt Tea House ପାମ୍ ଗଛ ଦ୍ୱାରା ଆଚ୍ଛାଦିତ ଗୋଲାକାର ପେଭିଲଗ୍‌ଟି ବେଶ ସୁନ୍ଦର। ଚାଇନାର ପଶୁ ଓ ସଂଗୀତଜ୍ଞଙ୍କ ଚିତ୍ର ସୁଦୃଶ୍ୟ। ୧୭୫୭ ମସିହାରେ ଏହା ନିର୍ମିତ।

Heilger କୂଳରେ ଅବସ୍ଥିତ Newer Garten ଭିତରେ ଶେଷ ପ୍ରୁସିଆନ ଓ ଜର୍ମାନୀ ସମ୍ରାଟଙ୍କର ହେଏନଜୋଲେନ ବଂଶର କୀର୍ତ୍ତିରାଜି ଦେଖିବାକୁ ମିଳେ। ୧୭୮୭-୧୮୪୪ ଭିତରେ ନିର୍ମିତ ମାର୍ବଲ ପେଲେସ ୧୮୩୮-୧୮୪୯ ଭିତରେ ନିର୍ମିତ ବାବେଲବାର୍ଗ ପେଲସ୍ ଏବଂ ୧୯୧୨-୧୯୧୭ରେ ନିର୍ମିତ ମାର୍ବଲ ପେଲେସଟି ୨ୟ ଫେୟଡ଼ରିକ୍ ଇଉଲିଆମଙ୍କ ଗ୍ରୀଷ୍ମ ନିବାସ ରୂପେ ବ୍ୟବହୃତ ହେଉଥିଲା। ବାବେଲବାର୍ଗପେଲେସ୍ ରାଜକୁମାରଙ୍କୁ ଉପହାର ଭାବେ ଦିଆଯାଇଥିଲା। ଅନ୍ୟ ଏକ ପେଲେସ୍ ଥିଲା Ceilienhop Palace (1912-1917)। ଏହା ପ୍ରିନ୍ସ ଉଇଲିୟମ୍ ଓ ତାଙ୍କ ସ୍ତ୍ରୀଙ୍କ ବାସସ୍ଥାନ ଥିଲା। ଏଥିରେ ୧୭୬ଟି କୋଠରୀ ଅଛି। ଏହା ଇଂରାଜୀ ଗ୍ରାମ ଗୃହ ଶୈଳୀରେ ତିଆରି। ଏହି ପ୍ରାସାଦରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ବିଜୟ ପରେ ଆନ୍ତର୍ଜାତୀୟ ରାଜନୀତିର ଭବିଷ୍ୟତ ରୂପରେଖ ଅଙ୍କନ କରାଯାଇଥିଲା। ଇତିହାସ ପ୍ରସିଦ୍ଧ ପୋଟସଡ଼ାମ୍ କନଫରେନ୍ସ ଏଠାରେ ଅନୁଷ୍ଠିତ ହୋଇଥିଲା। 1945 ସମ୍ମିଳନୀରେ ଯୋଗ ଦେଇଥିଲେ, ଯୁକ୍ତରାଷ୍ଟ୍ର ଆମେରିକାର ରାଷ୍ଟ୍ରପତି ଟ୍ରୁମନ୍ ସୋଭିଏଟ୍ ୟୁନିୟନର ମୁଖ୍ୟ ଜୋସେଫ୍ ଷ୍ଟାଲିନ, ଗ୍ରେଟ୍ ବ୍ରିଟେନ୍‌ର ପ୍ରଧାନମନ୍ତ୍ରୀ, ଚର୍ଚ୍ଚିଲ ଓ ଅଟଲି। ଏହି ସମ୍ମିଳନୀର ଚୁକ୍ତି ଅନୁସାରେ ସମଗ୍ର ଜର୍ମାନୀ ଓ ବର୍ଲିନ ସହର ଚାରିଟି ଅଞ୍ଚଳରେ ବିଭକ୍ତ ହୋଇଥିଲା। ବିଭାଜିତ ଜର୍ମାନୀର ସ୍ଥିତି କାଏମ ଥିଲା ୧୯୮୯ ପର୍ଯ୍ୟନ୍ତ। ଏବେ ଜର୍ମାନୀ ଓ ବର୍ଲିନ୍ ପୂର୍ବର ଐକ୍ୟ ଫେରିପାଇଛି।

ପୁରୁଣା ପୋଟସଡ଼ାମ୍ ସାମରିକ ବାହିନୀର ଲୀଳାଭୂମି ଥିଲା । ୧୯୪୫ରେ ୪୯୦ ବ୍ରିଟିଶ୍ ଏୟାରଫୋର୍ସ ବମ୍ବରଙ୍କ ଦ୍ୱାରା ସହରଟି ଧୂଳିସାତ ହୋଇଯାଇଥିଲା । ଏହାପରେ ରାଜପ୍ରାସାଦକୁ ଘେରିଥିବା ଐତିହାସିକ ସ୍ଥାନ ଓ ପୁରୁଣା ସହର ସ୍ୱାର ନିଶ୍ଚିହ୍ନ ହୋଇଗଲା ।

ପୋର୍ଟସଡ଼ାମ କନଫରେନ୍ସ ହଲ ବୁଲି ଦେଖିଲାବେଳେ ମୋ ଦେହ ଶିହରି ଉଠୁଥାଏ । କାନରେ ଦେଇ ଥାଉଁ ଫୋନ, ୧୦ଟି ରୁମ୍ ଯାହା ବିଶ୍ୱର ତତ୍କାଳୀନ ପ୍ରତାପଶାଳୀ ତିନି ରାଷ୍ଟ୍ର ମୁଖ୍ୟ ବ୍ୟବହାର କରୁଥିଲେ, ସେଗୁଡ଼ିକର ବ୍ୟବହାରିକ ତାତ୍ପର୍ଯ୍ୟ ଦୂରରେ ଥିବା ସିଡ଼ିରୁ ଶୁଣାଯାଉଥାଏ । କେଉଁ କୋଠରୀରେ ପ୍ରାତଃ ଭୋଜନ, ବିଶ୍ରାମ ମଧ୍ୟାହ୍ନ ଓ ରାତ୍ରି ଭୋଜନ, ଶୟନ ଅଧ୍ୟାପନା କରାଯାଉଥିଲା ତାର ଟିକିନିଖି ବିବରଣୀ ଶୁଣୁଥାଉଁ । ଆଲୋଚନା କକ୍ଷରେ ୧୦ /୧୨ ଟି ଚେୟାର୍ ଗୋଲାକାର ହୋଇପଡ଼ିଛି । ପୃଥିବୀ ଗୋଲ ତାର ନିର୍ଦ୍ଦିଷ୍ଟ ସୀମା ନାହିଁ । ପୃଥିବୀଘୁରି ବୁଲୁଛି, ସମୟ ସହ ତାଳ ଦେଇ ଘୁରି ବୁଲୁଛି ମାନବସମାଜର ପରିସ୍ଥିତି । ଏହି ଛୋଟ କୋଠରୀରେ ଭବିଷ୍ୟତ ଆନ୍ତର୍ଜାତୀୟ ସଂପର୍କର ଚକ ଘୁରାଇ ଦିଆଯାଇଥିଲା ଯାହା ଏ ପର୍ଯ୍ୟନ୍ତ ଅପରିବର୍ତ୍ତିତ ଅଛି । ଗୋଟିଏ କୋଠରୀ ବ୍ୟବହୃତ ହେଉଥିଲା ଲାଇବେରୀ ରୂପେ, ପ୍ରାୟ ୩୦୦ ପୁସ୍ତକ ଏପର୍ଯ୍ୟନ୍ତ ସୁରକ୍ଷିତ ଅଛି । ଶକ୍ତିର ଉତ୍ସ ଜ୍ଞାନ, ଜ୍ଞାନରୁ ଜାତ କଳ୍ପନା ମାନବ ସଭ୍ୟତାର ନିୟାମକ । ସାଧାରଣ, ପରିଷ୍କାର ପରିଚ୍ଛନ୍ନ ଆଭିଜାତ୍ୟବିହୀନ କକ୍ଷରେ କେତେ ସହଜ ସ୍ୱଚ୍ଛ କଲ୍ୟାଣକାରୀ ଚିନ୍ତା କରାଯାଇ ନଥିଲା । ସତ୍ୟ ନିର୍ମଳ ଶୁଭ୍ର ମଂଗଳଦାୟକ, ତିନି ରାଷ୍ଟ୍ରର ମୁଖ୍ୟ କ'ଣ ଥିଲେ ସତ୍ୟର ପୂଜାରୀ ?

ଆଲେକଜାଣ୍ଡାର ପ୍ଲାଜ୍ ନିକଟରେ ବିରାଟ ପ୍ରାନ୍ତରରେ ବିଶାଳ ବୃକ୍ଷରାଜି, ଛାୟାବୃତ ସ୍ଥାନରେ କାଠର ବେଞ୍ଚ, ସବୁଜ ଘାସର ଛନ ଛନ ଆସ୍ତରଣ, ମଧ୍ୟସ୍ଥଳରେ ଦୁଇଟି ପୂର୍ଣ୍ଣାବୟବ ବ୍ରୋଞ୍ଜମୂର୍ତ୍ତି, ଗୋଟିକରେ ଶ୍ମଶ୍ରୁ, ଅନ୍ୟଟିର ମସୃଣ ମୁଖ, କାନ୍ଧରେ କାନ୍ଧ ମିଳାଇ ଛିଡ଼ା ହୋଇଛନ୍ତି ଆଗନ୍ତୁକ ମାନଙ୍କୁ ଚେତାବନୀ ଦେଉଛନ୍ତି । Workers of the world unite you have nothing to lose but your chain, କାନରେ ମୋର ଗୁଞ୍ଜରି ଉଠିଲା କାଳଜୟୀ ଆହ୍ୱାନ । ଅତୀତର ଦୁଃଖଦ ନିର୍ମମ ସତ୍ୟ ଉପରେ ଭବିଷ୍ୟତର ସ୍ୱପ୍ନିଳ ଚିତ୍ର । ଦ୍ୱନ୍ଦ୍ୱ ଅପରିହାର୍ଯ୍ୟ ପରିବର୍ତ୍ତନ ଅବଧାରିତ । ମୁକ୍ତିର ପଥ ସଂଘର୍ଷରେ । ସତ୍ୟର ସଂଧାନ ମିଥ୍ୟାର ମୂଳୋତ୍ପାଟନରେ ହିଂସା ଯଦି ଅନିବାର୍ଯ୍ୟ ସ୍ୱାଗତମ, କାପୁରୁଷତା ସଦା ପରିତ୍ୟାଜ୍ୟ । ଗଭୀର ସତ୍ୟ ସଂଧାନୀ ଜ୍ଞାନର ଉଜ୍ଜ୍ୱଳ ଶିଖା, ଚିନ୍ତାର କଣିକା ବିଚ୍ଛୁରି ପଡୁଛି ଶ୍ମଶ୍ରୁ ଦେଇ, ଚିର ସାହଚର୍ଯ୍ୟ ଦେବାକୁ ପାଖରେ ଅନ୍ତରଂଗ ବଂଧୁ, ଧନାଢ୍ୟ ମାତ୍ର ମାନବିକତାରେ ପରିପୂର୍ଣ୍ଣ ମୂର୍ତ୍ତି ଦୁଇଟି କାହାର ଜାଣିବାକୁ ସମୟ ଲାଗେନା, ଶହ ଶହ ପରିବ୍ରାଜକଙ୍କ ମଥାନତ ହୁଏ ଦେଖିଲା ମାତ୍ରେ । କାର୍ଲମାର୍କ୍ସ ଓ ଏଙ୍ଗେଲସ୍ । ୧୪ ବର୍ଷର ତପସ୍ୟାରେ

ସିଦ୍ଧି ଲାଭ କରିଥିବା ବଂଧୁକୁ ସାଧନାରତ ରହିବାକୁ ଅଯାଚିତ ସାହାଯ୍ୟ କରିଥିଲେ ଏଙ୍ଗେଲସ୍, ରାମାୟାଣରେ ରାମ ଲକ୍ଷ୍ମଣ ଲବକୁଶ ନାମ ଯୋଡ଼ି ହୋଇରହିଲା ଭଳି ମାର୍କ୍ସ ଏଙ୍ଗେଲସଙ୍କ ନାମ ସଚେତନ ବିଶ୍ୱବାସୀଙ୍କ ନିକଟରେ ଅବିଚ୍ଛିନ୍ନ ହୋଇ ରହିଛି। ବିଂଶ ଶତାବ୍ଦୀରେ ପୁଞ୍ଜିବାଦୀ ଅର୍ଥନୀତିରେ ବୈପ୍ଳବିକ ପରିବର୍ତ୍ତନ ଆଣିବା ପାଇଁ ସମାଜବାଦର ଅବ୍ୟର୍ଥ ଅର୍ଥନୀତିବାର୍ତ୍ତା ପ୍ରଚାର କରିଥିବା ଦୁଇ ମନୀଷୀଙ୍କ ନିକଟରେ ଶହ ଶହ ଯାତ୍ରୀ ପ୍ରଣତି ଜଣାଇ ଦୁହିଁଙ୍କର ଫଟୋ ଉଠାଉଥାନ୍ତି। ମାର୍କ୍ସ ଏଙ୍ଗେଲସ୍‌ଙ୍କ ମୂର୍ତ୍ତିକୁ ଲାଗି ମୁଁ ଠିଆ ହେଲି। ପୁଅ ଅମର ଫଟୋ ଚୋଳିଲା। ଦ୍ୱିତୀୟ ସହସ୍ରାବ୍ଦୀର ଦୁଇ ଯୁଗାନ୍ତକାରୀ ଚିନ୍ତାନାୟକ ଡାରଉଇନ୍ ଓ କାର୍ଲମାର୍କ୍ସ। ଜଣେ ମାନବ ଜାତି ପ୍ରକୃତିର ବିବର୍ତ୍ତନବାଦ ବାନରରୁ ମାନବ ବ୍ୟାଖ୍ୟା କରି ଅମର, ଆଉ ଜଣେ ସମାଜବ୍ୟବସ୍ଥାର କ୍ରମ ପରିବର୍ତ୍ତନ ଓ ଅନ୍ତିମ ସର୍ବୋତ୍କୃଷ୍ଟ ବ୍ୟବସ୍ଥା ସାମ୍ୟବାଦୀ ସମାଜର ଅବଶ୍ୟମ୍ଭାବିତା ଲେଖି ଅମର।

ଅହିଂସା ବିପ୍ଳବର କର୍ଣ୍ଣଧାର ସତ୍ୟର ପୂଜାରୀ ଗାନ୍ଧିଜୀଙ୍କ ଦେଶର ମୁଁ ନାଗରିକ। ତଥାପି ବାସ୍ତବତା ପ୍ରତି ଆଖି ବୁଜି ଦେଇ ପାରେନା, ସମସ୍ୟାର ଆଶୁ ସମାଧାନ ପାଇଁ ଗରିବର ସଂଗଠିତ ଆନ୍ଦୋଳନ ଅନିବାର୍ଯ୍ୟ। ଲକ୍ଷ୍ୟ ଏକ ମୁକ୍ତି, ଉପାୟ ଭିନ୍ନ ହିଂସ୍ର, ଅହିଂସ, ଉଭୟରେ ମାନବିକତା ଅନ୍ତଃଫଲଗୁ ପ୍ରବାହିତ। ବିଗତ ଦୁଇ ଦଶନ୍ଧି ତଳର ଘଟଣାବଳୀ, ସୋଭିଏଟ୍ ୟୁନିଅନର ପତନ ଜଗତୀକରଣର ଖରସ୍ରୋତ ସମାଜବାଦ ପ୍ରତି ସାଧାରଣ ମଣିଷ ମନରେ ଅସ୍ପୃହା, ସଂଦେହ ଆଣି ଦେବା ସ୍ୱଭାବିକ । ସାମୟିକ କଳାବାଦଲ ଘୋଟିଲେ ମଧ୍ୟ ସୂର୍ଯ୍ୟର ଶୁଭ୍ର କିରଣର ପୁନରାବିର୍ଭାବ ଘଟିବ ଏଥିରେ ତିଳେମାତ୍ର ସଂଦେହ ନାହିଁ, ଜଟିଳ ତତ୍ତ୍ୱର ବ୍ୟାଖ୍ୟା କ୍ରିୟା ପ୍ରତିକ୍ରିୟା ଏଥିରୁ ଜାତ ନୂତନ ଆଶାବାଦୀ ପରିଣାମ କିଏ ଖଣ୍ଡନ କରିପାରିବ? ଏକ ସର୍ବୋତ୍ତମ ସର୍ବକଲ୍ୟାଣମୟୀ ବ୍ୟବସ୍ଥାର ସଂଧାନରେ ମଣିଷଣ ଅବିରତ ପ୍ରଚେଷ୍ଟାର ପ୍ରେରଣାଦାତା ଦୁଇ ମନୀଷୀଙ୍କ ନିକଟରେ ଛିଡ଼ା ହୋଇ ମୁଁ କେତେ କଥା ଭାବିଗଲି, ମୋ ରାଜ୍ୟ, ମୋ ଦେଶର ଦୁରବସ୍ଥା, ପ୍ରଗତି ପାଇଁ ପରିକଳ୍ପନା, ସାଧାରଣ ମଣିଷର କର୍ତ୍ତବ୍ୟ - ବ୍ୟକ୍ତିସ୍ୱାର୍ଥ ଜଳାଞ୍ଜଳିରେ ସାମୂହିକ ସ୍ୱାର୍ଥସିଦ୍ଧି - ଏହି ଅକାଟ୍ୟ ସତ୍ୟ, ବୁଦ୍ଧଙ୍କଠାରୁ ଯିଶୁଖ୍ରୀଷ୍ଟ, କାର୍ଲମାର୍କ୍ସ, ମହାତ୍ମାଗାନ୍ଧୀ ପ୍ରଚାର କରିଆସିଛନ୍ତି। ସତ୍ୟର ଆଲୋକର ଉଦ୍‌ଭାସିତ ହୋଇଛି ମଣିଷ, ସତ୍ୟକୁ ଧରି ରଖିପାରେନା ସବୁ ସମୟ ପାଇଁ ସବୁ ମଣିଷ - ବାଦଲ ଆସେ ଅନ୍ଧାର ଘୋଟେ, ସୂର୍ଯ୍ୟ ନିଶ୍ଚୟ ଉଇଁବ, ଜହ୍ନ ଆଲୁଅ ବିଛୁରି ପଡ଼ିବ। ଆତ୍ମପ୍ରତ୍ୟୟ, ବିଶ୍ୱାସ, ଧୈର୍ଯ୍ୟ ସହ ଉଦ୍ୟମ ମୁକ୍ତିର ପାଥେୟ।

କିଛି ବର୍ଷ ତଳେ କ୍ରାନ୍ତିପଥର ଯାତ୍ରୀ ବହି ଲେଖିଲାବେଳେ ବିପ୍ଳବୀଙ୍କ ଜୀବନୀଗାଥା ପଢୁ ପଢୁ ମୋର ରୋମଟାଙ୍କୁରି ଉଠୁଥିଲା। ଜୀବନରେ ପ୍ରଶାନ୍ତି ଲାଭ ମହାନ୍ ବିପ୍ଳବୀଙ୍କ

ଜନ୍ମମାଟିରେ ପାଦ ଦେଇ ବିସ୍ମୟ, ଏହି ମାଟି ଜନ୍ମ ଦେଇଥିଲା ବିଶ୍ୱର ଶକ୍ତିକାମୀ ମାର୍କ୍ସ ଏଙ୍ଗେଲ୍ସ ଜନ୍ମ ଦେଇଥିଲା ମଧ୍ୟ ନିର୍ମମ ବର୍ବର ଅଦ୍ୱିତୀୟ ମଣିଷ ଏଡ଼ୋଲଫ୍ ହିଟଲର। ବାସ୍ତବତା ସତେ ଚୂଡ଼ାନ୍ତ କଳ୍ପନା !!

## ମେଟ୍ରୋ ରେଲ୍

ଶୁଣିଥିଲି ଇଂଲାଣ୍ଡରେ ମାଟି ତଳେ ରେଳ ଚଲେ। ବିଶ୍ୱାସ ହେଉ ନଥିଲା ବିସ୍ମୟକର ମନେହୁଏ ମାଇଲ୍ ମାଇଲ୍ ଧରି ଧରାପୃଷ୍ଠ ତଳେ ମାଟିକାଟି ରେଳରାସ୍ତା କିମିତି ତିଆରି କରନ୍ତି, ତା'ଉପରେ ଦ୍ରୁତଗତିରେ ଶହ ଶହ ଲୋକଙ୍କୁ ନେଇ ବିରାଟ ରେଳଗାଡ଼ି ଚଲେ, ମାଟି ଧସି ପଡ଼େନା? ପଡ଼ିଲେ କି ସାଂଘାତିକ ବିପର୍ଯ୍ୟୟ ନ ହେବ? ମଣିଷର ବୁଦ୍ଧି କୌଶଳ କେତେ ଯେ ଅଗ୍ରଗତି କଲାଣି ବିଜ୍ଞାନ ସଂବନ୍ଧରେ ଧାରଣା ନଥିବା ଲୋକ ଭାବିପାରିବ ନାହିଁ। ମୋ ଭଳି ସାହିତ୍ୟ ଓ ସମାଜର ପୁରୁଷନାରୀ ପରିବାର କି ଜୀବନ ସଂବନ୍ଧରେ କିଞ୍ଚିତ ଜ୍ଞାନ ଲାଭ କରିଥିବା ଲୋକ ପକ୍ଷେ ଏସବୁ ପ୍ରହେଳିକା ପରି ମନେହୁଏ।

ହଁ ବର୍ଲିନ ସହରରୁ ସେ ଦିନ ସଂଧ୍ୟାରେ ସହରତଳି ଅଞ୍ଚଳରେ ଥିବା ଆମ ଆଶ୍ରୟସ୍ଥଳ, ହୋଟେଲକୁ ଆସିବାକୁ ପଡ଼ିଲା। ଟୁରିଷ୍ଟ ବାସକୁ ଅପେକ୍ଷା କଲେ ରାତି ୧୨ଟା ପର୍ଯ୍ୟନ୍ତ ରହିବାକୁ ହେବ। ତେଣୁ ବାସକୁ ବିଦାୟ ଦେଇ ଆମେ ଚାରିଜଣ ମୋଟ୍ରୋରେଳରେ ପ୍ରାୟ ୧୦ ମାଇଲ ଦୂରକୁ ଆସିଲୁ। ରେଳଗାଡ଼ି କେତେବେଳେ ପହଞ୍ଚିବ କେତେ ସମୟ ରହିବ ସବୁ ବିଜ୍ଞାପିତ, ସେହି ଅନୁସାରେ ପ୍ରସ୍ତୁତ ହେବାକୁ ପଡ଼ିବ, ଷ୍ଟେସନ୍‌ରେ ପହଞ୍ଚିଲାକ୍ଷଣି ଆପଣାଛାଏଁ ଖୋଲିଯାଏ, ପ୍ରସ୍ଥାନ ସମୟ ହେଲେ ଆପଣାଛାଏଁ ବନ୍ଦ ହୋଇଯାଏ, ସବୁ ଇଲେକ୍ଟ୍ରିକ୍ ଦ୍ୱାରା ପରିଚାଳିତ। ଶୀତ ତାପ ନିୟନ୍ତ୍ରିତ ଡବା ଆଭିଜାତ୍ୟପୂର୍ଣ୍ଣ ସୁନ୍ଦର ସୁଶୋଭନୀୟ। ଦରଜା ଝରକା ବନ୍ଦ, ତେବେ ଷ୍ଟେସନ ନାମ ରେଳଲାଇନ୍ ଦୁଇକଡ଼େ ପ୍ଲାଟ୍‌ଫର୍ମ କାନ୍ଥରେ ଲେଖା ହୋଇଥାଏ। କାଚ ଝରକା ଦେଇ ରେଳଡବା ଭିତରୁ ଷ୍ଟେସନ୍‌ର ନାମ ଜାଣିପାରିବ, ପୂର୍ବରୁ ଜଣାଥାଏ, କେଉଁ ଷ୍ଟେସନ୍‌ରେ ଗାଡ଼ି ଟି କେତେବେଳେ ପହଞ୍ଚିବ। ତୁମେ ଘଡ଼ିକୁ ଦେଖି ତୁମର ଗନ୍ତବ୍ୟ ସ୍ଥାନରେ ଓହ୍ଲାଇବାକୁ ପ୍ରସ୍ତୁତ ହେବ।

ଏଠାକାର ରେଳର ସିଟ୍ ଗୁଡ଼ିକ ଆରାମଦାୟକ, ବେଶ୍ ଛଡ଼ାଛଡ଼ା। ଆମ ଦେଶ ଭଳି ଯାତ୍ରୀମାନେ ଖୁନ୍ଦା ଖୁନ୍ଦି ହେବା ଦୃଶ୍ୟ ବିରଳ। ଭୂମି ଉପରର ରେଳଗାଡ଼ିଗୁଡ଼ିକ ମଧ୍ୟ ବେଶ ସୁନ୍ଦର ଆରାମଦାୟକ। ଆମଷ୍ଟାରଡ଼ାମ୍‌ରୁ ଟିଲବର୍ଗ ସହରକୁ ଥରେ ଫେରିଥିଲୁ ରେଳଗାଡ଼ି ଯୋଗେ। ଆଭିଜାତ୍ୟପୂର୍ଣ୍ଣ ଡ୍ରଇଂରୁମ୍‌ର ଚେୟାର ଭଳି ରେଳଗାଡ଼ିସିଟ୍ କେତେ ମୁଲାୟମ ଉପଭୋଗ୍ୟ - ସମୃଦ୍ଧିରେ ସଂକେତ।

# ଲଣ୍ଡନ ଯାତ୍ରା

Pussy Cat, Pussy Cat, Where have you been
I have been to London to look at the queen.



ରାତିରେ ଲଣ୍ଡନ ସହର

ପିଲାବେଳେ ପ୍ରଥମେ ଇଂରାଜୀ ଶିଖିଲା ବେଳୁ ଏହି ପଦଟି ମନେରହିଯାଇଛି। ବ୍ରିଟେନ୍‌ର ରାଣୀ ଥିଲେ ଭାରତର ସର୍ବମୟ କର୍ତ୍ତ୍ରୀ। ଦ୍ୱିତୀୟ ମହାଯୁଦ୍ଧ ପୂର୍ବେ ବ୍ରିଟେନ୍ ସମଗ୍ର ପୃଥିବୀରେ ଏକ ଶ୍ରେଷ୍ଠଶକ୍ତିଶାଳୀ ରାଷ୍ଟ୍ର ଥିଲା, ତାର ସାମ୍ରାଜ୍ୟ ବ୍ୟାପି ଥିଲା ଭାରତ ସମେତ ବହୁ ଦେଶରେ। ତେଣୁ ଆମର କବିମାନେ ବ୍ରିଟେନ୍‌ର ସୌର୍ଯ୍ୟ ବୀର୍ଯ୍ୟକୁ ପ୍ରଶଂସା କରି ଗୀତ ରଚନା କରୁଥିଲେ। ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ବ୍ରିଟିଶ ସମ୍ରାଟଙ୍କୁ ପ୍ରଶଂସା କରି କାଳେ ଲେଖିଥିଲେ ଏକ ଉଚ୍ଚାଙ୍ଗ ଗୀତ।

ସେହି ବ୍ରିଟେନ୍‌ର ରାଜଧାନୀ ଲଣ୍ଡନ। ଆଧୁନିକ ଭାରତର ସଂଭ୍ରାନ୍ତ ବଂଶର ଲୋକଙ୍କ ପିଲାମାନେ ଲଣ୍ଡନ ଯାତ୍ରା କରୁଥିଲେ ଉଚ୍ଚଶିକ୍ଷା ପାଇଁ। ମୋ ରାଜ୍ୟ ଓଡ଼ିଶାର


ଲଣ୍ଡନର କୁଇନ୍‌ସ ପେଲେସ୍ ନିକଟରେ ଲେଖକ

ଭାଗ୍ୟ ନିର୍ମାତା ମଧୁସୂଦନ ଦାସ ପ୍ରଥମେ ଲଣ୍ଡନଯାତ୍ରା କରି, ବ୍ରିଟିସ ଶାସକଙ୍କର ଅନୁଗ୍ରହ ଲାଭ କରି, ଓଡ଼ିଶାକୁ ସ୍ୱତନ୍ତ୍ର ରାଜ୍ୟରେ ପରିଣତ କରିଥିଲେ। ଶହ ଶହ ବର୍ଷର ବ୍ରିଟିଶ ଶାସନ ଭାରତ ଉପରେ ଯେଉଁ ପ୍ରଭାବ ପକାଇଛି ତାର ମୂଲ୍ୟାୟନ ବିତର୍କର ବିସ୍ତୃତ ଭୂମି ସୃଷ୍ଟି କରିଛି। ସେ ବିତର୍କ ଯେତିକି ଚିତ୍ତାକର୍ଷକ ସେତିକି ଆତ୍ମନିରୀକ୍ଷଣକାରକ। ଅଷ୍ଟାଦଶ ଶତାବ୍ଦୀର ନବଜାଗରଣ ଆଧୁନିକ ବିଜ୍ଞାନ, ଦର୍ଶନ ଚିନ୍ତାଧାରା ଓ ଶିଳ୍ପବିକାଶର କର୍ଣ୍ଣଧାର ବ୍ରିଶଟ୍ ସାମ୍ରାଜ୍ୟ ପ୍ରସାରର ଲିପ୍ସା ନେଇ ନାନା ଦେଶକୁ ଶୋଷଣ କରିଥିବାରୁ କଟୁ ସମାଲୋଚନା ଓ ନିନ୍ଦା ଅର୍ଜନ କରିଥିଲେ ହେଁ ସାରା ବିଶ୍ୱରେ ଯେ ନୂତନ ସାଂସ୍କୃତିକ, ସାମାଜିକ, ଶିକ୍ଷାଗତ ବିପ୍ଳବ ଆଣିଦେଇଛି ଏଥିରେ ଦ୍ୱିମତ ନାହିଁ। ସେହି ଦେଶର ରାଜଧାନୀ ଇତିହାସ ପ୍ରସିଦ୍ଧ ଲଣ୍ଡନ ସହର ଦେଖିବା ପାଇଁ ମନରେ ଥିଲା ପ୍ରବଳ ଆଗ୍ରହ। ପୁଅ ପାଖକୁ ଆସି ଏଠାରୁ ଭିସା କରି ଲଣ୍ଡନ ଯିବାର କଷ୍ଟ ଓ ଅନିଶ୍ଚିତତାର ସମ୍ମୁଖୀନ ହେବାକୁ ପଡ଼ିଥିଲା। ସୌଭାଗ୍ୟବଶତଃ ଠିକ୍ ସମୟରେ ହଲାଣ୍ଡରୁ ଭାରତ ପ୍ରତ୍ୟାବର୍ତ୍ତନ କରିବା ପୂର୍ବରୁ ଲଣ୍ଡନ ଯିବାକୁ ଅନୁମତି ମିଳିଗଲା।

## ଜଳଜାହାଜ ଯାତ୍ରାର ଶିହରଣ

ଷୋଡ଼ଶ ଶତାବ୍ଦୀର ଆରମ୍ଭରେ ପ୍ରଥମେ ଭାସ୍କୋଡ଼ାଗାମା ଜଳଜାହାଜରେ ଯାତ୍ରା କରି ଭାରତରେ ପଦାର୍ପଣ କରିଥିଲେ। ମୋତେ ମୋର ଯାତ୍ରାରେ ସେହି ଜଳଜାହଜର ସାହାଯ୍ୟ ନେବାକୁ ପଡ଼ିଥିଲା। ହଲାଣ୍ଡର ଟିଲ୍‌ବର୍ଗରୁ ବାସରେ ସ୍ଥଳ ପଥରେ ପ୍ରାୟ ଦେଢ଼ଘଣ୍ଟା ହଲାଣ୍ଡ ଭୂମିରେ ଯାତ୍ରା କରି ଫ୍ରାନ୍ସ ଭୂଖଣ୍ଡରେ ୩ ଘଣ୍ଟା କାଳ ବସ୍‌ରେ ଗଲୁଁ White clieff ପୋର୍ଟକୁ। ପୋର୍ଟଠାରେ ବ୍ରିଟେନ୍‌ର ଅଫିସରଙ୍କ ଦ୍ୱାରା Security ଚେକ୍ କରାଗଲା ପରେ ପ୍ରାୟଦିନ ୩ଟାରେ ଜାହାଜ ଆରୋହଣ କଲୁଁ। ପୋର୍ଟ ନିକଟରେ ଥଣ୍ଡା ପବନ ଦେହ ଥରେଇ ଦେଉଥାଏ। ବିରାଟ ଜାହାଜ। ଯେଉଁ ଟୁରିଷ୍ଟ ବସ୍‌ରେ ଯାଇଥିଲୁଁ ସେ ବସ୍‌ଟି ମଧ୍ୟ ଜାହାଜରେ ନିଆଗଲା। ଜାହାଜରେ ଦୁଇଟି ତାଲା, ବସ୍ କାରତ ତଳତାଲାରେ ରହିଲା। ଆମେ ସିଡ଼ିରେ ଉପର ତାଲାକୁ ଯାଇ ନିଜର ଇଚ୍ଛାନୁସାରେ ବସିଲୁଁ। ଜାହାଜ ଭିତରେ ମନୋହରୀ ଦୋକାନ, ରେଷ୍ଟୁରାଣ୍ଟ, ବହିପତ୍ର ସୌଖୀନ ଦ୍ରବ୍ୟ କିଣାବିକାର ବ୍ୟବସ୍ଥା ରହିଛି। ସତେ ଯେମିତି ଏକ ବିରାଟ ସୁପରମାର୍କେଟ୍। ଝରକା ପାଖକୁ ଲାଗି ଲାଉଞ୍ଜର ଗୋଟିଏ ସୋଫାରେ ବସି ସମୁଦ୍ରର ନୀଳଜଳକୁ ଲକ୍ଷ୍ୟ କଲି। ପବନ ଦେଉଥିବାରୁ ଜାହାଜଟି ସାମାନ୍ୟ ହଲ୍‌ଚଲ ହେଉଥାଏ। ହଲଚଲ ସମୟରେ ବାନ୍ତି, ବାନ୍ତି ଲାଗୁଥାଏ। ଏହାକୁ ବୋଧହୁଏ Sea sickness କହନ୍ତି। ମୁଁ ଭାବି ଚାଲିଲି,



ଲଣ୍ଡନର ସମୁଦ୍ର ପ୍ରବେଶ ପଥ

କିମିତି ପୂର୍ବେ ଆମର ପ୍ରଫେସରମାନେ ଲଣ୍ଡନ ଆମେରିକାକୁ ମାସ କାଳ ଜାହାଜରେ ବସି ଯାଉଥିଲେ। ସମ୍ଭବତଃ କିଛିଦିନ ସମୁଦ୍ର ବକ୍ଷରେ ରହିଗଲେ ତା'ପ୍ରତି ଏକ ଶ୍ରଦ୍ଧା ଜାତ ହୁଏ। ମାଟିକୁ ଭଲ ପାଇଲା ପରି ବିସ୍ତୀର୍ଣ୍ଣ ଜଳରାଶିକୁ ଭଲ ପାଇବସନ୍ତି। ପାଖରେ ଝିଅ ଦୁଇଟି ବସିଥିଲେ, ବେଶ୍ ହସଖୁସିରେ କଥାବାର୍ତ୍ତା ହୋଇ ଜଣକ ପିଠି ଉପରେ ଆଉଜଣେ ମୁଣ୍ଡ ଥୋଇ ଶୋଇ ପଡ଼ିଲେ। ଚିନ୍ତାଦର୍ଶ ମନରୁ ଦୂର କଲେ ସବୁ ପ୍ରିୟ ହୋଇଯାଏ।

ପ୍ରାୟ ଏକଘଣ୍ଟା ୪୫ ମିନିଟ୍ ପରେ ଡୋଭରପୋର୍ଟରେ ଜାହାଜ କୂଳ ଛୁଇଁଲା। ବସ୍ ଚଢ଼ି ସେଠାରୁ ଲଣ୍ଡନ ସହରକୁ ଯାତ୍ରା କଲୁଁ। ସେଠାରୁ ୬୨ ମାଇଲ ଦୂର ଲଣ୍ଡନ ସହର। ଦୁଇ ପାଖରେ ବିସ୍ତୀର୍ଣ୍ଣ ଚାଷ ଜମି, ଘର ବିଶେଷ ଦେଖାଯାଉନଥାଏ। ମନେହୁଏ ଏଠାରେ ବୃହତ୍ ଚାଷୀ କେବଳ ଅଛନ୍ତି। Capitalist farming, ଯନ୍ତ୍ର ସାହାଯ୍ୟରେ ଚାଷର ସବୁ କାମ ହୁଏ। ଲଣ୍ଡନ ସହର ଉପକଣ୍ଠରେ ପୁରୁଣା ଇଂରାଜୀ ଶୈଳୀର ଚରିକୋଣିଆ ଗୋଟି ଗୋଟିକିଆ ଘର ଦେଖିବାକୁ ମିଳିଲା। Cottage ଟାଇପର, ବେଶ ସୁନ୍ଦର ଦିଶୁଥାଏ। ଘରକୁ ଘେରି ଗଛ ସାମ୍ନାରେ ଲନ୍। ମନେପଡ଼ିଯାଉଥାଏ ଥମାସ ହାର୍ଡ଼ିଙ୍କ କାଉଁଟି ବର୍ଣ୍ଣନା ପ୍ରେମ କାହାଣୀ, ଡିଏଚ ଲରେନ୍ସ ଙ୍କ ଶୀପ, ପ୍ରଥମ ଯୁଦ୍ଧ କାଳରେ ତରୁଣୀମାନେ ଟ୍ରାମଚଳେଇ ରାତିରେ ଗାଁକୁ ଫେରିବା ଓ ତାଙ୍କୁ ଅନୁସରଣ କରି ଆସୁଥିବା ତରୁଣଙ୍କ ପ୍ରେମ ନିବେଦନ। ସମାଜରେ ବେରନ୍‌ଙ୍କ ସୁପ୍ରଭାବ। ଆମର ଜମିଦାରମାନେ ସେରି ହେବାର ଆଶା ଓ ଆଶାଭଙ୍ଗ। ଇତିହାସ ଯୋଡ଼ି ଦେଉଥାଏ ମୋର ହୃଦୟଭୂମି। ଭୂମି ଇଂଲାଣ୍ଡ ସହିତ ଶିଳ୍ପବିପ୍ଲବର ଭୂମି।

# ବ୍ରିଟେନ୍

"ସୁନୀଳ ସାଗରେ ରାଜେ ଶ୍ୱେତଦ୍ୱୀପ ଅଜେୟ ଜଗତେ ନାମ ବ୍ରିଟାନୀୟା
ପ୍ରାଚୀର ଯାହାର ନୀଳ ପାରାବର। ଅଖିଳ ଅବନୀ ମଧ୍ୟେ ମାନନୀୟ।"

କବିବର ରାଧାନାଥ ରାୟ

ଅତୀତର ସେ ସୁଖ୍ୟାତି ଏବେ ନାହିଁ। ଅତୀତର ସେ ଖ୍ୟାତିମ୍ଳାନ ହୋଇଛି। ଜାଜ୍ୱଲ୍ୟମାନ ହୋଇରହିଛି ସେ ଗୌରବମୟ ଇତିହାସ।

ଦୁଇଲକ୍ଷ ଋଳିଶ ହଜାର ବର୍ଗ କିଲୋମିଟର କ୍ଷେତ୍ର ଓ ଛ କୋଟି ଲୋକ ବିଶିଷ୍ଟ ବ୍ରିଟେନ୍ ଆଧୁନିକ ବିଶ୍ୱରେ ଅତି ସୁପ୍ରସିଦ୍ଧ ଗୌରବମୟ ଦେଶ। ବ୍ରିଟେନକୁ ପ୍ରଥମ ଭ୍ରମଣକାରୀ ଆଶା କରୁଥିଲା ପ୍ରତିରାସ୍ତା ଛକରେ ଦୋତାଲା ବସ୍ ଓ ଲାଲରଙ୍ଗର ଟେଲିଫୋନ ଦେଖିବାକୁ ପାଇବ। ମାତ୍ର ଏବେ ତାହା ବଦଳି ଗଲାଣି, ଦୋତାଲା ବସ୍ ଉଠିଗଲାଣି, ଲାଲ ରଂଗ ସ୍ଥାନରେ ଧୂସର ରଂଗର ଟେଲିଫୋନ୍ ଦେଖିବାକୁ ମିଳିଛି। ତଥାପି ମହାନଗରୀ ତାର ଅତୀତ ଐଶ୍ୱର୍ଯ୍ୟକୁ ଜଳାଞ୍ଜଳି ଦେଇନି। ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଇଂଲାଣ୍ଡର ବିଶ୍ୱ ବିଖ୍ୟାତ ଶିକ୍ଷାନୁଷ୍ଠାନ, କ୍ରମଶଃ ବୃଦ୍ଧି ଲାଭ କରିଛି, ସହରର ବିଭିନ୍ନ ସ୍ଥାନରେ ପୁରାତନ ଚର୍ଚ୍ଚ, ସ୍କଟ୍ଲାଣ୍ଡର ଉଚ୍ଚଭୂମି ହ୍ରଦ ଏବଂ ବଜାର ଛକ ଅତୀତର ସ୍ମୃତି ଉଦ୍ଦୀପନା ଜାତ କରୁଛି।

ଇତିହାସ କହେ ଖ୍ରୀଷ୍ଟ ଜନ୍ମର ପ୍ରାୟ ୪୦୦୦ ବର୍ଷ ପୂର୍ବେ ବ୍ରିଟେନ୍ ଯେତେବେଳେ ନିସ୍ତବ୍ଧ ଅଚେତ ଅବସ୍ଥାରେ ଥିଲା ସେତେବେଳେ ଦଳେ ପଥର ଅସ୍ତ୍ରଧାରୀ ବନ୍ୟ ମନୁଷ୍ୟ ଏଠାରେ ପହଞ୍ଚିଲେ। ତାର ସ୍ମୃତି ଧରି ରଖିଛି ମୋଟ ହେଞ୍ଜ Stonehenge ଏ ଭାବେରୀ ଏବଂ ଓର୍କାନୀ (Orkney) ଦ୍ୱୀପ ଖ୍ରୀଷ୍ଟାବ୍ଦ ୪୩ରେ ରୋମାନମାନେ ଇଂଲାଣ୍ଡ ଓ ୧୨୨ରେ ସ୍କଟ୍ଲାଣ୍ଡ ଦଖଲ କରି ଉତ୍ତରରେ ବର୍ବର ଜାତିଙ୍କ ପଥରୋଧ କରିବା ପାଇଁ ହାଡ୍ରିୟାନସ ପ୍ରାଚୀର ନିର୍ମାଣ କରିଥିଲେ। ୪୧ ଖ୍ରୀଷ୍ଟାବ୍ଦରେ ରୋମାନମାନଙ୍କୁ ବିତାଡ଼ିତ କରି ସ୍ଥାନୀୟ ଆଦିବାସୀମାନେ, ଏଙ୍ଗ୍ଲୋସାକ୍ସନ ମାନେ, ଶାସନ କଲେ। ୧୦୦୦ ଖ୍ରୀଷ୍ଟାବ୍ଦ ପରେ ଏହି ଏଙ୍ଗେଲସ୍‌ମାନେ ନିଜକୁ ଇଙ୍ଗ୍ଲିସ୍ ରୂପେ ପରିଚିତ କରାଇଥିଲେ। ୱେଲସ୍ ଏବଂ ସ୍କଟସ ସ୍ୱତନ୍ତ୍ର ଅଞ୍ଚଳ ଥିଲା। ଏହି ଦ୍ୱୀପକୁ ଡେନିସ୍ ଓ ନରୱେରି ଭିଙ୍କିସ୍‌ମାନେ ଆକ୍ରମଣ କରି ବିସ୍ତୃତ ଅଂଚଳ ଦଖଲ କରି ନେଲେ। ୧୦୬୬ରେ ନର୍ମାଣ୍ଡିର୍ ଉଲିଲିଆମ୍ ଡ୍ୟୁକ୍ Willam Duke ଫ୍ରାନ୍ସରୁ ଆସି ହେରୋଲ୍ଡ (Harold) କୁ ହେଷ୍ଟିଙ୍ଗସ ଯୁଦ୍ଧରେ Battle of Hastings ପରାସ୍ତ କରି ରୋମାନଙ୍କ ଭଳି ପ୍ରଭାବଶାଳୀ ନର୍ମାନ ଶାସନ ପ୍ରବର୍ତ୍ତନ କଲେ। ସ୍କଟଲାଣ୍ଡ ସ୍ୱାଧୀନ ଥିଲା, ମାତ୍ର ୧୨୨୬ ମସିହାରେ ଇଂରାଜାମାନଙ୍କ ଆକ୍ରମଣ

ପରେ ରବର୍ଟ ବ୍ରୁସ୍ ସ୍କୁଟଲାଣ୍ଡ ରାଜା ହେଲେ-୧୫୩୬ ଓ ୪୩ ଭିତରେ ଓ୍ୱେଲସ୍ ଇଂଲାଣ୍ଡ ଅନ୍ତର୍ଭୁକ୍ତ ହେଲା। ୧୬ଶ ଶତାବ୍ଦୀରେ ସ୍କଟଲାଣ୍ଡ ସ୍ୱାଧୀନ ଦେଶ ରୂପେ କାର୍ଯ୍ୟ କରୁଥିଲା, ୧୬୦୩ରେ ରାଣୀ ଏଲିଜାବେଥ୍ ପ୍ରଥମ ନିଃସନ୍ତାନ ରୂପେ ମୃତ୍ୟୁବରଣ କରିବାରୁ ମେରୀଷ୍ଟୁଆର୍ଟ (Mary Stuart) ଙ୍କ ପୁତ୍ର ସ୍କଟଲାଣ୍ଡ ଓ ଇଂଲାଣ୍ଡକୁ ଏକତ୍ରିତ କଲେ ଏବଂ James of England ରୂପେ ପରିଚିତ ହେଲେ। ୧୭୮୭ରେ ସ୍କଟଲାଣ୍ଡର ପାର୍ଲାମେଣ୍ଟ ଇଂଲାଣ୍ଡର ପାର୍ଲାମେଣ୍ଟ ସହ ମିଶିଗଲା। ୧୭୪୬ରେ Battle of Culltoden ପରେ ବିଷମ ସମସ୍ୟା ସୃଷ୍ଟିକାରୀ ଜାତିକୁ ହାଇଣ୍ଡ ପୋଷାକ ପିନ୍ଧିବାକୁ ନିଷେଧ କରି ପୁରୁଣା ଗ୍ରାମଗୁଡ଼ିକ ଧ୍ୱଂସ କରି ମେଣ୍ଢାପାଳନ ରେ ନିୟୋଜିତ କରାଗଲା।

ବ୍ରିଟେନ୍‌ରେ ଧର୍ମୀୟ ଦ୍ୱନ୍ଦ୍ୱ ହୋଇଛି ବିରାଟ ସମସ୍ୟା। ୧୫୩୬ ରେ ଯେତେବେଳେ ଅଷ୍ଟମ ହେନରୀ ପ୍ରଥମ ସ୍ତ୍ରୀଙ୍କୁ ଛାଡ଼ପତ୍ର ଦେବାକୁ ଚାହିଁଲେ ତାହା ଧର୍ମୀୟ ବିବାଦ ସୃଷ୍ଟି କରି ୧୬୪୨ରେ ଗୃହଯୁଦ୍ଧର କାରଣ ହେଲା, ଗୃହଯୁଦ୍ଧ ସଂଘଟନକାରୀ King Chartesj ଙ୍କୁ ପାର୍ଲାମେଣ୍ଟରେ ଫାସି ଦେଇ Oliver Cornwell ଙ୍କୁ ଶାସକ ରୂପେ ନିର୍ବାଚିତ କରାଗଲା। ୧୬୬୯ରେ ତାଙ୍କର ମୃତ୍ୟୁ ପରେ ରାଜସିଂହାସନର ପୁନରୁତ୍ଥାନ କରାଗଲା। ଅଷ୍ଟାଦଶ ଶତାବ୍ଦୀରେ ପାର୍ଲାମେଣ୍ଟ ସର୍ବକ୍ଷମତାମୟ ହୋଇଥିଲା, ରାଜସିଂହାସନ ଥିଲା ଏକ ଅନୁଷ୍ଠାନ ମାତ୍ର। ଉନବିଂଶ ଶତାବ୍ଦୀ ଆରମ୍ଭ ବେଳକୁ ଶିଳ୍ପବିପ୍ଳବ ଘଟିଲା ଏବଂ ଅନେକ ସ୍କଟିସ ଧନୀ ପୁଞ୍ଜିପତି ପାଲଟିଗଲେ। ବ୍ରିଟେନ୍‌ର ଇତିହାସ ବିଂଶ ଶତାବ୍ଦୀରେ ରଂଜିତ ହୋଇଥିଲା। ଯୁଦ୍ଧବିଗ୍ରହର ପତନ ମାତ୍ର ସଂସ୍କୃତି ଓ ଅର୍ଥନୀତିର ପୁନର୍ବିକାଶରେ ସାମ୍ରାଜ୍ୟ ଦୁଇଟି ବିଶ୍ୱଯୁଦ୍ଧରେ ପ୍ରପୀଡ଼ିତ ଧ୍ୱସ୍ତ ବିଟ୍ରେନ୍ ବୀରତ୍ୱର ସହ ୧୯୪୦ରେ ତିନିମାସ ବ୍ୟାପୀ ଆକାଶ ଯୁଦ୍ଧର ସମ୍ମୁଖୀନ ହୋଇ ସୁନାମ ଅର୍ଜନ କରିଥିଲା। ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପୃଥିବୀର ବିଭିନ୍ନ ଅଞ୍ଚଳରେ ଥିବା ବ୍ରିଟେନ୍‌ର ଉପନିବେଶ ସ୍ୱାଧୀନତା ଲାଭ କଲେ ଏବଂ ବ୍ରିଟେନ୍‌ର ଶିଳ୍ପର ଅବକ୍ଷୟ ଘଟିଲା।

୧୯୯୦ ବେଳକୁ ବ୍ରିଟେନ୍‌ର ପୁନରୁତ୍ଥାନ ଦୃଷ୍ଟିଗୋଚର ହେଲା। ଯୁକ୍ତରାଷ୍ଟ୍ର ଆମେରିକା ସହ ଏହାର ସଂପର୍କ ଆଫଗାନିସ୍ତାନ ଓ ଇରାକ ଯୁଦ୍ଧରେ ଏହାର ଅଂଶଗ୍ରହଣ ଏହାର ଗୁରୁତ୍ୱ ପ୍ରତିପାଦନ କରେ। ମାତ୍ର ବ୍ରିଟେନ୍‌ର ଜନସାଧାରଣ ଏହି ଯୁଦ୍ଧରେ ଅଂଶଗ୍ରହଣ ବିରୁଦ୍ଧରେ ୨୦୦୫ରେ ପ୍ରବଳ ସ୍ୱର ଉତ୍ତୋଳନ କରିଥିଲେ।

ଛୋଟ ଦେଶଟିଏ, ମାତ୍ର ବିଭିନ୍ନତା ସତେଜ ପାଞ୍ଚ ମାଇଲ୍ ରାସ୍ତା ଚାଲିଲେ ଏହି ବିଭିନ୍ନତା ଅନୁଭବ କରିହୁଏ। ୪ ଗୋଟି ଅଞ୍ଚଳର ଭାଷା ଓ ଉଚ୍ଚାରଣ ଅନ୍ୟ ଅଞ୍ଚଳ ସହଜରେ ବୁଝିପାରନ୍ତି ନାହିଁ। ଏ ପାର୍ଥକ୍ୟ ବଂଧୁତାର ସହ ଗ୍ରହଣ କରି ନେଇଛନ୍ତି। ତେବେ ଓ୍ୱେଲସ୍ ଓ ସ୍କଟ୍‌ଲାଣ୍ଡର ଲୋକଙ୍କ ଅସ୍ମିତା ସଦାଜାଗ୍ରତ। ସେମାନଙ୍କୁ ଇଂଗ୍ଲିସ ବୋଲି ସଂବୋଧନ କଲେ ସେମାନେ ଖୁସି ହେବେନି ।

ବ୍ରିଟେନ୍‌ର ୭୦ ପ୍ରତିଶତ ଲୋକ ଖ୍ରୀଷ୍ଟାନ। ୩ ପ୍ରତିଶତ ଲୋକ ଧର୍ମ ସଂପ୍ରଦାୟଭୁକ୍ତ ନୁହଁନ୍ତି, ସେମାନେ agnostcs, atheists heathen, ଈଶ୍ୱର ବିଶ୍ୱାସୀ ନୁହଁନ୍ତି ନାସ୍ତିକ। ବ୍ରିଟେନ୍‌ର ନାଟକ ଥିଏଟର, ସାହିତ୍ୟ, ବିଶ୍ୱବିଖ୍ୟାତ। ଚସର, ରବର୍ଟ ବର୍ନସ, ବାଇରନ୍, ଥମାସ, ସେକପିଅରଙ୍କ ଭାବଧାରାରେ ସ୍ପନ୍ଦିତ ଏହାର ମାଟି। ବ୍ରିଟେନ୍‌ର ସଂଗୀତ ସାରା ବିଶ୍ୱରେ ପ୍ରଶଂସିତ। ଲଳିତକଳା, ଚିତ୍ର କଳାରେ ମାଞ୍ଚେଷ୍ଟର ଓ ଲଣ୍ଡନ ମଧ୍ୟ ପ୍ରସିଦ୍ଧ। ସେକ୍‌ସିପଅରଙ୍କ ଜନ୍ମସ୍ଥାନ ଷ୍ଟ୍ରାଟପୋଡ଼ ସାହିତ୍ୟିକଙ୍କ ତୀର୍ଥସ୍ଥାନ।

ବ୍ରିଟେନ୍‌ରେ hedge hogs redfox Squirrels ଦେଖିବାକୁ ମିଳେ, ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ବ୍ରିଟେନ୍‌ର ଭୂପ୍ରକୃତିର ପରିବର୍ତ୍ତନ ଦୃଶ୍ୟମାନ, ଯୁଗ ଯୁଗ ବ୍ୟାପୀ ବିସ୍ତୃତ Hedgegrows ଜମିନଷ୍ଟ ହୋଇଯାଇଛି ଏବଂ ତା ସହିତ ଉଭେଇ ଯାଇଛି ଅନେକ ଗୁଳ୍ମଲତା ଏବଂ କେତେକ ବିରଳ ବୃକ୍ଷଲତା ଓ ପ୍ରାଣୀ। ତା ସ୍ଥାନରେ ମୁଣ୍ଡ ଟେକିଛି ପ୍ରସ୍ତର ପ୍ରାଚୀର।

## ଲଣ୍ଡନ ସହର ପରିକ୍ରମା

ଲଣ୍ଡନ ସହର ଦେଇ ଆମ ବସ ଚାଲିଲା। ଡଚଲ୍ୟାଣ୍ଡର ଏକ ହୋଟେଲକୁ। ସଂଧ୍ୟା ୭ଟା, ହୋଟେଲଟି ନୂଆ। ଏହି ହୋଟେଲ ପ୍ରବେଶ କରିବା ପୂର୍ବରୁ ବ୍ଲାକ୍‌ୱେଲଟ୍‌ନେଲ ଦେଇ ଗତି କରିଥିଲା ବସ୍‌ଟି, ଟନେଲ୍‌ଟି ପ୍ରାୟ ୨ ମାଇଲ ଲମ୍ୱା। ଟନେଲରେ ଗାଡ଼ିଯାତ୍ରା ନିୟନ୍ତ୍ରିତ। ଟନେଲଟି ଅଣଓସାରିଆ, ଗୋଟିଏ ମାତ୍ର ଗାଡ଼ି ଯିବା ପାଇଁ ବ୍ୟବସ୍ଥା। ସ୍ୱଳ୍ପ ଆଲୋକରେ ଗାଡ଼ି ଚାଲୁଥାଏ। ମଣିଷର କୃତିକୁ ପ୍ରଶଂସା ନ କରି ରହିହେବନି। ଡକଲାଣ୍ଡ ଅଞ୍ଚଳଟିରେ ଇଷ୍ଟଇଣ୍ଡିଆ କମ୍ପାନୀର ପୋର୍ଟ ଥିଲା। ଏଠାରେ ଥିଲା ତାର ଅଫିସ୍ ଥାଏ। ଭାରତ ଶିଳ୍ପ ବାଣିଜ୍ୟର ସୂର୍ଯ୍ୟାସ୍ତର ଷଡ଼ଯନ୍ତ୍ର ଏହିଠାରୁ ଆରମ୍ଭ ହୋଇଥିଲା। ବ୍ରିଟିଶ ସାମ୍ରାଜ୍ୟର ଭାଗ୍ୟସୂର୍ଯ୍ୟ ଉଦୟ ହୋଇଥିଲା ଏହିଠାରେ ।

ଅଧଘଣ୍ଟା ପରେ ଟୁରିଷ୍ଟ ବସ୍‌ଟି ଆମକୁ ଲଣ୍ଡନ ସହର ପରିକ୍ରମା କରିବାକୁ ନେଇଗଲା। ବିଜୁଳି ଆଲୁଅରେ ଲଣ୍ଡନ ସହରର ଦୃଶ୍ୟ ବସ ଭିତରୁ ଥାଇ ଦେଖିଲୁ। ବଡ଼ ବଡ଼ ପୁରୁଣାକାଳିଆ କୋଠାଘର। ବସ୍ ଭିତରୁ ଆମର ଗାଇଡ୍ ଡଚ ଭାଷାରେ ସହରର ବିଭିନ୍ନ ଷ୍ଟ୍ରିଟ୍ ଓ ପ୍ରସିଦ୍ଧ ସ୍ଥାନ ସୁଦୃଶ୍ୟ ଅଟ୍ଟାଳିକାମାନଙ୍କର ନାମ କହିଚାଲିଥାଏ। ଡଚଭାଷା ମୁଁ ବୁଝିପାରୁ ନଥାଏ।

କେବଳ ସହରର ସୌନ୍ଦର୍ଯ୍ୟ ଉପଭୋଗ କରୁଥାଏ। ରାତି ପ୍ରାୟ ୧୦ଟା ହେବ। ବସ୍‌ଟି ଥେମସ୍ ନଦୀ କୂଳ ଦେଇ ଗତି କରୁଥାଏ। ଥେମସ୍ ନଦୀ ଉପରେ କେତୋଟି

ପୋଲ ଦେଖିଲୁ, ଗୋଟିଏ ପୁରୁଣା ପୋଲ। ଏହି ପୁରୁଣା ପୋଲଟିକୁ ମରାମତି କରି ରଖାଯାଇଛି। ଏହି ପୋଳାକୁ ଲକ୍ଷ୍ୟ କରି ଟିଏସ. ଏଲିଅଟ୍ ତାଙ୍କର ଅନନ୍ୟ କବିତା ଲେଖିଛନ୍ତି, ଅତୀତର କୀର୍ତ୍ତୀ ଭାଙ୍ଗି ପଡୁଛି ସମୟର କରାଳରେ, ମଣିଷ ହାରି ଯାଉନାହିଁ। ନୂଆ କରି ଗଢ଼ି ତୋଳିଛି ଭଂଗା ଦ୍ରବ୍ୟର ପ୍ରତିରୂପ, ଅଧିକ ସୁନ୍ଦର ଅଧିକ ଆକର୍ଷଣୀୟ। ଟି.ଏସ. ଏଲିଅଟ ଦ୍ୱିତୀୟ ମହାଯୁଦ୍ଧର ଭୟଙ୍କର ବିପର୍ଯ୍ୟୟ ଅବଲୋକନ କରି ଲେଖିଥିଲେ waste land କବିତାରେ London Bridge is Falling down, Folling down Om Shanti, Shanti, Shanti.

ବୁଦ୍ଧିମାନ ମଣିଷ ନୂଆକରି ଗଢ଼ିଛି Tower Bridge ଅଧିକ ସୁନ୍ଦର, ଅଧିକ ଆକର୍ଷଣୀୟ।

ବସ୍ ଥେମସ୍ ନଦୀର ନୂଆ ପୋଲ ପାଖରେ ରଖିଲା। ସାମ୍ନାରେ ଲଣ୍ଡନ ଟାୱାର। କି ସୁନ୍ଦର କି ଚମତ୍କାର! ନଦୀରେ ଛୋଟ ବଡ଼ ନାଆ। ନୂତନ ଲଣ୍ଡନ ବ୍ରିଜ୍ ଗୋଟିଏ ରଂଗିନ ଫୁଲମାଳା ପରି ଝୁଲି ରହିଛି। ବିଶ୍ୱକର୍ମାଙ୍କ କଣ୍ଠହାର। ଶିଳ୍ପ ସମ୍ପନ୍ନ ଇଂଲାଣ୍ଡର ବୈଜ୍ଞାନିକ କୃତି।

ଥେମସ୍ ନଦୀର ଆଲୋକମାଳା କୁହୁକ ସୃଷ୍ଟି କରୁଥାଏ। ନଦୀର କଳା ଜଳ ଚିକ୍ ଚିକ୍ କରୁଛି। ବଡ଼ ବଡ଼ ପ୍ରାସାଦର ଉଜ୍ଜ୍ୱଳ ଆଲୋକ, ସେଣ୍ଟପାଲସ୍ ଚର୍ଚ୍ଚର ଶାନ୍ତ ସ୍ନିଗ୍ଧ ରୂପ, ମିଲେନିୟମ୍ ହୁଇଲର ଆଲୋକ ଖେଳ ମନ୍ତ୍ରମୁଗ୍ଧକର ସଂଗୀତ ଭଳି ହୃଦୟ ସ୍ପର୍ଶ କରିଯାଉଥାଏ। ମୁଁ ଭାବୁଥାଏ, ନଦୀର କେଉଁ କୂଳରେ ପ୍ରେମାସକ୍ତ ତରୁଣତରୁଣୀ ବିହ୍ୱଳ ଆନନ୍ଦରେ ଗାଉଥିବେ smoke gets in your eyes, Rain drops keep fallings on my head । ଏକ ଆଲୌକିକ ସୁନ୍ଦର ପରିବେଶ ଓ ଦେହଥରା ଶୀତରେ ମୁଁ ପାଲଟି ଯାଆନ୍ତି କି ତରୁଣ ପ୍ରେମିକ କବିଟିଏ, ଲରେନ୍ସ, ବାଇରନ୍! ପାଖରେ ଥାଆନ୍ତା ପ୍ରେୟସୀ ମୋର'।

## କାହିଁ ରୁଷୋ, କାହିଁ ମାର୍କ୍ସ ?

ପରଦିନ ସକାଳ ଆଠଟାରେ ହୋଟେଲରେ ସୁନ୍ଦର ତୃପ୍ତିଜନକ ପ୍ରାତଃଭୋଜନ ସାରି ଲଣ୍ଡନ ସହର ପରିକ୍ରମା କରିବାକୁ ବାହାରିଲୁ। ଟୁରିଷ୍ଟ ବସ୍‌ରେ କେଥେଡ୍ରାଲ୍ ପର୍ଯ୍ୟନ୍ତ ଯାଇ ସେଠାରୁ ପାଦରେ ଚାଲି ଚାଲି ଦର୍ଶନୀୟ ସ୍ଥାନଗୁଡ଼ିକ ଦେଖିବାକୁ ପୁତ୍ର ଅମରେନ୍ଦ୍ର ଓ ମୁଁ ମନସ୍ଥ କଲୁଁ। ୟୁରୋପର ବିଭିନ୍ନ ସହରରେ ଭାରତର ମନ୍ଦିର ଭଳି ଶହ ଶହ ପୁରୁଣା ନୂଆ ଚର୍ଚ୍ଚ କେତେ ଦେଖିବୁ ?

ତେବେ ଲଣ୍ଡନ ସହରତ ବିଶ୍ୱ ପ୍ରସିଦ୍ଧ। ତାର ଇତିହାସ ପୁରାତନ, ଏହା ପ୍ରାଣପ୍ରାଚୁର୍ଯ୍ୟ ଓ ସାଂସ୍କୃତିକ ପ୍ରେରଣାରେ ପରିପୂର୍ଣ୍ଣ। ସଂଗୀତ, କଳା ଓ ଉପାସନାରେ ଅଗ୍ରଣୀ ସହରଟି ପରିବ୍ରାଜକମାନଙ୍କୁ ଆକର୍ଷି ଆଣେ।

ଏହି ସହରକୁ ଦୁଇ ଭାଗ କରୁଥିବା ଥେମସ ନଦୀ କୂଳରେ ଶହ ଶହ ବର୍ଷ ତଳେ celtic ଗୋଷ୍ଠୀ ବସବାସ କରୁଥିଲେ। ଖ୍ରୀଷ୍ଟାବ୍ଦ ୪୩ରେ ରୋମାନ ମାନେ ଏଠାରେ ପହଞ୍ଚି ଏକ ସହରର କଳ୍ପନା ଆଣିଥିଲେ। ପଞ୍ଚମ ଶତାବ୍ଦୀରେ ରୋମାନମାନଙ୍କ ପ୍ରତ୍ୟାବର୍ତ୍ତନ ପରେ ସାକସନ୍ (Saxon) ମାନେ ଏଠାରେ ବସବାସ କରି ବ୍ୟବସାୟ ପ୍ରତି ଧ୍ୟାନ ଦେଲେ। ବ୍ୟବସାୟିକ ଗୁରୁତ୍ୱ ଶତ୍ରୁମାନଙ୍କ ଆକ୍ରମଣର କାରଣ ହେଲା। ୮୫୧ ମସିହାରେ Danish Vikings ମାନେ ପ୍ରବେଶ କଲେ ସାକ୍‌ସେନ ରଜାଆଲଫ୍ରେଡ୍ ୨୫ ବର୍ଷ ଲାଗି ସହରଟିର ପୁନର୍ନିର୍ମାଣ କରିଥିଲେ। ୧୦୧୬ର ଭିକିଙ୍ଗ୍‌ସ ମାନେ ଡେନିସ୍ ରଜାଟିଏ ନିର୍ବାଚିତ କରି ଲଣ୍ଡନକୁ ରାଜଧାନୀ କରିଥିଲେ ୧୦୪୦ରେ। ଭିର୍କିଙ୍କ ବଂଧୁ ସକସନ୍ ଏଡ଼ୱାର୍ଡ଼ ବି ବେନ୍ ଫେସର ସିଂହାସନ ଆରୋହରଣ କରି Westminster Abey ତିଆରି କଲେ। ୧୦୬୬ରେ ନର୍ମାନ ଡିଉକ୍ ଉଇଲିଆମ୍ ଦି କଂକରର ଲଣ୍ଡନ ଅଧିକାର କରି Tower of London ନିକଟରେ ଏକ ଦୁର୍ଗ ନିର୍ମାଣ କଲେ। ଲଣ୍ଡନର ଅଭିବୃଦ୍ଧି ମଧ୍ୟ ଯୁଗରେ ଅବ୍ୟାହତ ରହିଥିଲା। ୧୬୬୫ରେ ପ୍ଲେଗ୍ ଓ ୧୬୬୬ର ଅଗ୍ନିର ଧ୍ୱଂସଲୀଳା ସତ୍ତ୍ୱେ ୧୭୨୦ରେ ଲଣ୍ଡନ ସହରର ଲୋକସଂଖ୍ୟା ଥିଲା ୭୫୦୦। ରେନେସାଁ, ଶିଳ୍ପବିପ୍ଳବ ଓ ବିଜ୍ଞାନର ଦ୍ରୁତ ବିକାଶ ବ୍ରିଟେନ୍‌ର ସାମ୍ରାଜ୍ୟ ବିସ୍ତାର କରିବା ସହ ଲଣ୍ଡନ ସହରର ଖ୍ୟାତି ଓ ଗୁରୁତ୍ୱ ଅଭୂତ ଭାବେ ବୃଦ୍ଧି କରିଛି। ଆଜି ଏହା ବିଶ୍ୱର ପ୍ରଥମ କି ଦ୍ୱିତୀୟ ବୃହତ୍ତମ ନଗର ରୂପେ ପରିଚିତ।

ଏପରି ଏକ ବିରାଟ ନଗରୀର ନାନାଦର୍ଶନୀୟ ସ୍ଥଳୀ ଭିତରୁ କେତୋଟି ମାତ୍ର ଦେଖିହେଲା ଦୁଇ ଦିନ ରହଣିରେ। ତାର ବିବରଣୀ ମୁଁ ଲିପିବଦ୍ଧ କରୁଛି।

ମୁଁ ଜଣେ ସମାଜବିଜ୍ଞାନୀ ଓ ଶିକ୍ଷାବିତ୍। ଅତୀତର ଇତିହାସ ମୋତେ ଆକୃଷ୍ଟ କରିବା ସ୍ୱଭାବିକ।

ଧର୍ମ ବିଜ୍ଞାନ ଉଭୟ ମଣିଷର ମାନସିକ ସାମାଜିକ ଓ ରାଜନୈତିକ ବୃତ୍ତ ଆଙ୍କି ଚାଲିଛି। କାହିଁ କେତେ ଶହ ବର୍ଷ ତଳେ ଧର୍ମାତ୍ମାମାନେ ଜନ୍ମ ନେଇ ମଣିଷ ସମାଜକୁ ଆଲୋକ ଦେଇ ଆସିଛନ୍ତି। ସେହି ଆଲୋକର ବର୍ତ୍ତିକା ଥିଲେ ସେଣ୍ଟପଲ। ତାଙ୍କ ନାମରେ ଗଢ଼ାଯାଇଛି ସହରର ସବୁଠୁ ବଡ଼ ଚର୍ଚ୍ଚ St. Paul's Cathedral, ସୁନାରସିଲିଂ, ମୋଜାଇକ୍ ଓ ହୁଇସ୍‌ପରିଙ୍ଗ ଗେଲେରୀ ଏହାର ଅତି ଆକର୍ଷଣୀୟ ବସ୍ତୁ। ଏହି ଦିଆଲର ଗୋଟିଏ ପାଖରେ ଶବ୍ଦ କଲେ ଅନ୍ୟ ପାଖରେ ତାର ପ୍ରତିଧ୍ୱନି ଶୁଣାଯାଏ। ଏହି ଚର୍ଚ୍ଚ ଭିତରେ ଗଢ଼ାଯାଇଛି ନେଲସନ୍ ଜୋସୁଆ Joshua Reynold ରେନୋଲଡ଼ସ୍‌ଙ୍କ ଟମ୍ବ ଭକ୍ତିପୂତ ସ୍ମୃତି ସ୍ତମ୍ଭ ରୂପେ। Christopher wren ଙ୍କ ଏହା ସର୍ବଶ୍ରେଷ୍ଠ ସ୍ଥାପତ୍ୟ।

# ଲଣ୍ଡନ ସ୍କୁଲ ଅଫ୍ ଇକୋନୋମିକ୍ସ ଏଣ୍ଡ ପଲଟିକାଲ୍ ସାଇନ୍ସ

**London School of Economics and Political Science.**

ଦିନ ଥିଲା ଯେତେବେଳେ ଭାରତର ଧନୀ ସଂଭ୍ରାନ୍ତଙ୍କର ମେଧାବୀ ସଂତାନ ମାନେ ବିଲାତ ଯାତ୍ରା କରୁଥିଲେ ଅଧ୍ୟୟନ ପାଇଁ। କିଏ ଲଣ୍ଡନ ସ୍କୁଲ ଅଫ୍ ଇକୋନୋମିକ୍ସ ତ ଆଉ କିଏ କେମ୍ବ୍ରିଜ୍, ଅକ୍ସଫୋର୍ଡ଼ ୟୁନିଭରସିଟ୍, ଟ୍ରିନିଟ୍ କଲେଜ, କିଙ୍ଗସ୍ କଲେଜକୁ ଯାଉଥିଲେ। ମୋ ଭଳି ମେଧାବୀ ନିମ୍ନ ମଧ୍ୟବିତ୍ତ ପରିବାରର ଏମ୍.ଏ ପଢ଼ା ଯୁବକଙ୍କ ସ୍ୱପ୍ନ ସ୍ୱପ୍ନରେ ରହିଯାଉଥିଲା। ମୋର ମନେ ପଡୁଛି ବିବାହ ଯୌତୁକ ରୂପେ ବିଲାତରେ ପାଠ ପଢ଼ିବା ପାଇଁ ଭାବୀ ଶଶୁର ଘରୁ ୫ ହଜାର ଟଙ୍କା ପାଇବାର ଆଶା କରିଥିଲି। ସେ ଆଶା ଚରିତାର୍ଥ ହେଲା ନାହିଁ। ମୋର ଶିକ୍ଷକ କେତେଜଣ ବ୍ରିଟିଶ ସରକାରଙ୍କ ବୃତ୍ତି ପାଇ ବିଲାତ ବା ଆମେରିକାରେ ପି.ଏଚ.ଡ଼ି କରିବାକୁ ଯାଇଥିଲେ। ମୋର ପୂଜ୍ୟ ଶିକ୍ଷକ ସ୍ୱର୍ଗତ ଡକ୍ଟର ସଦାଶିବ ମିଶ୍ର ଓ ଡକ୍ଟର ବିଦ୍ୟାଧର ମିଶ୍ର ଲଣ୍ଡନ ସ୍କୁଲ ଅଫ୍ ଇକୋନୋମିକ୍ସ୍‌କୁ ପି.ଏଚ.ଡ଼ି. କରିବାକୁ ଯାଇଥିଲେ। ସେହି ପବିତ୍ର ପୀଠକୁ ଦେଖିବାର ବ୍ୟାକୁଳତା ଥିଲା ମୋ ଭିତରେ। ପୁଅ ତ ଇକୋନୋମିକ୍ସ୍‌ରେ ଡକ୍ଟରେଟ୍ କରିଛି। ତାର ମଧ୍ୟ ଆଗ୍ରହ ପ୍ରବଳ। ସେଣ୍ଟପଲସ୍ କେଥେଡ୍ରାଲରୁ ଚାଲି ଚାଲି Houghton Street ରେ ଅବସ୍ଥିତ ଲଣ୍ଡନ ସ୍କୁଲ ଅଫ୍ ଇକୋନୋମିକ୍ସକୁ ଗଲୁ। L.S. E. London School of Economics ଯିବା ରାସ୍ତାରେ Kings College ପଡ଼େ। ଏହା ଅବସ୍ଥାପିତ ହୋଇଥିଲା ୧୮୨୩ ମସିହାରେ।

The Q.S. world university ranking 2008 ଅନୁସାରେ ଲଣ୍ଡନ ସ୍କୁଲ ଅଫ୍ ଇକୋନୋମିକ୍ସ୍ ବିଶ୍ୱର ସମାଜ ବିଜ୍ଞାନ ବିଶ୍ୱବିଦ୍ୟାଳୟ ମଧ୍ୟରେ ଅନ୍ୟତମ। ଏହାର ମାନ ହାର୍ବାର୍ଡ଼, ବାର୍କଲେଓକ୍ସୋନ୍ ଫୋର୍ଡ଼ ୟୁନିଭରସିଟି ସହ ସମାନ।

ଫେବିଆନ୍ ସୋସାଇଟ୍‌ର Surreyର ଏକ ବ୍ରେକ୍‌ଫାଷ୍ଟ ପାର୍ଟିରେ ୧୮୯୪ ମସିହାରେ ଏହାର ୪ ଜଣ ପ୍ରଧାନ ସଭ୍ୟ ବିଏଟ୍ରିସ୍ ସିଡ୍‌ନ ୱେବ, ଗ୍ରାହାମ୍ ୱାଲସ୍ ଏବଂ ଜର୍ଜ ବାନାର୍ଡ଼ସ୍, LSE ସ୍ଥାପନ କରିବାର ସିଦ୍ଧାନ୍ତ ନେଇଥିଲେ, ୧୮୯୫ ଅକ୍ଟୋବରରେ ଏହାର ଦ୍ୱାର ଉନ୍ମୁକ୍ତ ହୋଇଥିଲା। ସେତେବେଳେ ସମଗ୍ର ଇଂଲାଣ୍ଡ ଓ ୱେଲସ୍‌ରେ ୧୮୧ ଜଣ ଉପାଧ୍ୟୁତ୍ତର ଛାତ୍ର ଥିଲେ, ସେମାନଙ୍କ ମଧ୍ୟରୁ ୬୯ ଜଣ ଥିଲେ LSE ର ଛାତ୍ର। ଏହାର ଲକ୍ଷ୍ୟ ଥିଲା ସମାଜର ଉନ୍ନତି ସାଧନ। ଆଭିମୁଖ୍ୟ ଥିଲା Rerum cognisiere

Causas (Vergils' georagics) ପଦ ଯାହାର ଅର୍ଥ ହେଉଛି ପ୍ରତ୍ୟେକ କଥାର କାରଣ ଜାଣିବା। L.S.E ସଂପ୍ରତି ୧୪୦ଟି ଦେଶରୁ ଛାତ୍ର ଗ୍ରହଣ କରିଛି, ଏହାର ପୁରାତନ ଛାତ୍ରମାନେ ପ୍ରାୟ ୯୨୦୦୦। ଏମାନେ ଏକ ଶହ ଛୟାନବେଟି ଦେଶରେ ଅଛନ୍ତି। ଏହାର ୪୫ ପ୍ରତିଶତ ଛାତ୍ର U.K. ବାହାରୁ ଆସିଛନ୍ତି। ଏହି ଅନୁଷ୍ଠାନରେ ୧୫୮୦ ଜଣ ପୂରା ସମୟ କାମ କରନ୍ତି ଏବଂ ୧୪୭୦ ଜଣ ସାମୟିକ କାମ କରନ୍ତି। ବର୍ତ୍ତମାନ ବିଶ୍ୱର ନେତାମାନଙ୍କ ମଧ୍ୟରୁ ୩୪ ପ୍ରତିଶତ LSEରେ ପଢୁଥିଲେ ବା ପଢାଉଥିଲେ। ଏହି ବିଶ୍ୱବିଦ୍ୟାଳୟରେ ୧୫ ଜଣ ଇକୋନୋମିକ୍ସ Peace & Literature ରେ ନୋବେଲ ପୁରସ୍କାର ପାଇଛନ୍ତି। ସେମାନେ ହେଲେ ପଲ୍‌କ୍ରୁଗମାନ୍, ଲିଓନିଡ ହରଓ୍ୱିଜ୍ ରବର୍ଟ ମଣ୍ଡେଲ୍ ଅମୂର୍ତ୍ତ୍ୟସେନ, ରୋନାଲ୍‌ଡ଼, କେ.ମି. ମାର୍ଟିନ ମୁଲର୍, ସାର ଅର୍ଥର ଲୁଉସ୍, ଏଫ.ଉ. ହାଇକ୍, ସାରଜନ୍ ହିକ୍‌ଓ, ଲର୍ଡ଼ ଫିଲ୍‌ପ୍ ନୋଏଲ ବେକର, ବାର୍ଟ୍ରଣ୍ଡରସେଲ୍ ଓ ଜର୍ଜ ବାର୍ନାର୍ଡ଼ସ୍।

ଏହି ବିଶ୍ୱ ବିଦ୍ୟାଳୟରେ ଯେଉଁ ବିଭାଗ ଅଛି ସେଗୁଡ଼ିକ ହେଲା : Accoutancy, Anthropology, Economics, Finance, Geography, Government, inter national Relations, Law, Mathmatics, Statistics, Philosophy, Logic, Social Policy, Sociology. ଏମାନଙ୍କ ମଧ୍ୟରେ Economics Department ସବୁଠୁଁ ବଡ଼, ଏହାର ଛାତ୍ର ସଂଖ୍ୟା ଏକ ହଜାର, ଏଠାରେ ଉଭୟ Under Graducate and Post- Graduate ଶିକ୍ଷା ଦିଆଯାଏ। ଗବେଷଣା କ୍ଷେତ୍ରରେ ଏହାର ସୁନାମ ବିଶ୍ୱବିଦିତ। ଏହି ବିଶ୍ୱବିଦ୍ୟାଳୟ ଆନ୍ତର୍ଜାତୀୟ କ୍ଷେତ୍ରରେ ବିଖ୍ୟାତ ବିଶ୍ୱବିଦ୍ୟାଳୟ ଓ ଗବେଷଣା ପ୍ରତିଷ୍ଠାନ ସହିତ ସହଯୋଗ ସ୍ଥାପନ କରିଛି। ଏହାର ପାଠାଗାର ସମାଜ ବିଜ୍ଞାନରେ ସର୍ବବୃହତ,ପାଠାଗାରରେ ପ୍ରାୟ ୪୦ ଲକ୍ଷ ମୁଦ୍ରିତ ପୁସ୍ତକ ଅଛି ଓ ୨୦ ହଜାର ପତ୍ରପତ୍ରିକା ପାଠଗାରକୁ ଆସେ। ବ୍ରିଟେନ୍‌ର House of Commons ରେ ଏବେ ୩୧ ଜଣ LSE ର ପ୍ରାକ୍ତନ ଛାତ୍ର ଲୋକପ୍ରତିନିଧି ଅଛନ୍ତି ଓ House of Lords ୪୨ ଜଣ ଅଛନ୍ତି।

ଲଣ୍ଡନ ସ୍କୁଲର ପୁରୁଣା କୋଠାଘର ଚାରିପାଖେ ବୁଲିଲାବେଳେ ମନଚାଲି ଯାଉଥାଏ ୩୦୦ ବର୍ଷ ତଳକୁ। ମହାନ୍ ମନୀଷୀ ଚିନ୍ତାନାୟକ ଦାର୍ଶନିକ ମାନଙ୍କ ଦାପ୍ତିମାନ ମୁହଁର ଛବି ଭାସି ଉଠୁଥାଏ ଆଖି ଆଗରେ। ଓ୍ୱେବସ୍ ଓ୍ୱାଲସ୍‌ଙ୍କ ପ୍ରଗତିଶୀଳ ମାନବିକତାପୂର୍ଣ୍ଣ ଗଣତାନ୍ତ୍ରିକ ସମାଜବାଦୀ ଚିନ୍ତାଧାରାର ବିକଳ୍ପ ରୂପେ ପ୍ରତିଭାତ ହେଲେ ମଧ୍ୟ ମାନବ ସମାଜର ସାମଗ୍ରିକ ମଂଗଳ ବିଧାନର ପ୍ରଧାନ ଅସ୍ତ୍ର ହୋଇଥିଲା। ଫେବିଆନ୍ ସୋସାଲିଜିମ୍ ଚିନ୍ତାଧାରା ନେହୁରୁଙ୍କ ସମେତ ତୃତୀୟ ବିଶ୍ୱର ଅନେକ ନେତାଙ୍କୁ ଉଦବୁଦ୍ଧ କରି ସ୍ୱାଧୀନତା ସଂଗ୍ରାମ ପାଇଁ ପ୍ରେରଣା ଦେଇଥିଲା। ସେହି ଦାର୍ଶନିକମାନଙ୍କ ସ୍ମୃତି ଉଦ୍ଦେଶ୍ୟରେ ପ୍ରଣାମ

ଜଣାଇ ଆମେ ଚାଲିଲୁ ବ୍ରିଟିଶ ମିଉଜିୟମ୍ ଦିଗକୁ। ଗ୍ରେଟ ରସେଲ ଷ୍ଟ୍ରିଟ୍ ଦେଇ ଗତି କଲାବେଳେ ମହାନ ଦାର୍ଶନିକ ବାଟ୍ରାଣ୍ଡ ରସେଲଙ୍କ କଥା ମନେପଡ଼ିଲା। ଗଣିତଜ୍ଞ, ଦାର୍ଶନିକ, ସାହିତ୍ୟିକ ରସେଲଙ୍କ ସୁଚିନ୍ତିତ ଲେଖାଗୁଡ଼ିକ ବିଶ୍ୱର ସମାଜବିଜ୍ଞାନ ଛାତ୍ରମାନଙ୍କ ମନ ଉପରେ କେତେ ଯେ ପ୍ରଭାବ ପକାଇଛି ଓ ପକାଇ ଚାଲିଥିବ ତା କଳନା କରିହେବନାହିଁ। ଧର୍ମ ବିଜ୍ଞାନ ମଧରେ ସୂକ୍ଷ୍ମ ପ୍ରଭେଦ, ବିଜ୍ଞାନର ଶୀର୍ଷତମ ବିନ୍ଦୁରେ ଆଧାତ୍ମିକତାର ଶୀତଳ ସ୍ପର୍ଶ, ଦୁଇଟି ଶିଖାର ସମନ୍ୱୟରେ ଆତ୍ମାର ସମୁଜ୍ଜ୍ୱଳ ବିକାଶ - ଏପରି ଆଲୋଡ଼ନକାରୀ ଚିନ୍ତା କିଏ ଜାଗ୍ରତ କରିବ ରସେଲଙ୍କ ପରି ? ସମାଜ ପ୍ରତି ଜଣେ ବିଦ୍ୱାନ ବୌଦ୍ଧିକ ବ୍ୟକ୍ତିତ୍ୱର କର୍ତ୍ତବ୍ୟ ଯୁଦ୍ଧ ନୁହେଁ, ଶାନ୍ତି ଲୋଡ଼ା, ଏ ବଜ୍ରସ୍ୱାର କିଏ ଉତ୍ତୋଳନ କରିବ ?

ବ୍ରିଟିଶ ମିଉଜିୟମ୍ ଦେଖିବାର ଆଗ୍ରହ ଥିଲା ତୀବ୍ର। ଏହି ମିଉଜିଅମ୍‌ର ଲାଇବ୍ରେରୀରେ ୧୪ ବର୍ଷ ଅଧ୍ୟୟନ କରି କାର୍ଲମାର୍କ୍ସ ପ୍ରଣୟନ କରିଥିଲେ ତାଙ୍କର ଯୁଗାନ୍ତକାରୀ ଗ୍ରନ୍ଥ 'ଦାସ କେପିଟାଲ।' ମିଉଜିୟମ୍‌ର ପାଦଦେଶରେ ପହଞ୍ଚିଲାକ୍ଷଣି କାନରେ ଗୁଞ୍ଜରି ଉଠିଲା Working class of the world unite, you have nothing to lose but your chains. କୋଟି କୋଟି ସାମ୍ୟବାଦୀମାନଙ୍କର କମ୍ୟୁନିଷ୍ଟ ମେନୁଫାଷ୍ଟ, ବାଇବେଲ୍ ସ୍ୱରୂପ। ଏହି ପ୍ରସିଦ୍ଧ ମିଉଜିୟମ୍‌ର ଏକ ଅଂଶ ମାତ୍ର ପାଠାଗାର, ଅନ୍ୟ ଅଂଶରେ ଐତିହାସିକ, ଭୌଗୋଳିକ ଦ୍ରବ୍ୟମାନ ପ୍ରଦର୍ଶିତ। ରସେଲ ସ୍କୋୟାରରେ ୧୭୫୩ରେ ପ୍ରତିଷ୍ଠିତ ଏହି ମିଉଜିୟମ୍‌ରେ ମାନବ ଇତିହାସର ଦୁଇ ନିୟୁତ ବର୍ଷର ବିଭବ ସବୁ ଏସିଆ, ଆଫ୍ରିକା, ୟୁରୋପ, ଆମେରିକା ଓ ଅଷ୍ଟ୍ରେଲିଆରୁ ସଂଗୃହିତ ହୋଇରହିଛି। କେତେ ମମି, ପ୍ରାଚୀନ ମୂର୍ତ୍ତି, ଅସ୍ତ୍ରଶସ୍ତ୍ର ସହିତ ଆଧୁନିକ ମଣିଷର ହାତଗଢ଼ା ଦ୍ରବ୍ୟ ସଂଗୃହିତ ହୋଇ ରହିଛି। ବିଭିନ୍ନ ଦେଶର ଇତିହାସ, ସାମାଜିକ ଚଳଣି, ଭୌଗୋଳିକ ଚିତ୍ର, ଶିଳ୍ପ ବିଜ୍ଞାନ, କଳାର ନମୁନା ମିଳେ ଏଠାରେ ବ୍ରିଟିଶ ମିଉଜିୟମ୍‌ରେ ବେଳେବେଳେ ବକ୍ତୃତା ଆଲୋଚନା ଓ ଫିଲ୍‌ମ ସୋ'ର ବ୍ୟବସ୍ଥା ହୋଇଥାଏ। ଗ୍ରେଟ୍ ରସେଲ ସ୍କୋୟାରେ ପ୍ରତିଷ୍ଠିତ ଏହି ମିଉଜିୟମର ପ୍ରବେଶ ପଥରେ ଜଳକୁଣ୍ଡ ଚାରିପାଖେ ବେଞ୍ଚ, କ୍ଲାନ୍ତ ପଥିକ ଟିକିଏ ବିଶ୍ରାମ କରି ମିଉଜିଅମ୍ ଭିତରେ ପ୍ରବେଶ କରିବ। ମିଉଜିୟମ୍‌ରେ ପ୍ରବେଶ ପାଇଁ ଏବେ ଫି ଆଦାୟ କରାଯାଉନି, ଦାନବାକ୍ସ ଅଛି, ଯିଏ ଯାହାଦାନ କରିପାରିବା ତା ଭିତରର ଚଟାଣରେ ଚା' ଜଳଖିଆ, ପୁସ୍ତକ ପତ୍ରିକା ଦୋକାନ ଅଛି। ରେଷ୍ଟୁରାଣ୍ଟର ସେବା ଉପଭୋଗ କରିପାରେ ଦର୍ଶକ ଅତି ଆରାମରେ।

୧୭୫୩ରେ ମିୟୁଜିୟମଟି ସ୍ଥାପିତ ହେଲାବେଳେ ତାହା ଦୁଇ ଭାଗରେ ବିଭକ୍ତ ହୋଇଥିଲା - Natural and Artificial Rarities ୧୮୧୮ରେ- The Enlightment

gallery ନିର୍ମିତ ହେଲା । ଏଥିରେ ବିଭିନ୍ନ ଦେଶର ପ୍ରାଚୀନ ମୁଦ୍ରା, ପାଣ୍ଡୁଲିପି, ସ୍ଥାପତ୍ୟ, କଳା, ମଧ୍ୟଯୁଗର କୀର୍ତ୍ତି ଅତୀତର ଭାଷାଲିପି, ସଂସ୍କୃତ, ଗ୍ରୀକ, ରୋମାନ ଇଜିପ୍ଟର ଲିପି, ରେନେସାଂ ଯୁଗର କଳା ବିଜ୍ଞାନ ବାଣିଜ୍ୟ ସାମ୍ରାଜ୍ୟ ବିସ୍ତାରର ସ୍ମୃତି ସଂଗୃହିତ ହୋଇରହିଛି । ପ୍ରାୟ ୭ ନିୟୁତ ସଂଗୃହିତ ଦ୍ରବ୍ୟରେ ବ୍ରିଟିଶ ସାମ୍ରାଜ୍ୟର ଅପହରଣର ଦୁଃଖଦ ଚିତ୍ର ମିଳେ । ମରାମତି ହେଉଥିବାରୁ ଗୋଲାକାର ପାଠାଗାର ଗୃହ ଭିତରେ ପ୍ରବେଶ କରି ପାରିଲୁ ନାହିଁ । ପାଠାଗାରର ପୁସ୍ତକ ଭଣ୍ଡାର ଚତୁପାର୍ଶ୍ୱରେ ପଠନଗାରକୁ ଦୂରରୁ ଥାଇ ଲକ୍ଷ୍ୟ କଲୁଁ । ଭାବିଥିଲି କାର୍ଲମାକ୍ସଙ୍କ ପ୍ରତିମୂର୍ତ୍ତି କେଉଁଠି ଥିବ । ବ୍ରିଟିଶ ବା ଇୟୁରୋପୀୟ ପୁଞ୍ଜିବାଦ ଓ ସାମ୍ରାଜ୍ୟବାଦକୁ ଯାହାର ଆଗ୍ନେୟ ଚିନ୍ତାଧ୍ୱସ୍ତ କରି ଦେଇଥିଲା, ତାର ମୂର୍ତ୍ତି ରହିଥିବା ଆଶା ମୋର ବୃଥା ଥିଲା । ଇଜିପ୍ଟର ମମିମାନଙ୍କୁ ଦେଖି ମନରେ ଭାବାନ୍ତର ଆସିଥିଲା, ଜୀବନ କେଡ଼େ କ୍ଷଣସ୍ଥାୟୀ, ସୀମାହୀନ ବିଶ୍ୱରେ ଏକ ପ୍ରହେଳିକାର ବିନ୍ଦୁ- ଅର୍ଥହୀନ ନା ଅର୍ଥମୟ ? ମିୟୁଜିଅମ୍‌ର ବାହାରକୁ ଆସି ଦ୍ୱାର ନିକଟସ୍ଥ ପାହାଚରେ ଗୋଡ଼ ଲମ୍ବେଇ ବସି ସୂର୍ଯ୍ୟକିରଣର ଉଷ୍ଣତା ଉପଭୋଗ କରୁଥିଲି । ନିକଟରେ ତରୁଣତରୁଣୀମାନେ ଆନନ୍ଦରେ ପ୍ରେମାଳାପ କରୁଥାନ୍ତି । ମୋ ଭାବନା ରାଜ୍ୟରେ ଖେଳିଗଲା । ନୋବେଲ ପୁରସ୍କାର ବିଜେତା ସାହିତ୍ୟିକ Soul Bellow ଙ୍କ କଥା :

The flesh would shrink and go, the blood would dry. but no one believes in his mind of minds heart of hearts, that the pictures do stop'.

ମଣିଷ ମନରେ ଅତୀତର ବିସ୍ମୟକାରୀ ଘଟଣା ବସ୍ତୁ ଓ ମଣିଷର ଯେଉଁ ରୂପ ଥରେ ମିଳିଛି ତାର ଛବି କେବେ ଦୂରହେବନି ।

ମିୟୁଜିୟମ୍‌ର Great court, ଇୟୁରୋପର ସର୍ବବୃହତ ଆବୃତ୍ତ ଚୌକ, ଅନ୍ୟ ଏକ ନୂତନ ଆକର୍ଷଣ ।

## ହାଇଡ୍ ପାର୍କ (HYDE PARK)

ମିୟୁଜିୟମ ଦର୍ଶନ କରି ହାଇଡ଼ ପାର୍କକୁ ଆସିଲୁ ଅଣ୍ଡରଗ୍ରାଉଣ୍ଡ ଟ୍ରେନ୍‌ରେ । ଲଣ୍ଡନର ଅଣ୍ଡରଗ୍ରାଉଣ୍ଡ ଟ୍ରେନ୍ ଅତି ସୁନ୍ଦର ଏବଂ ସୁବିଧାଜନକ ଯାତାୟତ ବ୍ୟବସ୍ଥା, ଗୋଟିଏ ଦିନର ଟିକେଟ୍ ସାଢ଼େପାଞ୍ଚ ପାଉଣ୍ଡରେ କାଟି ଦିନ ସାରା ଲଣ୍ଡନ ସହରର ଯେ କୌଣସି ସ୍ଥାନକୁ ଯାଇପାର । ଶସ୍ତା ସୁନ୍ଦର ହେବ ଭାବି ପୁଅ ଟିକେଟେ ଦିନକ ପାଇଁ କରିଦେଲା । ରସେଲ୍ ଷ୍ଟ୍ରିଟରୁ ସାଓରେ ତଳକୁ ଯାଇ ତଳୁ ଟିକେଟ୍ କାଟି Esctalator ସାହାଯ୍ୟରେ ପ୍ରାୟ ଦୁଇ ତାଲା ଉଚ୍ଚ ବାଟ ତଳେ ଅଣ୍ଡର ଗ୍ରାଉଣ୍ଡ ଟ୍ରେନ୍ ଧରିଲୁ ।

ହାଇଡ଼ ପାର୍କ ପ୍ରଥମେ ଅଷ୍ଟମ ହେନେରୀଙ୍କ ପ୍ରିୟ ସ୍ଥଳୀ ଥିଲା। ମଧ୍ୟରାତ୍ରରେ ସେ ବିହାର କରୁଥିଲେ ଏଠାରେ। ହାଇଡ୍ ପାର୍କ କର୍ନରରେ ଦେଖିବାକୁ ମିଳେ kinghts Bridge ମାର୍ବଲ ଆର୍କ ଲାଙ୍କାଷ୍ଟାର ଗେଟ୍। ଏହି ପାର୍କରେ ଲଞ୍ଚ ସମୟରେ ହଜାର ହଜାର ସ୍ଥାନୀୟ ଲୋକ ଅଫିସ୍ କାମରୁ ବିଶ୍ରାମ ପାଇଁ ଆସିଥାନ୍ତି, ବିଶେଷତଃ ଖରାଦିନରେ ପାର୍କଟିରେ ବହୁଲୋକ ସମାବେଶ ହୁଅନ୍ତି। ପରିବ୍ରାଜକଙ୍କ ପାଇଁ ପାର୍କର ଆକର୍ଷଣ ହେଉଛି ଆଲବର୍ଟ ମେମୋରିଆଲ୍ ମାର୍ବଲ ଆର୍କ ଏବଂ Speakers Corner ଯେଉଁଠି ବାଗ୍ମୀମାନେ ସେମାନଙ୍କ ଭାଷଣରେ ଶ୍ରୋତାମାନଙ୍କୁ ମୁଗ୍ଧ କରିଥାନ୍ତି। ଏଠାରେ ସ୍ୱାଧୀନ ଭାବରେ ବକ୍ତାମାନେ ସରକାର ବା ଯେ କୌଣସି ପ୍ରତିଷ୍ଠାନକୁ ସମାଲୋଚନା କରି କରିଥାନ୍ତି। ତେଣୁ ଇଂରାଜୀ ଇଡ଼ିୟମ୍ Hyderpark discussion ଏକ ସାର୍ବଜନ ସ୍ୱୀକୃତ ରୂଢ଼ି।

ହାଇଡ୍ ପାର୍କରେ କଅଁଳ ଘାସ ଉପରେ କିଛି ସମୟ ବସିଲୁ, ଅନେକ ଲୋକ, ବୃଦ୍ଧବୃଦ୍ଧା, ତରୁଣତରୁଣୀ, ଛୋଟ ପିଲା ପଡ଼ିଆର ବେଞ୍ଚ କିମ୍ବା ଘାସ ଉପରେ ବସି ରହି ରୁଦ୍ର ତାପ ଓ ଶୀତଳ ପବନ ଉପଭୋଗ କରୁଥାନ୍ତି। ସ୍ୱାମୀ, ସ୍ତ୍ରୀ, ସନ୍ତାନ ସନ୍ତତିଙ୍କ ହସ କୌତୁକ ପ୍ରେମିକ ପ୍ରେମିକାଙ୍କ ଶୃଙ୍ଖଳିତ ସ୍ପର୍ଶାନୁଭବ କରିବାର ଦୃଶ୍ୟ ମନରେ ଆନନ୍ଦ ଭରି ଦେଉଥାଏ। ଧାଡ଼ି ଧାଡ଼ି ଫୁଲଗଛ, ନାନାରଂଗର ଫୁଲର ଗହଳି। ପାଖକୁ ଯାଇ ହାତମାରିଲି, ୱାର୍ଡ଼ସ୍‌ୱାର୍ଥଙ୍କ ଡେଫୋଡ଼ିଲ୍ କବିତା ସ୍ମରଣରେ ଆସିଲା। ମନ୍ଦପବନରେ ଦୋଳାୟମାନ ଏ ଫୁଲ ନିଶ୍ଚୟ ଅଭୁଲା ରହିଯିବ ଏବଂ ନିରୋଳା ବେଳେ ଅପାର ଆନନ୍ଦ ଦେବ ଏବଂ ସତ୍ୟ ହେବ କବିର କଥା :

For oft, when on my couch elie
In vacant or in pensive mood
They flash upon that, inward eye
which is the bliss of solitude.

କବି ପ୍ରାଣରେ ନୈର୍ବ୍ୟକ୍ତିକ ଆନନ୍ଦ। ତରୁଣୀ ପ୍ରିୟା ନଥିଲେ ବି ମନରେ ତାରୁଣ୍ୟର ଭାବ ଉଜ୍ଜୀବିତ ଅଛି। ପ୍ରକୃତି ଓ ମଣିଷର ସୌନ୍ଦର୍ଯ୍ୟ ଉପଭୋଗ କରିବାକୁ ତାହା ହିଁ ଯଥେଷ୍ଟ।

# ହାଇଡ଼ପାର୍କରୁ ଓ୍ୱେଷ୍ଟମିନ୍‌ଷ୍ଟର

ଭୂମିତଳ ରେଳ ଯୋଗେ ହାଇଡ଼୍ ପାର୍କରୁ ଫେରିଲୁ Westminster Square କୁ ଏଠାରେ ବ୍ରିଟିଶ ଶାସନର ହୃତପିଣ୍ଡ ।

ଧର୍ମ ଓ ଶାସନର ସ୍ପନ୍ଦନ ଓ ନିର୍ଦ୍ଦେଶ ଜାତ ହୁଏ ଏହି ସ୍ଥଳୀରୁ । ଲଣ୍ଡନର ପ୍ରଧାନ ଧର୍ମ ଅନୁଷ୍ଠାନ Westminster Abbey ଏକଦା ଗୋଟିଏ ମଠ ବା monastery ଥିଲା । ୧୦୬୨ର ଖ୍ରୀଷ୍ଟମାସ ଦିନରୁ ଏଠାରେ ବ୍ରିଟିଶ ସମ୍ରାଟଙ୍କର ସିଂହାସନ ଆରୋହଣ ଉତ୍ସବ ଅନୁଷ୍ଠିତ ହୁଏ । ଏଠାରେ ଦେଖିବାକୁ ମିଳେ Henry VII ଙ୍କ Chapel, ପ୍ରସିଦ୍ଧ ରାଷ୍ଟ୍ରନୀତିଜ୍ଞ, ବୈଜ୍ଞାନିକ ଓ କବିଙ୍କ ପ୍ରତିମୂର୍ତ୍ତି । ଚର୍ଚ୍ଚିଲଙ୍କ ବୃଦ୍ଧାବସ୍ଥାରେ ପ୍ରତିମୂର୍ତ୍ତି ଦେଖିଲି, ବିଶେଷ ଆକର୍ଷଣୀୟ କି ଚିତ୍ତ ଆଲୋଡ଼ନକାରୀ ହୋଇ ନଥିଲା । ଦ୍ୱିତୀୟ ମହାଯୁଦ୍ଧରେ ମିତ୍ରଶକ୍ତିର ବିଜୟରେ ଗ୍ରେଟ୍ ବ୍ରିଟେନ୍ ଓ ଏହାର ପ୍ରଧାନମନ୍ତ୍ରୀଙ୍କ ଅବଦାନ ଥିଲା ଅତୁଳନୀୟ । ଦୀର୍ଘ ୩ ମାସ କାଳ ନାଜି ସରକାରଙ୍କ ବିମାନ ଆକ୍ରମଣକୁ ପ୍ରତିହତ କରି ଲଣ୍ଡନ ସହରକୁ ଧ୍ୱଂସ ମୁଖରୁ ରକ୍ଷା କରିଥିବାରୁ ଇଂରେଜମାନେ ଏହି ଯୁଦ୍ଧର ସେନାପତି ଓ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲଙ୍କୁ ବିସ୍ମରି ପାରିନାହାନ୍ତି, ପାରିବେ ନାହିଁ ମଧ୍ୟ ଯଦିଓ ଯୁଦ୍ଧ ଶେଷରେ ଅଳ୍ପଦିନ ପରେ ହୋଇ ଥିବା ନିର୍ବାଚନରେ ଚର୍ଚ୍ଚିଲ ହାରିଯାଇଥିଲେ ଲେବର ପାର୍ଟିର ନେତା ଅର୍ଟିଲଙ୍କ ଠାରୁ ।

ନିକଟରେ ବକିଙ୍ଗ୍‌ହାମ୍ ପେଲେସ୍ । ଡିୟୁକ୍ ଅଫ୍ ବକିଙ୍ଗ ହାମ୍‌ଙ୍କ ପାଇଁ ନଂ ୧୭୦୩ରେ ନିର୍ମିତ ଏହି ପ୍ରାସାଦରେ ୧୮୩୭ ମସିହାରୁ ବ୍ରିଟେନ୍ ରାଜାରାଣୀ Monarch ମାନେ ଏଠାରେ ବାସ କରୁଛନ୍ତି । ପ୍ରାସାଦଟି ବିରାଟ ଓ ଆକର୍ଷଣୀୟ । ଏହାର ଦ୍ୱାର ଦେଶରେ ଦଣ୍ଡାୟମାନ କେତେ ଜଣ ନିଷ୍ଚଳ ନୀରବ ପ୍ରହରୀ ଦର୍ଶକଙ୍କୁ ବିସ୍ମିତ କରେ, ଘଣ୍ଟା ଘଣ୍ଟା ଏକ ଲୟରେ ଏକ ସ୍ଥାନରେ ଅଙ୍ଗ ପ୍ରତ୍ୟଙ୍ଗ ନହଲେଇ ଠିଆ ହୋଇରହିବା କି ଅଦ୍ଭୁତ, ଏକାଗ୍ରତା ଯନ୍ତ୍ରଣା ଓ ସାଧନାର ଯୁଗପତ ସମାହାର ।

ନିକଟରେ ପାର୍ଲାମେଣ୍ଟ ଭବନ House of Commons । ବ୍ରିଟିଶ ଶାସନର ଗଣତାନ୍ତ୍ରିକ ଶାସନର ନିର୍ଦ୍ଦେଶନାମା ଓ ଯୋଜନା ଏଠାରେ ପ୍ରସ୍ତୁତ ହୁଏ । ପୁରାତନ ଇଂରେଜୀ ଶୈଳୀରେ ତିଆରି ଘର । ରାସ୍ତାକୁ ଲାଗି ତାର ଦିଆଲ, ଦରୁଆନମାନେ ଗେଟ୍‌ରେ ଛିଡ଼ା ହୋଇଛନ୍ତି । ବିନାନୁମତିରେ ପ୍ରବେଶ ନିଷେଧ । ଦିଆଲ ପାଖରେ ଠିଆ ହୋଇ ପାର୍ଲାମେଣ୍ଟ ପରିସରକୁ ଲହିଁଲି । ବ୍ରିଟିସ ଶାସନର କ୍ରମ ବିବର୍ତ୍ତନର ଲୋମହର୍ଷଣକାରୀ ଇତିହାସ ଆଖି ଆଗରେ ଝଲସି ଉଠିଲା । ଧର୍ମାଧିପତି ଓ ଗଣନେତାଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ରାଜସିଂହାସନର ମର୍ଯ୍ୟାଦା ରକ୍ଷା ସହ ଗଣତାନ୍ତ୍ରିକ ଶାସନ ପଦ୍ଧତିରେ ପ୍ରବର୍ତ୍ତନ ଶାସନରେ

ଧର୍ମାଧିପତିଙ୍କ ପ୍ରଭାବର ବାଞ୍ଛିତ ଅବସାନ ବିଶିଷ୍ଟ ପାର୍ଲାମେଣ୍ଟରିଆନ ଡିସ୍‌ରାଏଲ, ବର୍କ, ଚର୍ଚ୍ଚିଲ, ଅଟଲିଙ୍କ ବାଗ୍ମିତା ଓ ବିଚକ୍ଷଣତା ମାନସପଟରେ ଝଲସି ଉଠିଲା। ସାମ୍ରାଜ୍ୟବାଦ, ପୁଞ୍ଜିବାଦ ଓ ସାମ୍ରାଜ୍ୟବାଦର ଘୃଣ୍ୟ ଚରିତ୍ର ସତ୍ତ୍ୱେ ଶୃଙ୍ଖଳା, ସହନଶୀଳତା, ଭଦ୍ରତା, ଉଦାରତା, ଯାହା ଇଂରେଜ ଜାତିକୁ ମହାନ କରିଛି ୧୦୬୬ରୁ ତାର ପ୍ରତିଫଳନ ଓ ସ୍ରଷ୍ଟା ଏହି ପାର୍ଲାମେଣ୍ଟ ତାର ସ୍ୱର୍ଣ୍ଣାଭ ଐତିହ୍ୟ ପ୍ରତି ଶ୍ରଦ୍ଧାଞ୍ଜଳି ନ ଜଣାଇ ରହିପାରିଲାନାହିଁ।

ସାମ୍ନାରେ ବିଗ୍‌ବେନ୍, ଏକ ବିରାଟ ସ୍ତମ୍ଭ ଶୀର୍ଷରେ ଘଣ୍ଟା। ସମୟ ନିର୍ଦ୍ଦେଶ କରୁଛି, ପୃଥିବୀବ୍ୟାପୀ ସାମାଜ୍ୟର ନିର୍ଦ୍ଦେଶିତ ସମୟକୁ ଅନୁସରଣ କରିଥିଲେ ଅନ୍ୟ ଦେଶଗୁଡ଼ିକ।

କିଛି ଦୂରରେ Tower of London ଏଠାରୁ ଦେଖିହେବ। ମଧ୍ୟ ଯୁଗର ପ୍ରାସାଦମାଳା Crown Jewels ଇତ୍ୟାଦି ଇତ୍ୟାଦି। ସେକ୍‌ସପିଅର ଗ୍ଲୋବ୍ ଅନ୍ୟ ଏକ ଦର୍ଶନୀୟ ବସ୍ତୁ। ଏହି ଥିଏଟରରେ ପୂର୍ବକାଳରେ ସେକ୍‌ସପିଅରଙ୍କ ନାଟକ ଅଭିନୀତ ହେଉଥିଲା। ୧୯୯୭ରେ ଏହା ପୁନଃ ନିର୍ମାଣ କରାଯାଇଛି। ଏହାର କାଠରେ ନିର୍ମିତ ଗୋଲାକାର କାନ୍ଥ ଭିତରେ ନାଟକ ଅଭିନୀତି ହୁଏ ମେ ରୁ ଅକ୍ଟୋବର ପର୍ଯ୍ୟନ୍ତ । ବର୍ଷର ଅନ୍ୟ ସମୟରେ ରଙ୍ଗିନ ଚିତ୍ର ପ୍ରଦର୍ଶନୀ ହୁଏ।

## Bloomsbury ରାସ୍ତାରେ

Bloomsbury ଅଞ୍ଚଳଟି ଶାନ୍ତ ବସବାସ ଅଂଚଳ। ଏଠାକାର ହୋଟେଲ ଭଡ଼ା ଅପେକ୍ଷାକୃତ କମ। ନିଜ ନିଜର ବାସଗୃହ ଏ ଅଞ୍ଚଳରେ ଅଧିକ। ଏହିଠାରେ ଅଛି ଭାରତୀୟ ଛାତ୍ର ଓ ସାଧାରଣଲୋକଙ୍କ ରହିବା ପାଇଁ Indian Student YMCA । ସହର ପରିକ୍ରମା କଲାବେଳେ ବହୁ ସ୍ମୃତିଜଡ଼ିତ ପୁରାତନ ପ୍ରାସାଦ ସରଣୀ ଦେଖିବାକୁ ମିଳେ। ଏଗୁଡ଼ିକ ପଥିକ ମନରେ ନାନା ଭାବ ଓ ସ୍ମୃତି ଆଣିଦେଇଥାଏ। କିଏ ଜଣେ ମନୀଷୀ କହିଥିଲେ ପରା I think, therefore I am (cogito ergo sum) ଅନ୍ୟ ଜଣେ କହିଥିଲେ I remember, therefore I am (memento ergo sum) ଉଭୟଟା ଠିକ୍ ଭାବିବା ଓ ସ୍ମରଣ କରିବା ଶକ୍ତି ମଣିଷକୁ ପଶୁଠାରୁ ଭିନ୍ନ ଜୀବ ରୂପେ ଚିହ୍ନିତ କରେ।

ମନେପଡ଼ିଲା ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଭାରତୀୟ ଛାତ୍ରମାନେ ଏହି YMCA କୋଠାଘରେ ସମବେତ ହୋଇ ଭାରତର ସ୍ୱାଧୀନତା ଓ ନବଜାଗରଣ ପାଇଁ କେତେ ଚିନ୍ତା କରୁଥିଲେ। ଜାତୀୟତା ଓ ଦେଶ ପ୍ରୀତି ଜ୍ଞାନ ଆହରଣ ସହ ଓତପ୍ରୋତ ଭାବେ ଜଡ଼ିତ ଥିଲା। ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଏବଂ ଏବେ ମଧ୍ୟ ଭାରତର ମେଧାବୀ ଛାତ୍ରଛାତ୍ରୀ ଓ ଏଠାକାର ଭାରତୀୟଗଣ ଏଠାରେ ସମବେତ ହୋଇ ଭାରତ ତଥା ବିଶ୍ୱର

ନାନା ଦ୍ୱନ୍ଦ୍ୱାତ୍ମକ ଜଟିଳ ମାନବୀୟ ସମସ୍ୟା ଉପରେ ଅଭିମତ ପ୍ରକାଶ କରନ୍ତି, ସମର୍ଥନ ଓ ପ୍ରତିବାଦ ପ୍ରଦର୍ଶନର ସିଦ୍ଧାନ୍ତ ଏଠାରେ ନିଆଯାଏ। ବିଶ୍ୱର ପ୍ରଧାନ ନଗରୀରେ ଭାରତ ଭଳି ଏକ ବୃହତ ପ୍ରାଚୀନ ଓ ବିକାଶଶୀଳ ଦେଶର ମତାମତ ସୃଷ୍ଟି ଓ ପ୍ରକାଶର ଏକ ପୀଠ ଏକାନ୍ତ ଆବଶ୍ୟକ ଏବଂ ଶ୍ରଦ୍ଧାସ୍ପଦ। ବ୍ଲୁମ୍ସ୍ ବରି ଷ୍ଟ୍ରିଟ୍ ନାମଟି ଅତୀତର ବ୍ଲୁମ୍ ବରି ଗ୍ରୁପ୍ କଥା ମନେ ପକେଇଦେଲା, ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଏହି ଗ୍ରୁପ୍‌ର ସଦସ୍ୟ ଥିଲେ ସେ ସମୟର ମେଧାବୀ ଛାତ୍ର ଓ ପରବର୍ତ୍ତୀ କାଳରେ ବିଶ୍ୱବିଖ୍ୟାତ ଦାର୍ଶନିକ, ଅର୍ଥଶାସ୍ତ୍ରୀ, ରାଜନୀତି ବିଶାରଦ ସାହିତ୍ୟିକ, ସେମାନଙ୍କ ମଧ୍ୟରେ ଜେ.ଏମ୍.କିନ୍‌ସ ବାର୍ଟ୍ରଣ୍ଡରସେଲ୍, ଟି.ଏସ. ଏଲିଅଟ, ମିଲ୍ଟାନ ଫ୍ରିଡ୍‌ମ୍ୟାନେ୍ ପ୍ରଧାନ।

ଜେ.ଏମ. କିନ୍‌ସ, ବାଲର୍ଡ୍ କିନ୍‌ସଙ୍କ Economic Consequentce of Reparation ପ୍ରଥମ ମହାଯୁଦ୍ଧର କ୍ଷତିପୂରଣ ପାଇଁ ଜର୍ମାନୀ ଉପରେ ଅର୍ଥଦଣ୍ଡ, General Theory ତିରିଶି ଦଶକର ବିଶ୍ୱବ୍ୟାପୀ ମାନ୍ଦାବସ୍ଥାର ନିରାକରଣ ନିମିତ୍ତ ଅର୍ଥନୈତିକ ଖସଡ଼ା, ବାର୍ଟ୍ରଣ୍ଡ ରସେଲଙ୍କ ସାହିତ୍ୟ, ଦର୍ଶନ ଓ ବିଜ୍ଞାନ ସମ୍ବନ୍ଧୀୟ ଲେଖା ବାର୍ନାଡ଼ସଙ୍କ ଅନ୍ତର୍ଦୃଷ୍ଟି ସଂପନ୍ନ ନାଟକ, Intelligent worlds Guide of socialism ହାଇକ୍‌ଙ୍କ morefary, theory of trade cycle, ବିଶ୍ୱରେ ଚହଳ ପକେଇଥିଲା। ତେବେ କିନ୍‌ସ୍‌ଙ୍କ ଅର୍ଥନୀତି ତତ୍ତ୍ୱ ପୁଞ୍ଜିବାଦୀ ଅର୍ଥନୀତିକୁ ବଂଚେଇଇବା ପାଇଁ ରାଷ୍ଟ୍ରର ଆବଶ୍ୟକୀୟ ହସ୍ତକ୍ଷେପ ଅର୍ଥନୀତି କ୍ଷେତ୍ରରେ ଥିଲା ଯୁଗାନ୍ତକାରୀ, ଅନ୍ୟମାନେ ନୋବେଲ ପୁରସ୍କାର ବିଜେତା ହୋଇଥିଲେ। କିନ୍‌ସ ଏହି ଗ୍ରୁପ୍‌ର ସାମାଜିକ ଓ ସଂସ୍କୃତି କ୍ଷେତ୍ରରେ ସବୁଠୁଁ ଅଧିକ ପରିମାର୍ଜିତ ଥିଲେ। ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲଙ୍କ ଭାଷାରେ କିନ୍‌ସ ଥିଲେ Intellectually clairvoyant - A man of claivoyant Intelligence, ରାଜନୀତି କ୍ଷେତ୍ରରେ ମଧ୍ୟ ତାଙ୍କର ପ୍ରଭାବ ଅନୁଭୂତ ହେଉଥିଲା, କେତେକଙ୍କ ମତରେ ବ୍ୟକ୍ତିଗତ ଜୀବନରେ ସେ ଥିଲେ uranian or Homosexual, ମିଲଟନ୍ ଫ୍ରିଡ଼ମ୍ୟାନ କିନ୍ତୁ ଅର୍ଥନୀତି ଶାସ୍ତ୍ରରେ ଶ୍ରେଷ୍ଠ ତତ୍ତ୍ୱଦର୍ଶୀ ଥିଲେ।

ବୁଲି ବୁଲି କ୍ଳାନ୍ତ ହୋଇପଡ଼ିଥିଲୁ, ଭୋକ ଲାଗୁଥାଏ। ଭାତ ତରକାରୀ ଖାଇବା ପାଇଁ Indian Hotel ଟିଏ ଖୋଜିଲୁ। ଭାଗ୍ୟକୁ ନିକଟରେ ଲାଗି ଲାଗି ଦୁଇଟି Indian Hotel ଦେଖିବାକୁ ପାଇଲୁ, ଗୋଟିଏ ବଂଗଳାଦେଶୀ ମୁସଲମାନର ମାଂସର ପ୍ରାଧାନ୍ୟ ଦେଖା ଯାଉଥାଏ। ପାଖ ହୋଟେଲଟି ଜଣେ ହିନ୍ଦୁସ୍ଥାନୀ ଦିଲ୍ଲୀବାସୀର, ବଂଗାଳୀ ରୋଷେୟା। ଭାତ ଚିକେନ୍ ପାଲଙ୍ଗପନିର ଓ ରୋଟି ମିଳିଲା। ତୃପ୍ତିର ସହ ଭୋଜନ କରି ଭାରତୀୟ ଗଛ ପିଇ ରାତ୍ରିଯାପନ ପାଇଁ ଟୁରିଷ୍ଟ ବସ୍‌ରେ ଡକଲାଣ୍ଡ ହୋଟେଲ୍‌କୁ ଫେରିଲୁ। ଦିନରେ ନୂତନ ଦୃଶ୍ୟର ଉଦ୍ଦୀପନା, ରାତିରେ ସୁନିଦ୍ରା ଆଣି ଦେଲା ସତେଜ ଆନନ୍ଦ।

ଡକ୍‌ଲ୍ୟାଣ୍ଡରେ ଅଛି ଗୋଟିଏ ମିୟୁଜିୟମ୍ ୨୦୦ ବର୍ଷ ପୁରୁଣା ware house ଗୋଦାମ ଘରେ-ଏହା ନିର୍ମିତ। ୨ ହଜାର ବର୍ଷର ଥେମସ୍‌ନଦୀର ଜୁଆରଭଟ୍ଟାର ଛବି ମଧ୍ୟ ଯୁଗର ଲଣ୍ଡନବ୍ରିଜ୍‌ର ରୂପ ଦେଖିବାକୁ ମିଳିବ। ଅଷ୍ଟାଦଶ ଶତାବ୍ଦୀର ରାସ୍ତା, ନାବିକ ମାନଙ୍କର ମଦ୍ୟପାନ ଗନ୍ଧ ଏହାର ରାସ୍ତାକୁ ସ୍ୱତନ୍ତ୍ର ରୂପ ଦେଇଥାଏ। ଆମର ଫେରନ୍ତା ବସ୍‌ଟି ଏହି ରାସ୍ତା ଦେଇ ଆସିଲା ଡୋଭରସ ପୋର୍ଟକୁ। ସମୁଦ୍ରର ଜଳ ସ୍ଥଳ ଭୂମିକୁ ବହୁ ଜାଗାରେ ପଶି ଆସି ହ୍ରଦ ବା କେନାଲ ସୃଷ୍ଟି କରିଛି, ଏଥିରେ ଛୋଟ ବଡ଼ ଜାହାଜ, ନୌକା ଭର୍ତ୍ତି। କୂଳରେ ବହୁପୁରୁଣା, ନୂଆ କଂପାନୀ ଗୃହ, ବିରାଟ ଆକର୍ଷଣୀୟ। ଇଂଲାଣ୍ଡର ବାଣିଜ୍ୟପେଣ୍ଠ ଏହି ସ୍ଥାନଟି, ତେଣୁ ଏହାର ଗୁରୁତ୍ୱ ଅତୁଳନୀୟ।

ଏହି ରାସ୍ତାରେ ଆସିଲା ବେଳେ ଲଣ୍ଡନ ସହରର ଶେଷ କର୍ନରରେ ଥିବା ହେମାର୍କେଟରେ ଜିନିଷ କିଛି କିଣିଲୁ। ଏହି ମାର୍କେଟ୍ ରବିବାର ସକାଳୁ ସଂଧ୍ୟା ପର୍ଯ୍ୟନ୍ତ ଖୋଲା ଷ୍ଟ୍ରିଟ୍‌ରେ ବସେ। ଏଠାରେ ଅଧିକାଂଶ ବିକାଳି, ଇଂଲାଣ୍ଡ ବାହାରର ଲୋକ, ଅଳ୍ପ କେତେକ ଇଂଲିସ, ପାକିସ୍ତାନ, ଭାରତ, ଇଣ୍ଡୋନେସିଆ, ଆଫ୍ରିକା ତୁର୍କୀସ୍ଥାନରୁ ଆସି ସାଉଥ ଲଣ୍ଡନରେ ରହିଥିବା ସ୍ୱଳ୍ପ ଶିକ୍ଷିତ ଲୋକେ ଏପରି ଅସ୍ଥାୟୀ ଦୋକାନ କରିଚଳନ୍ତି।

ସାଉଥ୍ ଲଣ୍ଡନର ଗ୍ରୀନ ଉଇଚ୍ ଭୂଗୋଳରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦଖଲ କରିଛି। ଏଠାରେ ଅଛି National Maritime Museum old Royal Naval College ଏବଂ Royal observatory। ଗୋଟିଏ କୋର୍ଟୟାର୍ଡ଼ର ପିତଳର ସ୍ଥାନ ସମଗ୍ର ପୃଥିବୀକୁ ପୂର୍ବ ପଶ୍ଚିମରେ ଦୁଇଭାଗ କରିଦେଇଛି। ଏହା Primemeridian ନାମରେ ନାମିତ।

ଫେରିବା ରାସ୍ତା ଥିଲା ଦକ୍ଷିଣ-ପୂର୍ବ ଇଂଲାଣ୍ଡର ଦୀର୍ଘ ଅଞ୍ଚଳ। U.K. ର ୫ଟି Home countics ମଧ୍ୟରୁ ଏହା ଗୋଟିଏ ଏବଂ ଏଥିରେ ଦେଶର ବଡ଼ ଅଂଶର ଲୋକେ ବାସ କରନ୍ତି। ଏହାର ଅନେକ ସୁନ୍ଦର ଅଟ୍ଟାଳିକା ଗ୍ରାମାଞ୍ଚଳର ଶୋଭାବର୍ଦ୍ଧନ କରିଥାଏ।

ଏହାର Canturbury ଅଞ୍ଚଳରେ ପୁରୁଣା ରାସ୍ତାରେ ବହୁଗମ୍ବୁଜ ବିଶିଷ୍ଟ ଚର୍ଚ୍ଚ ଅବସ୍ଥିତ। ଏହା UNESCO,World Heritage city ରୂପେ ଘୋଷିତ। ଗ୍ରୀଷ୍ମଋତୁରେ ବିଭିନ୍ନ ଦେଶର ଖ୍ରୀଷ୍ଟାନ ଓ ଅନ୍ୟ ପରିବ୍ରାଜକ ଏଠାକୁ ଆସନ୍ତି, ଇତିହାସ ଓ ଧର୍ମର ସୁଗନ୍ଧରେ ବିଭୋର ହୁଅନ୍ତି। Thomas Becket ଙ୍କ ହତ୍ୟାଗାର, Geoffrey Chaucer ଙ୍କ କାବ୍ୟର ଗୁଞ୍ଜନ ଶୁଣିବାକୁ ମିଳେ କେତେକଙ୍କୁ। କେଣ୍ଟରବରି ଏକ ଉଦ୍ଦୀପନାମୟ କେନ୍ଦ୍ର, ଯେଉଁଠାରେ ଇଂଲାଣ୍ଡର ଶାନ୍ତିପୂର୍ଣ୍ଣ ଗ୍ରାମ ମୃଦୁମନ୍ଦ ଉପତ୍ୟକା ଓ ବର୍ଣ୍ଣିଳ ସମୁଦ୍ରତୀର ଦେଖିବାକୁ ମିଳିଥାଏ।

ଏହି ପଥ ଦେଇ ୬୨ ମାଇଲ ଗତି କଲାପରେ ଡୋଭରପୋର୍ଟ ନିକଟରେ ପହଞ୍ଚିଲୁ, ଡୋଭରଟି ଇଂଲାଣ୍ଡର ଗେଟ୍‌ୱେ ସହର। ଏହି ପଥ ଦେଇ ଇଂଲାଣ୍ଡ ବାହାରକୁ

ଯିବାକୁ ହୋଇଥାଏ। ମଧ୍ୟ ଯୁଗର ଦୁର୍ଗ, ଏହାର ପାହାଡ଼ ଉପରେ ଐତିହାସିକ ଗାଥାପୂର୍ଣ୍ଣ promotory, ରୋମାନ ସାକ୍ସନ୍ ଓ ନର୍ମାନ ଯୁଗର ଅବଶେଷାଂଶ ଦେଖିବାକୁ ମିଳିଥାଏ। ସବୁଠୁଁ ଅଧିକ ଆକର୍ଷଣୀୟ ବସ୍ତୁ ହେଉଛି ଗୋପନ Napoleomic tunnels, ଯାହା ମିତ୍ରଶକ୍ତିର ସେନାଚାଳନା କେନ୍ଦ୍ର ରୂପେ ବ୍ୟବହୃତ ହେଉଥିଲା।

ଡୋଭରର ପୋର୍ଟକୁ ଘେରି ଥିବା ପାହାଡ଼ ପ୍ରାଚୀରର ଧଳାପଥର ବିଶେଷ ମନୋରମ, ଏହା ପରା Whitecliffe !

ଡୋଭରର ବିଚର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଇଂରାଜୀ ସାହିତ୍ୟର ସୁପ୍ରସିଦ୍ଧ କବି ଲେଖିଥିଲେ ଏକ ହୃଦୟସ୍ପର୍ଶୀ କବିତା ଯା'ର ରସାଳ ପଂକ୍ତି କେତୋଟି ମନେପଡ଼ିଗଲା।

"Upon the Straits - on the French coast the light gleams and is gone, the cliffs of England start glimmering and vast, out in the tranquil bay come to the window, sweet is the night air" ପ୍ରଶାନ୍ତ ସାଗର, ଧବଳ ପାହାଡ଼, ସୁମଧୁର ପବନ ଡୋଭରର ସମୁଦ୍ର କୂଳକୁ ଦେଇଥାଏ ସ୍ୱର୍ଗୀୟ ସୁଷମା। ସମୁଦ୍ରର ଜୁଆର ଭଟ୍ଟା କୂଳସ୍ଥ ପଥର ଖଣ୍ଡକୁ ଟାଣି ଆଣେ ପୁଣି ଫିଙ୍ଗି ଦିଏ, ମଣିଷର ଭାଗ୍ୟକୁ ଯେପରି ଏକ ଅଦୃଶ୍ୟଶକ୍ତି ଏ ପାଖ ସେ ପାଖ କରେ। ପୃଥିବୀ ଏତେ ରଂଗିନ, ସୌନ୍ଦର୍ଯ୍ୟର ଏତେ ନିତ୍ୟ ନୂତନ ଆସର ତଥାପି କାହିଁ ପ୍ରେମ, କାହିଁ ଶାନ୍ତି, କାହିଁ ଆଲୋକ ? ସମୁଦ୍ରର ଗଭୀର ବିସ୍ତୀର୍ଣ୍ଣ ଉଜ୍ଜ୍ୱଳ ଜଳରାଶି ମନରେ ଆଣିଲା ଏପରି କେତେ ଚିନ୍ତା।

ଅତ୍ୟାଧୁନିକତା ଓ ପରୀକ୍ଷା ନିରୀକ୍ଷାର କେନ୍ଦ୍ରସ୍ଥଳୀ ଏହି ସହର ମନରେ ବିସ୍ମୟ ଆନନ୍ଦ ଆଣିଥାଏ। ଜର୍ମାନୀର ପୋଟସଜମ୍ ସହରରେ ଜର୍ମାନ ଜାତିର କ୍ରମବିକାଶ ପରିବ୍ରାଜକଙ୍କ ମନରେ ଆଣେ ଇତିହାସବୋଧ। ବର୍ଲିନ ଓ ପୋଟସଡ଼ାମ ସହରର ବିଶାଳତା, ବୀରତ୍ୱ, ଜିଜ୍ଞାସା ଓ ଐତିହାସିକ ଭାବ ଉଦ୍ରେକ କରାଏ।

ବ୍ରିଟେନ୍‌ର ଲଣ୍ଡନ ସହର ବୃହତ୍ତମ ଓ ସବୁଠୁଁ ପୁରାତନ। ୭୪ ଲକ୍ଷ ଜନସଂଖ୍ୟା ବିଶିଷ୍ଟ ସହରଟି ଆଧୁନିକ ଶିକ୍ଷା ସଂସ୍କୃତି, ଜ୍ଞାନ; ବିଜ୍ଞାନର ଜନକ। ଶହ ଶହ ବର୍ଷର ସଭ୍ୟତାର ପ୍ରଗତି, ଅର୍ଥନୀତି, ଦର୍ଶନ, କଳା ସାହିତ୍ୟ, ରାଜନୀତି ବିଜ୍ଞାନ, ଆନ୍ତର୍ଜାତୀୟ ସଂପର୍କର ପ୍ରଧାନ ନିର୍ଣ୍ଣାୟକ ଲଣ୍ଡନ ମନରେ ବିସ୍ମୟ ଆନନ୍ଦ ଜାତ କରିବା ସ୍ୱାଭାବିକ। ସଭ୍ୟତାର କ୍ରମବିକାଶର ଛାପ, ଗ୍ରୀକ୍ ରୋମାନ୍ ଏପରି କି ଭାରତୀୟ ସଭ୍ୟତାର ଛାପ ଏଠାରେ ଅନୁଭବ କରିହୁଏ। ଦେଶ ଆବିଷ୍କାର, ପୁଞ୍ଜିବାଦ ସାମ୍ରାଜ୍ୟବାଦର ବାର୍ତ୍ତାବହ ଲଣ୍ଡନ ସହର ବୈଚିତ୍ର୍ୟ ଓ ବିରାଟତାରେ ବର୍ଣ୍ଣାଢ଼୍ୟ।

ଘରିଟି ଦେଶ ଘରିଟି ସହରରେ ଦୁଃଖ ଦୁର୍ଦ୍ଦଶାର ଚିହ୍ନ ମୁଁ ଦେଖିବାକୁ ପାଇଲି ନାହିଁ, ମଣିଷ ଜୀବନ ସତେ ଯେମିତି ପ୍ରକୃତି ଦତ୍ତ ସ୍ୱାଭାବିକ ଢଙ୍ଗରେ ଚାଲୁଛି, ବିଭିନ୍ନ ଭାବ, ଆବେଗ ହସକାନ୍ଦ ଦେଇ ଜୀବନ ଦୀର୍ଘ ରାସ୍ତାରେ ଚାଲିଛି ସହଜ ସ୍ୱଚ୍ଛନ୍ଦରେ।

ଚରିତ୍ର ଓ ଉଦ୍ୟମ ଅନୁଯାୟୀ ବ୍ୟକ୍ତିଗତ ଜୀବନ, ଭିନ୍ନ ଭିନ୍ନ ଶୈଳୀ ଅନୁଭବ। କିନ୍ତୁ ସମାଜର ଧାରା ଶୃଙ୍ଖଳିତ, ବ୍ୟକ୍ତିକୁ ବଂଚିରହିବାକୁ ଆବଶ୍ୟକ ସୁବିଧା ସୁଯୋଗ ଦେବାକୁ ଯତ୍ନଶୀଳ।

ସବୁ ସହରରେ ନାନା ଜାତି ଲୋକଙ୍କ ସହାବସ୍ଥାନ ମହାମାନବିକ ଭାବର ଉତ୍ସ। ସୌନ୍ଦର୍ଯ୍ୟ ଭିତରେ ପ୍ରାଣପ୍ରାଚୁର୍ଯ୍ୟର ଆଭାସ ସବୁଠି, ପ୍ରଭେଦ ସୂକ୍ଷ୍ମ, କିନ୍ତୁ ତାତ୍ପର୍ଯ୍ୟପୂର୍ଣ୍ଣ। ଆମଷ୍ଟାରଡ଼ାମରେ ନଦୀ ଓ ପ୍ରକୃତିର ମିଳନ, ଶାନ୍ତ ସରଳ ପ୍ରକୃତି ପ୍ରେମୀ ଜୀବନର ଅଭିଳାଷ ସ୍ପଷ୍ଟ ପ୍ୟାରିସ୍‌ରେ ସୌଖୀନ ଜୀବନଯାପନର ତୀବ୍ରଲାଳସା, ପ୍ରେମ ଓ କାମ ମାଧ୍ୟମରେ ଜୀବନ ଉପଭୋଗ ଓ ସୌନ୍ଦର୍ଯ୍ୟ ପିପାସା ପରିସ୍ଫୁଟ, ବର୍ଲିନ୍‌ରେ ବୀରତ୍ୱ ଜୟ କରିବାର ଇଚ୍ଛା, କଳା, ସାହିତ୍ୟରେ ବୈପ୍ଳବିକ ଚିନ୍ତାଧାରା ଦେବାର ସ୍ପୃହା, ଶକ୍ତି ଓ ବିରାଟର ପ୍ରଶଂସା ଉଦ୍‌ଭାସିତ। ଲଣ୍ଡନରେ ନୂତନ ପୁରାତନର ସମାବେଶ, ଇତିହାସର କ୍ରମ ବିକାଶ, ଜ୍ଞାନ ବିଜ୍ଞାନ ଓ ଆନ୍ତର୍ଜାତୀୟତାର ସୁମଧୁର ଛନ୍ଦଗୁଞ୍ଜରିତ ହୁଏ। ମୋ ଭଳି ଜଣେ ଭାବପ୍ରବଣ ପରିବ୍ରାଜକ ପ୍ରାଣରେ ଆମଷ୍ଟରଡ଼ାମ୍ ଆଣେ ଶାନ୍ତ ସ୍ପନ୍ଦନ (Gintle emotion), ପ୍ୟାରିସ୍ ଖେଳାଏ ପ୍ରେମାସକ୍ତିର ଶିହରଣ (Titillation) ଲଣ୍ଡନ ଜାତକରେ ନାନା ଭାବର ଉଦ୍‌ବେଳନ (Vibration) ଓ ବର୍ଲିନ ସୃଷ୍ଟି କରେ ଅଗ୍ରଗତି ଓ ଜିଗୀଷାର ଦୃପ୍ତଇଚ୍ଛା (explosion of desire)

## ବିଦାୟ ହଲାଣ୍ଡ

ଟିଲବର୍ଗ ହଲାଣ୍ଡର ଛୋଟ ସହରଟିଏ, କିନ୍ତୁ ଶାନ୍ତ ସୁନ୍ଦର। ଦୁଇମାସ କଟିଗଲା ଆନନ୍ଦରେ। ହଲାଣ୍ଡର ବିଭିନ୍ନ ଦର୍ଶନୀୟ ସ୍ଥାନ ପରିଭ୍ରମଣ କରିବା ସହ, ଜର୍ମାନୀ, ଫ୍ରାନ୍ସ, ବ୍ରିଟେନ୍‌ର ରାଜଧାନୀ ଦେଖିବାକୁ ସୁଯୋଗ ପାଇଲି। ବହୁଦିନର ଇଚ୍ଛା ମୋର ପୂର୍ଣ୍ଣ ହେଲା। ଟିଲବର୍ଗରେ ପୁଅ, ବୋହୂ, ଦୁଇ ନାତି, ଦୁଇ ତିନି ବର୍ଷରେ ମାସେ ଦେଢ଼ମାସ ପାଇଁ ଯାଆନ୍ତି ଭୁବନେଶ୍ୱର। ସେମାନଙ୍କ ସହ ମିଶିବାର ଉତ୍କଣ୍ଠା ବର୍ଣ୍ଣନାତୀତ। ମନେ ପଡୁଛି, ଗାଁ ଛାଡ଼ି ବାହାରେ ପାଠ ପଢୁଥିଲାବେଳେ, ପାଠ ଶେଷ ପରେ ଋକିରି କଲା ସମୟରେ ଛୁଟି ଦିନରେ ଗାଆଁକୁ ଆସିଲେ ବାପା, ବୋଉ, ଭାଇ ଓ ଭାଉଜ, ପୁତୁରା ଝିଆରି କେତେ ଖୁସି ହୁଅନ୍ତି, ଗାଁର ସାଙ୍ଗସାଥୀଙ୍କ ସହ ମଉଜ ମଜଲିସ୍‌ରେ ଦିନକଟିଯାଏ। ରାତିରେ ଶୋଇଲା ବେଳେ ବଉ ମୋ ପାଦରେ ତେଲ ମାରିଦେଲା ବେଳେ ଘର କଥା ଓ ପଡ଼ୋଶୀଙ୍କ କଥା ଗପିଯାଏ। କଥା ଶୁଣେ ବା ନ ଶୁଣେ ବଉ ହାତର ମଧୁର ସ୍ପର୍ଶରେ ମୁଁ ଉଲ୍ଲସି ଉଠେ। ବଉ ବାପା, ଋଲିଗଲେଣି ଅଜଣା ଜାଗାକୁ, ଆଉ କିଛି ବର୍ଷ ପରେ ମୁଁ

ଚାଲିଯିବି। ଏ ସୁନ୍ଦର ପୃଥିବୀ ଓ ଆତ୍ମୀୟସ୍ୱଜନଙ୍କୁ ଆଉ ଭେଟିବି ନାହିଁ। ଏବେ ସାତ ସମୁଦ୍ର ତେର ନଈ ପାର ହୋଇ ଆକାଶରେ ଉଡ଼ି ଉଡ଼ି ଆସି ପୁଅ ଝିଅ, ନାତିନାତୁଣୀଙ୍କୁ ଦେଖିବାର ଆନନ୍ଦ ଉଲ୍ଲାସ କିପରି ବା ବର୍ଣ୍ଣନା କରିବି ? ପୁଅର ବୟସ ୪୫ ବର୍ଷ ହେଲା। ମୁଁ ତା ପାଦ ଘଷି ଦେଉଛି, ସତେ ଯେମିତି ସେ ୪/୫ ବର୍ଷର ପିଲା, ମୁଁ ସଦ୍ୟ ପିତୃତ୍ୱରେ ଉତ୍‌ଫୁଲ୍ଲିତ ତରୁଣ। ନାତି ଦୁଇଟି ୧୪ ଓ ୭ ବର୍ଷର। ଏଇ କେତେ ବର୍ଷ ତଳେ ପୁଅର ପୁଅ ଓ ଝିଅର ପୁଅ ଦୁଇ ନାତିଙ୍କୁ ଦୁଇକାନ୍ଧରେ ବସାଇ ଫଟୋ ଉଠାଇଥିଲି। ଆଜି ସେ ନାତି ଦି'ଟି କୈଶୋରରେ ମୋତେ ବାଟ ଦେଖାଉଛନ୍ତି ବିଦେଶରେ। ସେମାନଙ୍କ ପାଦ ଆଉଁଶି ଦେଲାବେଳେ କି କୋଳେଇ ନେଲାବେଳେ ଅନୁଭବ କରୁଛି ମୋ ଦେହ ଦେଇ ସତେ ଯେପରି ସ୍ନେହ ମମତାର ଏକ ମନୋରମ ଉଚ୍ଚ ଅଟ୍ଟାଳିକା ମୁଣ୍ଡ ଟେକିଛି ମାଟି ଉପରକୁ, ଝରି ପଡୁଛି ସ୍ୱର୍ଗୀୟ ପ୍ରେମ।

ପୁଅ ବୋହୂଙ୍କ ସ୍ନେହଶ୍ରଦ୍ଧା ଓ ସେବାର ପଟାନ୍ତର ନାହିଁ। ହଲାଣ୍ଡର ପାଣିପବନ ଗଛପତ୍ର ଆବାଳବୃଦ୍ଧବନିତାଙ୍କ ରୂପ ସୌନ୍ଦର୍ଯ୍ୟ ଓ ମଧୁର ବ୍ୟବହାରରେ ଯେଉଁ ବିମଳ ଆନନ୍ଦ ମିଳିଛି ତଚ ଭାଷାରେ ପ୍ରକାଶ କରି ହେବନି। ଏଇଥିପାଇଁ ଶତ ପ୍ରଣାମ ଜଣାଉଛି ଏ ପବିତ୍ର ସୁନ୍ଦର ଭୂମିକୁ, ତାର ଅଧିବାସୀଙ୍କୁ। କେତେଶ ବର୍ଷ ତଳେ ଏ ଦେଶର ଲୋକେ ନୌ ବାଣିଜ୍ୟ କରି ଯାଇଥିଲେ ଭାରତ, ଓଡ଼ିଶା। କେତେ ଲାଭ କେତେ କ୍ଷତି ହୋଇଥିଲା ସେମାନଙ୍କର ତା ଇତିହାସ କହିବା ତେବେ ଦେଶ ଦେଶ ଭିତରେ ସ୍ନେହର ସଂପର୍କର ରଜ୍ଜୁ ଯେ ବଂଧା ହୋଇଯାଇଥିଲା ଏଥିରେ ଦ୍ୱିରୁକ୍ତି ନାହିଁ। ମୋ ଦେଶ ପ୍ରତି ହଲାଣ୍ଡର ଯଦି କିଛି ଋଣ ପରିଶୋଧ କରିବାର ଥାଏ ତା ହୋଇଯାଉଛି ଆମକୁ ସ୍ୱାଗତ ଜଣାଇବାରେ। ଡଚ୍‌ଙ୍କ ଉଦାରତା, ସାମାଜିକ ପ୍ରଶାସନିକ ଶୃଙ୍ଖଳା ଓ ପ୍ରଗତିଶୀଳତାର ପ୍ରତ୍ୟକ୍ଷ ଅନୁଭୂତି ନେଇ ମୁଁ ଫେରୁଛି ମୋର ମାତୃଭୂମିକୁ। ମନେପଡ଼ିଯାଉଛି ଲଙ୍କା ବିଜୟ ପରେ ରାମଚନ୍ଦ୍ରଙ୍କ ମୁହଁରେ ମହାକବି ବାଲ୍ମୀକିଙ୍କ କବିତା :

"ଅପି ସ୍ୱର୍ଣ୍ଣମୟୀ ଲଙ୍କା ନ ମେ ରୋଚତେ ଲକ୍ଷ୍ମଣ
ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରିୟସୀ।"

ଅଳ୍ପଦିନ ଭିତରେ ଚାରିଟି ଦେଶର ଚାରିଟି ସୁନ୍ଦର ବୃହତ୍ତମ ସହର ବୁଲି ଦେଖିଲି, ଆମଷ୍ଟାରଡ଼ାମ୍ ପ୍ୟାରିସ୍ ବର୍ଲିନ ଲଣ୍ଡନ। ସବୁଠିତ ନୂତନତ୍ୱ ସ୍ୱାତନ୍ତ୍ର୍ୟ, ଆଧୁନିକତା ପ୍ରାଚୀନତା ଓ ମଣିଷର ବୁଦ୍ଧି କୌଶଳର ବିସ୍ମୟକାରୀ ଛବି। ପ୍ରାକୃତିକ ଅପ୍ରାକୃତିକ ଦୃଶ୍ୟପଟ୍ଟ ଚିତ୍ତ ହରଣ କରିନିଏ।

ଏହି ଚାରିଟି ସହର ଭିତରେ ଆମଷ୍ଟାରଡ଼ାମ୍ କ୍ଷୁଦ୍ରତମ। ଏହାର ଜନସଂଖ୍ୟା ୭୪୩,୦୦୦ ମାତ୍ର ଏହାର ପ୍ରାକୃତିକ ସୌନ୍ଦର୍ଯ୍ୟ ଚିତ୍ର, କଳା ଓ ନୃତ୍ୟ ସଂଗୀତ କଳା

ମନମୁଗ୍ଧକର ଏବଂ ଅତ୍ୟାଧୁନିକ, ଦୃଷ୍ଟିକୋଣ ବୈପ୍ଳବିକ। ୧୫୮୦ରୁ ୧୭୪୦ ପର୍ଯ୍ୟନ୍ତ ହଲାଣ୍ଡ ତଥା ଆମଷ୍ଟାରଡ଼ାମ୍ ୟୁରୋପରେ ବାଣିଜ୍ୟ କ୍ଷେତ୍ରରେ ଥିଲା ଅଗ୍ରଣୀ। ଐତିହ୍ୟକୁ ବାଂଧି ରଖିଛି ଆଧୁନିକତା ସହ, ସପ୍ତଦଶ ଶତାବ୍ଦୀର ଗୃହ, କେନାଲ, ପରିବେଷ୍ଟିତ ଧାଡ଼ି ଧାଡ଼ି ନୂତନ ପୁରାତନ ଅଟ୍ଟାଳିକା, ଉଗ୍ର ଆଧୁନିକ ସ୍ୱାଧୀନତା, ପ୍ରେମ ବିବାହ ଓ ଡ୍ରଗସେବନ ସହ ଶୃଙ୍ଖଳିତ ଶାସନ ଏବଂ କ୍ଷୁଦ୍ର ହିଁ ସୁନ୍ଦର ପରିପ୍ରକାଶ ଏହାର ଅନନ୍ୟ ସ୍ୱାତନ୍ତ୍ୟ।

ପ୍ୟାରିସ୍ ସହର, ସେ ତ ସୌନ୍ଦର୍ଯ୍ୟର ଶୀର୍ଷତମ ସ୍ଥାନରେ, ୨୨ ଲକ୍ଷ ଲୋକ ବିଶିଷ୍ଟ ଏହି ସହରର ସୌନ୍ଦର୍ଯ୍ୟ, ବିଦ୍ୟୁତ ଆଲୋକରେ ଝଲମଲ ଅଟ୍ଟାଳିକା - ନାନା ଶୈଳୀର ଇନ୍ଦ୍ରପୁରୀ ସୃଷ୍ଟି କରେ। ଫରାସୀମାନଙ୍କର ଗର୍ବ, ଫେସନ, ଧର୍ମଠୁ ଜାତୀୟତାକୁ ଶ୍ରେଷ୍ଠ ମଣିବା, ଅତ୍ୟାଧୁନିକତା, ସାହିତ୍ୟ, କଳା, ସଂଗୀତରେ ନୂତନଧାରାର ପ୍ରବର୍ତ୍ତନ, ସୁନ୍ଦର ବେଶଭୂଷାରେ ଅନ୍ୟକୁ ଆକର୍ଷଣ କରିବା ପ୍ରବୃତ୍ତି, ପ୍ରେମ ଓ କାମ ପ୍ରଚୋଦନାକାରୀ ରୀତି ଅହଂକାର ଆନୁଷ୍ଠାନିକ ବ୍ୟବହାର (Formal) ନାରୀମାନଙ୍କ କମନୀୟ ଲୋଭନୀୟ ରୂପ ଫରାସୀମାନଙ୍କୁ ଅସାଧାରଣ ଭାବେ ଚିହ୍ନିତ କରେ।

ବର୍ଲିନ ବିଂଶ ଶତାବ୍ଦୀର ଆନ୍ତର୍ଜାତୀୟ ରାଜନୀତିର ଏକ ଦୁର୍ଦ୍ଦମନୀୟ ଦୁର୍ଦ୍ଧର୍ଷ ସହର। ଲୋକସଂଖ୍ୟା ୩୫ ଲକ୍ଷ। ଏହାର ସଂଗୀତ, କଳା, ସ୍ଥାପତ୍ୟ ଓ ସାହିତ୍ୟ ପ୍ରଗତିଶୀଳ। ଇତିହାସର ସ୍ମାରକୀ ଭରପୂର। କୃତି ଅତ୍ୟନ୍ତ ମନୋରମ ବିରାଟ ସହରରେ ପୁରାତନ ଓ ଆଧୁନିକ।

## ଝୁରି ହୁଏ

ପ୍ରୀତିମୟୀ ହଲାଣ୍ଡ ଗୋ,
　　　　ସୁଶ୍ରୀ ଜଳପରୀ,
କେଉଁ ଦୂର ସାଗରେ ଲୁଚିଲ
　　　　ଝୁରେ ଅଭିଶପ୍ତ ଯକ୍ଷପରି
ସବୁଜ ତ୍ରିକୋଣଭୂମି
　　　　ସୁଗନ୍ଧ ଟୁଲିପ୍
ପାଏ ନାହିଁ ସ୍ପର୍ଶ ତା'ର
　　　　ପଢ଼ି ହୁଏ ନାହିଁ ମନଲିପି
ତଥାପି ପାଏ ଆନନ୍ଦ
　　　　ସ୍ମରି ଛାୟା ସ୍ନିଗ୍ଧ ତରୁଲତା

ସୂର୍ଯ୍ୟସ୍ନାତ ମସୃଣ ପଥର
ଶିହରିତ ଉଷ୍ମତାର କଥା
'ହଏ' 'ହେଲୋ' ସ୍ମିତହାସ୍ୟ
ନୀଳ ଆଖି ସ୍ଫୁରିତ ଅଧର
ନିଃଶଙ୍କ ନିଶ୍ଚିନ୍ତ ଗତି
ଶକ୍ତି ଅବତାର
ଲଜ୍ଜାରେ ନୁହେଁ ଆନତ
ଊର୍ଦ୍ଧ୍ୱାୟିତ ପ୍ରେମର ମିନାର
କିଏ ଅଳି କିଏ ଫୁଲ ?
କାନେ ବାଜେ ପ୍ରଣୟ ଗୁଞ୍ଜନ
ପବନରେ ଆସେଭାସି
ସହ ବନ୍ଧ କାମ ଉଚ୍ଚାଟନ
ଦେହ ମନ କ୍ଷୁଧା ପରିତୋଷେ
ମିଳେ କାଳେ ସ୍ୱର୍ଗୀୟ ଆନନ୍ଦ
ମାଟିରୁ ଆକାଶ ଯାତ୍ରୀ
ବ୍ୟସ୍ତ ଖୋଜି ଜୀବନର ଛନ୍ଦ ।

□□□

## *Reference :*


1. Diary and Anne Frank
2. The Happy Hooker - Xaviera Hallandey
3. Amesterdam - The Literary companion
4. Ravel STEIN - Saul Bellow.
5. Choral society - Prue Leith
6. Modern Novelists - Peter Hyland
7. Lily joshephine - Kate Saunder
8. The honorary consul - Grant green
9. Europe in the 18th century 1713-1783 - MS Andersan
10. Berlin and Potsdam - Schoning - Vering
11. The London School of Economics and Poltical Science - L.S.E.
12. Information - The memorial to the murdered Jews of Europe
13. Europeon a Shoe string - Lonely plannet
14. The Undutchable.
15. Indian Literature.

